

୧୯୩୭ ମସିହା ଡିସେମ୍ବର ୯ ତାରିଖରେ ଜଗତସିଂହପୁର ଜିଲ୍ଲା ପୁନଙ୍ଗ ଗ୍ରାମପଞ୍ଚାୟତର ମଙ୍ଗଳପୁର ଗ୍ରାମରେ ଜନ୍ମିତ **ଡକ୍ଟର ବିମଳେନ୍ଦୁ ମହାନ୍ତି** ଶିକ୍ଷା, ସଂସ୍କୃତି, ସମାଜସେବା, ପ୍ରଶାସନ, ଅଧ୍ୟାପନା ଓ ସାଙ୍ଗଠନିକ କ୍ଷେତ୍ରରେ ଜଣେ ପ୍ରତିଭାବାନ ବ୍ୟକ୍ତି ରୂପେ ସୁପରିଚିତ। ସେ ବହୁ କ୍ଷେତ୍ରରେ ପ୍ରଥମ, ଯଥା- ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି, ଜାଭିୟର୍ସ ଇନ୍‌ଷ୍ଟିଚ୍ୟୁଟ ଅଫ୍ ମ୍ୟାନେଜ୍‌ମେଣ୍ଟର ପ୍ରଥମ ରେଜିଷ୍ଟ୍ରାର, ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟର ପ୍ରଥମ ଛାତ୍ରକଲ୍ୟାଣ ଡିନ୍ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ଯୁବକଲ୍ୟାଣ ଅଧିକାରୀ। ଏହା ସହିତ ସେ ଓଡ଼ିଶା ସରକାରଙ୍କ କ୍ରୀଡ଼ା ଓ ଯୁବକଲ୍ୟାଣ ବିଭାଗର ନିର୍ଦ୍ଦେଶକ, ରାଜ୍ୟ ସଂସ୍କୃତି ବିଭାଗର ନିର୍ଦ୍ଦେଶକ, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରର ନିର୍ଦ୍ଦେଶକ, ଭାରତ ସରକାରଙ୍କର ଶିକ୍ଷା ଓ ସଂସ୍କୃତି ବିଭାଗ ଅଧୀନରେ ଜାତୀୟ ସେବା ଯୋଜନାର ଉପମୁଖ୍ୟ ପରାମର୍ଶଦାତା ଓ ଜାତୀୟ ସମର ଶିକ୍ଷାର୍ଥୀ ବାହିନୀର ମେଜର୍ ଆଦି ଭଳି ବହୁ ଉଚ୍ଚ ପଦପଦବୀରେ ସୁଚାରୁରୂପେ ଦାୟିତ୍ୱ ସମ୍ପାଦନ କରି ଉଚ୍ଚ ପ୍ରଶଂସିତ ହୋଇଛନ୍ତି। ଅଧୁନା ଡକ୍ଟର ମହାନ୍ତି ଭାରତ ମହାବୋଧି ସୋସାଇଟି, ଓଡ଼ିଶା ଶାଖାର ସଭାପତି ରୂପେ ଦାୟିତ୍ୱ ନିର୍ବାହ କରୁଛନ୍ତି।

ଡକ୍ଟର ମହାନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇତିହାସରେ ଏମ୍.ଏ., ଆମେରିକାର ମିସୌରୀ ବିଶ୍ୱବିଦ୍ୟାଳୟରୁ ଏମ୍.ଇଡି ଓ ରାଞ୍ଚି ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ ଡିଗ୍ରୀ ହାସଲ କରିଛନ୍ତି। କଟକ ଷ୍ଟୁଆର୍ଟ ସାଇନ୍ସ କଲେଜରୁ ୧୯୬୦ ଅଗଷ୍ଟ ୫ରେ ଅଧ୍ୟାପକ ରୂପେ କର୍ମଜୀବନ ଆରମ୍ଭ କରି ସେ ୪୧ ବର୍ଷକାଳ ବିଭିନ୍ନ କ୍ଷେତ୍ରରେ ସେବା ପ୍ରଦାନ କରିଛନ୍ତି। ଜଣେ ସୁବକ୍ତା, ଲେଖକ ଓ ସ୍ତମ୍ଭକାର ଭାବେ ସେ ସୁନାମ ଅର୍ଜନ କରିଛନ୍ତି।

Digitized by srujanika@gmail.com

# ଭାରତର ବରପୁତ୍ର ବିଜୁ ପଟ୍ଟନାୟକ

ଡକ୍ଟର ବିମଳେନ୍ଦୁ ମହାନ୍ତି



ତଥାଗତ ପବ୍ଲିଶର୍ସ
୪୭, ମଧୁସୂଦନ ନଗର
ଭୁବନେଶ୍ୱର-୭୫୧୦୦୧

Digitized by srujanika@gmail.com

# ଭାରତର ବରପୁତ୍ର ବିଜୁ ପଟ୍ଟନାୟକ

ଲେଖକ :
**ଡକ୍ଟର ବିମଳେନ୍ଦୁ ମହାନ୍ତି**

ପ୍ରକାଶକ
**ତଥାଗତ ପବ୍ଲିଶର୍ସ**
୪୭, ମଧୁସୂଦନ ନଗର
ଭୁବନେଶ୍ୱର-୭୫୧୦୦୧

ଅକ୍ଷରସଜ୍ଜା :
**ବି.ଏନ୍. ଗ୍ରାଫିକ୍ସ**
ଆଇ.ଆର.ସି. ଭିଲେଜ
ଭୁବନେଶ୍ୱର-୭୫୧୦୧୫

ମୁଦ୍ରକ :
ପ୍ରିଣ୍ଟଟେକ୍ ଅଫ୍‌ସେଟ୍ ପ୍ରା.ଲି.
ଏଫ୍-୬୬/୧ ଓ ୬୬/୨, ଚନ୍ଦକା ଶିଳ୍ପାଞ୍ଚଳ, ଭୁବନେଶ୍ୱର-୨୪
ଫୋନ୍ : ୦୬୭୪-୨୭୪୦୭୩୭

ପ୍ରକାଶ କାଳ : ଅଗଷ୍ଟ ୨୦୧୭
ଦ୍ୱିତୀୟ ସଂସ୍କରଣ : ମେ ୨୦୧୮

ମୂଲ୍ୟ : ଟ ୩୦୦/- ମାତ୍ର

*Digitized by srujanika@gmail.com*

ଓଡ଼ିଶାର ଛଅଜଣ ସୁନାମଧନ୍ୟ ଶିକ୍ଷାବିତ୍
ପ୍ରଫେସର ଡକ୍ଟର ପ୍ରାଣକୃଷ୍ଣ ପରିଜା
ପ୍ରଫେସର ଡକ୍ଟର ସଦାଶିବ ମିଶ୍ର
ପ୍ରଫେସର ଡକ୍ଟର ବଂଶୀଧର ସାମନ୍ତରାୟ
ପ୍ରଫେସର ବ୍ରଜବନ୍ଧୁ ମିଶ୍ର
ପ୍ରଫେସର ଡକ୍ଟର ତ୍ରିଲୋଚନ ମିଶ୍ର
ଓ
ପ୍ରଫେସର ଡକ୍ଟର ଶ୍ରୀନିବାସ ସାହୁ
ଯେଉଁମାନେ ନିଜ ନିଜର ପ୍ରଜ୍ଞା ଓ ଛାତ୍ରବତ୍ସଳତା ଯୋଗୁଁ
ମୋ ଭଳି ବହୁ ଛାତ୍ରଛାତ୍ରୀଙ୍କ ଜୀବନକୁ ଆଲୋକିତ କରିଛନ୍ତି
ସେମାନଙ୍କ ସ୍ମୃତିରେ
ଏହି ପୁସ୍ତକଟି ସମର୍ପି ଦେଉଛି ।

- ବିମଳେନ୍ଦୁ

Digitized by srujanika@gmail.com



# ମୁଖବନ୍ଧ

ଡକ୍ଟର ବିମଳେନ୍ଦୁ ମହାନ୍ତିଙ୍କର 'ଭାରତର ବରପୁତ୍ର ବିଜୁ ପଟ୍ଟନାୟକ' ପୁସ୍ତକ ପଢ଼ିଲି । ମୁଁ ବିମଳେନ୍ଦୁ ମହାନ୍ତିଙ୍କ ସହିତ ପୂରାପୂରି ଏକମତ ଯେ ବିଜୁବାବୁଙ୍କ ପରି ଜଣେ ଦୁଃସାହସିକ ଓ ଦୁର୍ବାର ବ୍ୟକ୍ତି ଓଡ଼ିଶାରେ କାହିଁକି ସାରା ଭାରତରେ ଖୁବ କମ ଲୋକ ଅଛନ୍ତି । ସେ ନିଜକୁ ଖାରବେଳଙ୍କ ଦାୟାଦ ବୋଲି ଗର୍ବ ଅନୁଭବ କରୁଥିଲେ ବୋଲି ବିମଳେନ୍ଦୁବାବୁ ଲେଖିଛନ୍ତି । ମୁଁ ଖାରବେଳଙ୍କ ବିଷୟରେ କିଛି ପଢ଼ିଛି । କିନ୍ତୁ ଦେଖି ନାହିଁ । ବିଜୁବାବୁଙ୍କୁ ମୁଁ ଦେଖିଛି ଓ ତାଙ୍କ ସଂପର୍କରେ ଆସିଛି, ତାଙ୍କ ସାହସ ଦେଖିଛି, ତାଙ୍କର ଜୀବନ ବିଷୟରେ କିଛି ଜାଣିବାର ସୁଯୋଗ ପାଇଛି । ମୁଁ ଅନେକ ସମୟରେ ଭାବେ ଯଦି ବିଜୁବାବୁ ୧୦ ବର୍ଷ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇ ରହିଥାନ୍ତେ ତାହାହେଲେ ଓଡ଼ିଶାର ଚିତ୍ର ବଦଳି ଯାଇଥାନ୍ତା । ପଣ୍ଡିତ ଜବାହାରଲାଲଙ୍କ ପରେ ସେ ଯଦି ପ୍ରଧାନମନ୍ତ୍ରୀ ହେବାର ସୁଯୋଗ ପାଇଥାନ୍ତେ, ଭାରତ ଏକ ବଳିଷ୍ଠ ଦେଶ ହିସାବରେ ସାରା ବିଶ୍ୱରେ ସମ୍ମାନ ହାସଲ କରିପାରିଥାନ୍ତା । ଜବାହାରଲାଲଙ୍କର ଆଦର୍ଶ ଥିଲା ଓ ବିଜୁବାବୁଙ୍କର କାମ କରିବାର ଶକ୍ତି ଥିଲା । ସେଥିପାଇଁ ଜବାହାରଲାଲଙ୍କର ବିଜୁବାବୁଙ୍କ ପ୍ରତି ଯଥେଷ୍ଟ ବିଶ୍ୱାସ ଥିଲା ।

ଏଥିରେ ମଧ୍ୟ କୌଣସି ସନ୍ଦେହ ନାହିଁ ଯେ ପାରାଦ୍ୱୀପ ବନ୍ଦର ବିଜୁବାବୁଙ୍କର ସର୍ବଶ୍ରେଷ୍ଠ ଅବଦାନ । ମୁଁ ଅନେକଥର ଯୋଜନା କମିଶନ ଯିବାକୁ ସୁଯୋଗ ପାଇଛି । ମୋ ସହିତ ଆହ୍ଲାବାଦରେ ପଢୁଥିବା ଜଣେ ସାଙ୍ଗ ପାରାଦ୍ୱୀପ ବିଷୟରେ ଯାହା ମତେ କହିଲେ, ତାହା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ସେ କହିଲେ, ପାରାଦ୍ୱୀପ ବନ୍ଦର ବିଷୟରେ ଯୋଜନା କମିଶନରେ କୌଣସି ଚିଠା ନ ଥିଲା । ପ୍ରଧାନମନ୍ତ୍ରୀ କିପରି ତାକୁ ଉନ୍ମୋଚନ କଲେ ଯୋଜନା କମିଶନର ସଭ୍ୟମାନେ ଆଶ୍ଚର୍ଯ୍ୟ ହୋଇଗଲେ । ପ୍ରଧାନମନ୍ତ୍ରୀଙ୍କୁ ପାରାଦ୍ୱୀପକୁ ଆଣିବା ଏବଂ ତାଙ୍କଦ୍ୱାରା ପାରାଦ୍ୱୀପ ବନ୍ଦର ଶୁଭାରମ୍ଭ କରାଇବା କେବଳ ବିଜୁବାବୁଙ୍କ ଦ୍ୱାରା ସମ୍ଭବ ହୋଇପାରିଲା । ଅନ୍ୟ କେହି ଏପରି ଦୁଃସାହସିକ କାମ କରିପାରି ନଥାନ୍ତେ ।

Digitized by srujanika@gmail.com

ବିମଳେନ୍ଦୁବାବୁ ବିଜୁବାବୁଙ୍କ ସାହସିକ କାର୍ଯ୍ୟ ବିଷୟରେ ଅନେକ କଥା ଲେଖିଛନ୍ତି । କିନ୍ତୁ ଗୋଟିଏ ଯୋଡ଼ିଏ କଥା ଛାଡ଼ି ଯାଇଛନ୍ତି । ମୁଁ ତାକୁ ପୂରଣ କରିବାକୁ ଚେଷ୍ଟା କରୁଛି । ମୁଁ ଯେତେବେଳେ ୧୯୮୫ ମସିହାରେ ଖୋର୍ଦ୍ଧା ନିର୍ବାଚନର ଜଣେ ପ୍ରାର୍ଥୀ ହିସାବରେ ଠିଆ ହେଲି, ସେତେବେଳେ ଶୁଣିବାକୁ ପାଇଲି ଯେ ଜଣକ ପଛରେ ମଟର ସାଇକେଲରେ ଯାଇ ବିଜୁବାବୁ ମୋ ବିରୁଦ୍ଧରେ ପ୍ରଚାର କରୁଛନ୍ତି । କିନ୍ତୁ ସେ ପ୍ରଚାରରେ ମୋ ବିରୁଦ୍ଧରେ କିଛି ନ କହି କଂଗ୍ରେସ ବିରୁଦ୍ଧରେ ଭାଷଣ ଦେଉଛନ୍ତି । ମୁଁ ଆଶ୍ଚର୍ଯ୍ୟ ହେଲି ଯେ ବିଜୁବାବୁଙ୍କ ପରି ଜଣେ ବିଶିଷ୍ଟ ନେତା ଏହି ପ୍ରଚାରକୁ କାହିଁକି ଆସିଲେ । ମୁଁ ସେପରି କିଛି ଜଣେ ଟାଣୁଆ ପ୍ରାର୍ଥୀ ନ ଥିଲି । ଯେତେବେଳେ ପରବର୍ତ୍ତୀ ନିର୍ବାଚନରେ ବିଜୁବାବୁ ଜିଣି ମୁଖ୍ୟମନ୍ତ୍ରୀ ହେଲେ, ମୁଁ ଓଡ଼ିଶାର ଯୋଜନା ବୋର୍ଡ଼ର ଡେପୁଟି ଚେଆରମେନ ପଦରୁ ଇସ୍ତଫା ଦେବାର କଥା, ତେଣୁ ଇସ୍ତଫା ଦେଇଥିଲି । କିନ୍ତୁ ଯୋଜନା ବୋର୍ଡ଼ର ଡେପୁଟି ଚେଆରମେନ ପଦ ପାଇଁ ଯେତେବେଳେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଫାଇଲ ଗଲା, ସେଥିରେ ସେ ତିନୋଟି ନାମ ଲେଖିଲେ– ଶିବରମଣ, ଡକ୍ଟର ନୀଳକଣ୍ଠ ରଥ ଓ ବୈଦ୍ୟନାଥ ମିଶ୍ର । ମୋର ସମ୍ମତି ପାଇଁ ଯେତେବେଳେ ଚିଠି ଆସିଲା, ମୁଁ ତାକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ମୁଁ ଯେତେବେଳେ ଅନୁସନ୍ଧାନ କଲି, ସେତେବେଳେ ଜାଣିବାକୁ ପାଇଲି ନିଜେ ମୁଖ୍ୟମନ୍ତ୍ରୀ ମୋ ନାମ ଲେଖିଛନ୍ତି ଏବଂ ଯୋଜନା ବୋର୍ଡ଼ର କୌଣସି ଅଫିସର କହିଛନ୍ତି ଯେ ବୈଦ୍ୟନାଥବାବୁ ଜଣେ କଂଗ୍ରେସ ଲୋକ, କାରଣ ସେ କଂଗ୍ରେସ ତରଫରୁ ଖୋର୍ଦ୍ଧାରୁ ପ୍ରାର୍ଥୀ ହୋଇଥିଲେ, ସେତେବେଳେ ସେ ଉତ୍ତର ଦେଇଥିଲେ, Do not think of party affiliation । ଅବଶ୍ୟ ଶିବରମଣ ଆସିବାକୁ ରାଜି ହେଲେ, ତେଣୁ ମୋର ପ୍ରଶ୍ନ ଉଠିଲା ନାହିଁ । ଏଥିରୁ ଜାଣିହେବ ବିଜୁବାବୁ କେଡ଼େ ଉଦାର । ଏଇଠି ଅନ୍ୟ ଗୋଟିଏ କଥା ଲେଖିଲେ ବୋଧହୁଏ କିଛି ଭୁଲ ହେବ ନାହିଁ । ମୁଁ ନବକୃଷ୍ଣ ଚୌଧୁରୀ ଗବେଷଣା କେନ୍ଦ୍ର ଆରମ୍ଭ କରିଥିଲି – ଆଇ.ସି.ଏସ୍.ଏସ୍.ଆର ସୁପାରିଶ ହିସାବରେ ମୁଁ ତାର ଚେଆରମେନ ହେଲି । ମୋର ଚେଆରମେନ ୩ ବର୍ଷ ପୂରଣ ହେଲା ପରେ, ଯେତେବେଳେ ମୋର ନାମ ଆଉଥରେ ସୁପାରିଶ ହେଲା, ତତ୍‌କାଳୀନ ଶିକ୍ଷାମନ୍ତ୍ରୀ ମୁଁ ଜାନକୀବାବୁଙ୍କ ଲୋକ ବୋଲି ମୋର ନାମକୁ ସମର୍ଥନ କଲେ ନାହିଁ । ଏହା ଲେଖିବାର ଏକମାତ୍ର କାରଣ ସାଧାରଣ ରାଜନୀତିଜ୍ଞ ଓ ବିଜୁବାବୁଙ୍କ ଭିତରେ କେତେ ପ୍ରଭେଦ ।

Digitized by srujanika@gmail.com

ବିଜୁବାବୁଙ୍କ ସହିତ ମୋର ଅନେକ ସଂପର୍କ ରହିଛି। ଅନେକ ସଭାକୁ ଆମେ ଦୁଇଜଣ ଯାଇଛୁ, ମୁଁ ପ୍ରଥମେ କହିଛି ଏବଂ ସେ ମୋ ପରେ କହିଛନ୍ତି। ମୁଁ ବକ୍ତା ଏବଂ ସେ ମୁଖ୍ୟ ଅତିଥି। ସେ ତାଙ୍କର ଭାଷଣରେ ଖୋଲାଖୋଲି ମୋର ବକ୍ତୃତାକୁ ପ୍ରଶଂସା କରିଛନ୍ତି। ମୁଁ ମୋ ବକ୍ତୃତାରେ ଅଧିକାଂଶ କ୍ଷେତ୍ରରେ ସାଇନ୍ସ ଓ ଟେକ୍ନୋଲୋଜି ଏବଂ ଆଧୁନିକତାରେ ଜୋର ଦିଏ - କାରଣ ତାହାହିଁ ମୋର ମତ ଏବଂ ସୁଖର କଥା ଯେ ବିଜୁବାବୁ ଯେଉଁ ସ୍ୱପ୍ନ ଦେଖୁଥିଲେ ସେଥିରେ ସେ ମଧ୍ୟ ଏହି ତିନୋଟି ଉପରେ ଗୁରୁତ୍ୱ ଦେଉଥିଲେ। ସବୁ କଥା ତ ଲେଖିହେବ ନାହିଁ। ତେବେ ଅନ୍ୟ ଗୋଟିଏ କଥା ନ କହି ରହିପାରୁ ନାହିଁ। ମୁଁ ନବକୃଷ୍ଣ ଚୌଧୁରୀ ସେଣ୍ଟରର ଡାଇରେକ୍ଟର ଥିବା ସମୟରେ ବିଜୁବାବୁ କ୍ଷମତାକୁ ଆସି ମୁଖ୍ୟମନ୍ତ୍ରୀ ହୋଇଥାନ୍ତି। ମୁଁ ତାଙ୍କୁ ଦେଖାକରି କହିଲି ଯେ ଆମେ ଆଇ.ସି.ଏସ୍.ଏସ୍.ଆର୍ ତରଫରୁ ଗୋଟିଏ ରିସର୍ଚ୍ଚ ସେଣ୍ଟର ଗଠନ କରିଛୁ। ସେ କହିଲେ, ରିସର୍ଚ୍ଚ ସେଣ୍ଟର - କିଏ ରିସର୍ଚ୍ଚ କରୁଛି, କାହିଁକି ଏ ସେଣ୍ଟର ଗଢ଼ିଛ ? ମୁଁ ମୋର କୈଫିୟତ ଦେଇ କହିଲି ମୁଖ୍ୟମନ୍ତ୍ରୀ ଏହାର ଚେଆରମେନ। ମତେ କାହିଁକି ତମେ ଚେଆରମେନ କରିଛ। ମୁଁ କହିଲି, ମୁଁ କରିନାହିଁ ସରକାର କରିଛନ୍ତି। ସେ ଉତ୍ତରରେ କହିଲେ ମୁଁ କୌଣସି ଅନୁଷ୍ଠାନର ଚେଆରମେନ ହେବାକୁ ଚାହେଁ ନାହିଁ। ମୁଁ ତାପରେ ତାଙ୍କୁ ଅନୁରୋଧ କଲି ଆମେ ଗୋଟିଏ ସେମିନାର କରୁଛୁ - ସେଥିରେ ନବବାବୁଙ୍କ ମୂର୍ତ୍ତି ଉନ୍ମୋଚନ ଆପଣ କରିବେ। ତା'ପରେ ସେ କହିଲେ, ମୁଁ କୌଣସି ସେମିନାର ଆଟେଣ୍ଡ କରିବାକୁ ଚାହେଁ ନାହିଁ କି ମୂର୍ତ୍ତି ଉନ୍ମୋଚନ କରିବାକୁ ଚାହେଁ ନାହିଁ। ଦବି ନ ଯାଇ ପୁଣି କହିଲି, ସେମିନାରଟି ଏହି ଭୁବନେଶ୍ୱରରେ ଏବଂ ନବକୃଷ୍ଣ ଚୌଧୁରୀଙ୍କ ନାମରେ ନାମିତ ହୋଇଛି - ନବବାବୁ ଆପଣଙ୍କର ଘନିଷ୍ଠ ବନ୍ଧୁ - ଆପଣ ନ କଲେ ଆଉ କିଏ କରିବ ? ନବବାବୁ - ସେ ମୋର ଗୁଡ୍ ଫ୍ରେଣ୍ଡ, ଆଛା ମୁଁ ଯିବି - ସେଣ୍ଟର ପାଇଁ ୫ ଏକର ଜାଗା ନେଉଛୁ - ୫ ଏକର -Do you want to build an empire there? ତା'ପରେ ଚିଫ୍ ସେକ୍ରେଟେରୀଙ୍କ ସହିତ କଥାବାର୍ତ୍ତା କରି ମୁଁ ତାରିଖ ଠିକ୍ କଲି। ବିଜୁବାବୁ ଗଲେ, ବଢ଼ିଆ ଏକ ବକ୍ତୃତା ଦେଲେ। ନବବାବୁଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ କଲେ। ଗୋଟିଏ ଗଛ ଲଗେଇଲେ ଏବଂ କହିଲେ You have a good piece of land. Go ahead with your work. ସେତେବେଳେ ସେଠାରେ ଅନେକ ଆଦିବାସୀ ମହିଳା କାମ କରୁଥିଲେ। ବିଜୁବାବୁ ସେମାନଙ୍କ ପାଖକୁ ଯାଇ ସେମାନଙ୍କ ସହିତ କଥାବାର୍ତ୍ତା

Digitized by srujanika@gmail.com

କଲେ। ଅଧ ଘଣ୍ଟେ ଯାଗାରେ ଘଣ୍ଟେରୁ ଅଧିକ ସମୟ ରହିଲେ। ଏହା ହେଉଛି ବିଜୁବାବୁଙ୍କ ଲକ୍ଷଣ। ସେ ଯଦି କୌଣସି ଯାଗାରେ ଭଲକାମ ହେଉଥିବାର ଦେଖିବେ, ସେ ତାକୁ ପୂର୍ଣ୍ଣପ୍ରାଣରେ ସମର୍ଥନ କରିବେ।

ବିମଳେନ୍ଦୁବାବୁ ଲେଖିଛନ୍ତି ଯେ ଅଚ୍ୟୁତ ସାମନ୍ତ ବିଜୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଛନ୍ତି। ଖାଲି ବିଜୁବାବୁ ନୁହେଁ, ଅନେକ ଆଦର୍ଶ ତାଙ୍କର ଭିତ୍ତିକୁ ସୁଦୃଢ଼ କରିଛି। ମୁଁ ଅନେକ କଥା ତାଙ୍କ ବିଷୟରେ ଜାଣେ - ତାଙ୍କର ଚାଲିଚଳନ ଓ କାର୍ଯ୍ୟକ୍ରମକୁ ଦେଖି ମୁଁ ଥରେ ଗୋଟିଏ ଛୋଟିଆ ପ୍ରବନ୍ଧ 'ସମୟ'ରେ ଛପେଇ ଥିଲି। ଏଥିରେ କୌଣସି ସନ୍ଦେହ ନାହିଁ ଯେ ବିଜୁବାବୁଙ୍କର ଆଦର୍ଶ ତାଙ୍କୁ ପ୍ରଭାବିତ କରିଛି। ବିଜୁବାବୁ ଓ ଅଚ୍ୟୁତ ସାମନ୍ତଙ୍କ କାର୍ଯ୍ୟକ୍ରମ ବିଷୟରେ ଲେଖି ବସିଲେ ମତେ ଅନେକ କଥା ଲେଖିବାକୁ ପଡ଼ିବ। ସେଥିପାଇଁ ସେଥିରୁ ନିବୃତ ହେଉଛି। ମୁଁ ଅନେକ ଅଧିକ ଲେଖିଲିଣି। ଆଉ ଅଧିକ ନ ଲେଖି ବିମଳେନ୍ଦୁବାବୁଙ୍କୁ ଧନ୍ୟବାଦ ଦେଉଛି ଯେ ସେ ବିଜୁବାବୁଙ୍କ ବିଷୟରେ ଏକ ମର୍ମସ୍ପର୍ଶୀ ପୁସ୍ତକ ରଚନା କରିଛନ୍ତି।

ବୈଦ୍ୟନାଥ ମିଶ୍ର
୩୦.୬.୧୨
(ବୈଦ୍ୟନାଥ ମିଶ୍ର)

Digitized by srujanika@gmail.com

ଚନ୍ଦ୍ରଶେଖର ରଥ
**Chandrasekhar Rath**

ଏନ୍-୧, ଏ/୩୨, ନୂଆପଲ୍ଲୀ, ଭୁବନେଶ୍ୱର-୭୫୧୦୧୫
N-1, A/32, Nayapalli, Bhubaneswar-751015, Mob:09437142280
e-mail : sbrath4k@gmail.com
sbrath2k@rediffmail.com



# ଅଭିମତ

ଡକ୍ଟର ବିମଳେନ୍ଦୁ ମହାନ୍ତିଙ୍କର ବୌଦ୍ଧଧର୍ମ ସଂପର୍କିତ ନିବନ୍ଧମାଳା ସହିତ ମୁଁ ବହୁଦିନରୁ ଏକ ଶ୍ରଦ୍ଧାଶୀଳ ପାଠକ ହିସାବରେ ପରିଚିତ। ତାଙ୍କଦ୍ୱାରା ରଚିତ ଗବେଷଣାତ୍ମକ ପୁସ୍ତକ 'ଭାରତର ବରପୁତ୍ର ବିଜୁ ପଟ୍ଟନାୟକ' ପାଠ କରି ଅତ୍ୟନ୍ତ ସନ୍ତୋଷ ଲାଭ କଲି। ପୁସ୍ତକଟିରେ ବିଜୁବାବୁଙ୍କ ଅତୁଳନୀୟ ଚରିତ୍ର ସ୍ପଷ୍ଟ ଭାବରେ ପ୍ରତିଫଳିତ ହେବାର ମଧ୍ୟ ଲକ୍ଷ୍ୟ କଲି। ବିଜୁବାବୁ ସାଇକେଲ୍‌ରେ ପେଶାଓ୍ୱାର୍ ଯିବାଠାରୁ ଆରମ୍ଭ କରି ଡାକୋଟା ପ୍ଲେନ୍‌ରେ ଅତ୍ୟନ୍ତ ଦୁଃସାହସିକ ଉଡ଼ାଣ ବିଷୟ ଆଜି ବି ସମସ୍ତଙ୍କୁ ଉଦ୍‌ବୁଦ୍ଧ କରେ, ରୋମାଞ୍ଚିତ କରେ। ଏସବୁ ଲେଖାଗୁଡ଼ିକରେ ବିଜୁବାବୁଙ୍କର ବଳିଷ୍ଠ ଚରିତ୍ର ଓ ଅନେକ ଦୁର୍ଲଭ ତଥ୍ୟ ସହ ମୁଁ ପରିଚିତ ହେଲି।

ଖେଳ ପଡ଼ିଆରେ ପୋଲ୍‌ଭଲ୍‌ଟ, ଲଙ୍ଗ୍ ଜମ୍ପ୍ ପରି ବିଜୁବାବୁଙ୍କ ଜୀବନରେ ମଧ୍ୟ ଆଗକୁ ଯିବାର, ଉର୍ଦ୍ଧ୍ୱକୁ ଯିବାର, ଅଧିକରୁ ଅଧିକ ସାହସିକତାର ସହିତ ସଂପୃକ୍ତି ସ୍ପଷ୍ଟ ଭାବରେ ଲକ୍ଷ୍ୟ କଲି। କହିବା ବାହୁଲ୍ୟ ମାତ୍ର ଯେ ବିଜୁବାବୁ ଯୁବମାନସ ପାଇଁ ଆଜି ବି ଏକ ଆଦର୍ଶ ପୁରୁଷ ଏଥିରେ ସନ୍ଦେହ ନାହିଁ। ରାଜନୀତି କ୍ଷେତ୍ରରେ ମଧ୍ୟ ତଦ୍ରୂପ। ତାଙ୍କର ସମସ୍କନ୍ଧ ସମସ୍ତଙ୍କୁ ଟପିଯିବାର, ତାଙ୍କଠାରୁ ଅଧିକ ଅଭିଜ୍ଞ ଓ ପ୍ରତିଷ୍ଠିତ ନେତାମାନଙ୍କୁ ପରାସ୍ତ କରିବାର ଦୁଃସାହସିକତା ଆମେ ଲକ୍ଷ୍ୟ କଲୁ କିନ୍ତୁ କାହାପ୍ରତି ତାଙ୍କର ବିଦ୍ୱେଷ ନଥିଲା।

ଜୀବନରେ ପ୍ରତିଷ୍ଠିତ ହେବାର, ଉଚ୍ଚତର, ମହତ୍ତର ମୂଲ୍ୟ ଉପଲବ୍ଧି କରିବାର ଆସ୍ପୃହା ଯେଉଁମାନଙ୍କର ଅଛି ସେମାନେ ଏହି ପୁସ୍ତକକୁ ଏକ ମାର୍ଗଦର୍ଶନ ଗ୍ରନ୍ଥ ହିସାବରେ ଗ୍ରହଣ କରିପାରନ୍ତି।

ଇତ୍ୟବସରରେ ଡକ୍ଟର ବିମଳେନ୍ଦୁ ମହାନ୍ତି ଜଣେ ଖ୍ୟାତନାମା ଗବେଷକ, ନିବନ୍ଧକାର ହିସାବରେ ମାନନୀୟ ହୋଇସାରିଲେଣି। ତାଙ୍କଠାରୁ ଆହୁରି ଅନେକ କିଛି ଆମେ ଆଶା କରୁଛୁ।

ଚନ୍ଦ୍ରଶେଖର ରଥ
(ଚନ୍ଦ୍ରଶେଖର ରଥ)

*Digitized by srujanika@gmail.com*

# ଲେଖକୀୟ

ବିଜୁ ପଟ୍ଟନାୟକଙ୍କ ସମ୍ପର୍କରେ ଲେଖିବି ବୋଲି ତାଙ୍କର ସ୍ୱର୍ଗାରୋହଣ ପରେ ବହୁତଥର ଚିନ୍ତା କରିଛି । ଓଡ଼ିଆ ଜାତିକୁ ଏକ ସମୃଦ୍ଧ ଜାତିରେ ପରିଣତ କରିବାକୁ ସେ ତାଙ୍କ ଜୀବନକୁ ଉତ୍ସର୍ଗ କରିଥିଲେ । ତାଙ୍କ ବିଷୟରେ ଚିନ୍ତା କରିବା ଅର୍ଥ ନିଜପାଇଁ ଶକ୍ତି ସଂଗ୍ରହ କରିବା । ଓଡ଼ିଶାର ଅତୀତ ଅତ୍ୟନ୍ତ ସମୃଦ୍ଧଶୀଳ ଥିଲା, ଓଡ଼ିଆମାନେ ବାଣିଜ୍ୟ ବ୍ୟବସାୟ କରି ବହୁ ଧନସଂପଦର ଅଧିକାରୀ ଥିଲେ । କିନ୍ତୁ ସେହି ଓଡ଼ିଆମାନେ ଯେ ପରବର୍ତ୍ତୀ କାଳରେ ଦାରିଦ୍ର୍ୟ ତାଡ଼ନାରେ ଜର୍ଜରିତ ତାହା ବିଜୁବାବୁଙ୍କୁ ବ୍ୟଥିତ କରୁଥିଲା । ଏହି ଦାରିଦ୍ର୍ୟତା ବିଲୋପ ପାଇଁ ସେ ନିଜର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟକୁ ବଳି ଦେଇଥିଲେ । ସେ ଥିଲେ ଅସାଧାରଣ ପ୍ରତିଭାସମ୍ପନ୍ନ ଦୁର୍ଦ୍ଧର୍ଷ ଓ ସାହସୀ ବ୍ୟକ୍ତି । ନେପୋଲିଅନଙ୍କ ଭଳି ସେ ମଧ୍ୟ କହୁଥିଲେ ତାଙ୍କ ଅଭିଧାନରେ କୌଣସି କଥା ଅସମ୍ଭବ ନୁହେଁ । କଠୋର ଶ୍ରମ ଓ ଇଚ୍ଛାଶକ୍ତି ଦ୍ୱାରା ସବୁକିଛି ସମ୍ଭବ ହୋଇପାରେ । ତାଙ୍କ ଭଳି ଉଦ୍ୟମୀ, ସାହସୀ, ଧୈର୍ଯ୍ୟବାନ, ତୀକ୍ଷ୍ଣ ଧୀସମ୍ପନ୍ନ ଓ ପରାକ୍ରମୀ ଦେଶଭକ୍ତ ଭାରତରେ କ୍ୱଚିତ୍ ଜନ୍ମଗ୍ରହଣ କରିଛନ୍ତି ।

ଓଡ଼ିଆ ଜାତିକୁ ଦରିଦ୍ର ଅବସ୍ଥାରେ ଦେଖି ମ୍ରିୟମାଣ ହୋଇ ତାହାର ଉତ୍ଥାନ ପାଇଁ ବିଜୁବାବୁ ଅନବରତ କାର୍ଯ୍ୟରତ ରହି ଏ ଜାତିକୁ ଉନ୍ନତିର ପଥରେ ଆଗେଇ ନେବାକୁ ଦିଗ୍‌ଦର୍ଶନ ଦେଇଥିଲେ । ତାଙ୍କର ସ୍ମୃତିଚାରଣ କରିବା ମୋର ପବିତ୍ର କର୍ତ୍ତବ୍ୟ ବୋଲି ମନେକରି ଏହି ପୁସ୍ତକ 'ଭାରତର ବରପୁତ୍ର ବିଜୁ ପଟ୍ଟନାୟକ' ରଚନା କାର୍ଯ୍ୟରେ ମନୋନିବେଶ କଲି ।

ବିଜୁବାବୁ ତାଙ୍କ ବେପରୁଆ ମନୋଭାବ ଯୋଗୁଁ ଅନେକ ସମୟରେ କ୍ଷମତା ବଳୟରୁ ଦୂରରେ ରହିଥିଲେ । କିନ୍ତୁ ସେଥିରେ ତାଙ୍କର ଅବସୋସ ନଥିଲା । ସବୁବେଳେ ଚେଷ୍ଟା ଜାରି ରଖିଥିଲେ ସ୍ୱାର୍ଥନ୍ୱେଷୀ ରାଜନୈତିକ ଦଳଗୁଡ଼ିକର ଜନବିରୋଧୀ କାର୍ଯ୍ୟକ୍ରମକୁ ସାଧାରଣ ଜନତା ଆଗରେ ପ୍ରକାଶ କରି ସେମାନଙ୍କର ମୁଖା ଖୋଲିଦେବାପାଇଁ । ବିଜୁ ପଟ୍ଟନାୟକ କାହାର ଅନୁଗାମୀ ହୋଇ ରାଜନୀତି କରିବାରେ ବିଶ୍ୱାସ ରଖିନଥିଲେ । ସର୍ବଦା ନିଜ ଲକ୍ଷ୍ୟ ଓଡ଼ିଶାବାସୀଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ଯାହା ଉଚିତ୍ ବୋଲି ଭାବୁଥିଲେ ତାହା କରୁଥିଲେ । ବିଜୁ ପଟ୍ଟନାୟକ କହୁଥିଲେ, "ମୋ କଥାକୁ, ଏବେ କେହି ବୁଝିବାକୁ ଚେଷ୍ଟା କରୁ ନାହାନ୍ତି, ମଲାପରେ ପ୍ରତ୍ୟେକ ଦିନ ମୋତେ ମନେ ପକେଇବେ ।" ଏହା ଅକ୍ଷରେ ଅକ୍ଷରେ ସତ । ଏବେ ମୁଁ ତାଙ୍କ କଥା ପ୍ରତ୍ୟେକ ଦିନ ମନେ ପକାଉଛି ।

Digitized by srujanika@gmail.com

ବିଜୁ ପଟ୍ଟନାୟକଙ୍କ ଅବର୍ତ୍ତମାନରେ ଓଡ଼ିଶାର ଗରିବ ଲୋକମାନଙ୍କର ଯେଉଁ ବିରାଟ କ୍ଷତି ଘଟିଲା ତାହା ଅବର୍ଣ୍ଣନୀୟ। ଚେଷ୍ଟା କରିଛି ଏହି ପୁସ୍ତକରେ ବିଜୁବାବୁଙ୍କ କାର୍ଯ୍ୟାବେଳୀ ସଂପର୍କରେ କିଛି ଉଲ୍ଲେଖ କରିବାକୁ। ବିଜୁ ପଟ୍ଟନାୟକଙ୍କ ଜୀବନୀ, ସାହସିକତା, ଦେଶପ୍ରୀତି, ସାଧନା ଓ ଓଡ଼ିଶାକୁ ବିଶ୍ୱଦରବାରରେ ପରିଚିତ କରାଇବାକୁ ନେଇଥିବା ପଦକ୍ଷେପ ଆଦି ସମ୍ପର୍କରେ ଏହି ପୁସ୍ତକରେ ଆଲୋଚନା ହୋଇଛି।

ବିଜୁବାବୁଙ୍କ ବିଷୟରେ ପ୍ରସ୍ତୁତ ପୁସ୍ତକ 'ଭାରତର ବରପୁତ୍ର ବିଜୁ ପଟ୍ଟନାୟକ' ପଢ଼ି ଓଡ଼ିଶାର ବିଶିଷ୍ଟ ଶିକ୍ଷାବିତ ତଥା ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ପ୍ରଫେସର ଡକ୍ଟର ବୈଦ୍ୟନାଥ ମିଶ୍ର ଏହି ପୁସ୍ତକର ମୁଖବନ୍ଧ ଓ ଅତିବଡ଼ୀ ଜଗନ୍ନାଥ ଦାସ ପୁରସ୍କାରପ୍ରାପ୍ତ ବରିଷ୍ଠ ସାହିତ୍ୟିକ ପ୍ରଫେସର ଚନ୍ଦ୍ରଶେଖର ରଥ ତାଙ୍କର ଅଭିମତ ପ୍ରଦାନ କରିଥିବାରୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ।

ମୋତେ ଏହି ପୁସ୍ତକ ରଚନାରେ ମୋର ବନ୍ଧୁ ବିଶିଷ୍ଟ ସାହିତ୍ୟିକ ଡକ୍ଟର ବିଭୁତି ପଟ୍ଟନାୟକ ଏବଂ ବରିଷ୍ଠ ସାମ୍ବାଦିକ ବସନ୍ତ ଦାସ ବହୁଭାବରେ ସହଯୋଗ କରିଥିବାରୁ ମୁଁ ସେମାନଙ୍କୁ ଅନ୍ତରର ସହିତ ଧନ୍ୟବାଦ ଅର୍ପଣ କରୁଛି।

ମୋ ପରିବାରର ସଦସ୍ୟ ସାନଭାଇ ପ୍ରିୟବ୍ରତ ମହାନ୍ତି, ଭାଇବୋହୂ ଡକ୍ଟର ସାଗରୀକା ସ୍ୱାଇଁ, ସହଧର୍ମିଣୀ ପ୍ରଫେସର ବେଦବତୀ ମହାନ୍ତି, ପୁଅ ଡାକ୍ତର ସୁଶାନ୍ତ ମହାନ୍ତି, ବୋହୂ ଡାକ୍ତର ନିତା ମହାନ୍ତି, ନାତି ନିଶାନ୍ତ ଓ ନାତୁଣୀ ସୁନେହରି ମୋତେ ବିଭିନ୍ନ ଭାବରେ ଏହି ପୁସ୍ତକଟି ଲେଖିବାକୁ ଉତ୍ସାହିତ କରିଛନ୍ତି। ସେଥିପାଇଁ ସେମାନେ ଧନ୍ୟବାଦାର୍ହ।

ପୁସ୍ତକରେ ସ୍ଥାନିତ ହୋଇଥିବା ଅନେକ ଫଟୋଚିତ୍ର ଇଷ୍ଟର୍ଣ୍ଣ ପ୍ରେସ ଏଜେନ୍ସିର ନିର୍ଦ୍ଦେଶକ ବିଶିଷ୍ଟ ସାମ୍ବାଦିକ ଅନିଲ ପ୍ରସାଦ ମିଶ୍ରଙ୍କ ପୁସ୍ତକ 'ମେମୋରିଜ୍ ଅଫ୍ ବିଜୁ ପଟ୍ଟନାୟକ'ରୁ ସଂଗ୍ରହ କରିଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ।

ପୁସ୍ତକ ରଚନା ପ୍ରାରମ୍ଭରୁ ମୁଁ ଦିଗହରା ହୋଇଯାଇଥିଲି। କିନ୍ତୁ ବହୁବର୍ଷର ସହକର୍ମୀ ଆଡଭୋକେଟ୍ ସରୋଜ କୁମାର ମିଶ୍ର ବିଚ୍ଛିନ୍ନ ହୋଇ ଇତସ୍ତତ ପଡ଼ିରହିଥିବା ବିଷୟଗୁଡ଼ିକୁ ଏକତ୍ର କରି ମୋତେ ପୁସ୍ତକ ରଚନା କରିବା ପାଇଁ ସହାୟତା ପ୍ରଦାନ କରିଥିଲେ। ସେଥିପାଇଁ ତାଙ୍କୁ ମୁଁ ଆନ୍ତରିକ ଧନ୍ୟବାଦ ଜଣାଉଛି।

ଏହି ପୁସ୍ତକଟି ପାଠକମାନଙ୍କ ଆଦୃତି ଲାଭକଲେ ମୋ ଶ୍ରମ ସାର୍ଥକ ହେବ।

ବିମଳେନ୍ଦୁ ମହାନ୍ତି

(ବିମଳେନ୍ଦୁ ମହାନ୍ତି)

Digitized by srujanika@gmail.com

# ଦ୍ୱିତୀୟ ସଂସ୍କରଣ ଅବସରରେ ଲେଖକୀୟ

ଅଗଷ୍ଟ ୨୦୧୭ ମସିହାରେ 'ଭାରତର ବରପୁତ୍ର ବିଜୁ ପଟ୍ଟନାୟକ' ପୁସ୍ତକଟି ପ୍ରକାଶିତ ହୋଇଥିଲା। ଫେବୃଆରୀ ମାସ ୨୦୧୮ ମସିହା ବେଳକୁ ମୋତେ ବହୁ ବ୍ୟକ୍ତି ଟେଲିଫୋନ୍ ମାଧ୍ୟମରେ ଜଣାଇଲେ ଯେ ଆପଣଙ୍କ ଲିଖିତ ପୁସ୍ତକ ବଜାରରେ ଉପଲବ୍ଧ ହେଉନାହିଁ। ଆପଣ ତୁରନ୍ତ ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିବାର ବ୍ୟବସ୍ଥା କରନ୍ତୁ। ଇତ୍ୟବସରରେ ଇଂରାଜୀରେ ଲିଖିତ *The Tall Man Biju Patnaik* ଭୁବନେଶ୍ୱରରେ ୨୭ ଜାନୁଆରୀ ୨୦୧୮ରେ ଏକ ବର୍ଣ୍ଣାଢ଼୍ୟ ଉତ୍ସବରେ ଲୋକାର୍ପିତ ହୋଇଥିଲା ଏବଂ ମୁମ୍ବାଇରେ ୩ ଫେବୃଆରୀ ୨୦୧୮ରେ ଏହି ପୁସ୍ତକଟି ଉନ୍ମୋଚିତ ହୋଇଥିଲା। ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦିଲ୍ଲୀ ଯାଇ ଏହି ପୁସ୍ତକଟିକୁ ରାଷ୍ଟ୍ରପତି ରାମନାଥ କୋବିନ୍ଦଙ୍କୁ ଉପହାର ଦେଇଥିଲେ। ୧୭ ମାର୍ଚ୍ଚ ୨୦୧୮ରେ ବିଜୁ ପଟ୍ଟନାୟକଙ୍କ ପୈତୃକ ନିବାସ ତାଙ୍କ ପିଲାଦିନର ଲୀଳାଖେଳାର ସ୍ଥଳୀ 'ଆନନ୍ଦ ଭବନ'କୁ ରାଷ୍ଟ୍ରପତି ଏକ 'ସଂଗ୍ରହାଳୟ ଓ ଅଧ୍ୟୟନ କେନ୍ଦ୍ର' ଭାବରେ ଘୋଷଣା କଲେ। ଏହି କେନ୍ଦ୍ରଟିକୁ ରାଜ୍ୟ ସଂସ୍କୃତି ବିଭାଗର ପରିଚାଳନା ଅଧୀନରେ ରଖାଯାଇଛି। ମୋର ହୃଦବୋଧ ହେଲା ଯେ ମୋ ଲିଖିତ 'ଭାରତର ବରପୁତ୍ର ବିଜୁ ପଟ୍ଟନାୟକ' ପୁସ୍ତକର ଦ୍ୱିତୀୟ ସଂସ୍କରଣରେ ମୁଁ ଦୁଇଟି ନୂତନ ଅଧ୍ୟାୟ ଯୋଡ଼ିବା ଯୁକ୍ତିଯୁକ୍ତ ହେବ। ପ୍ରଥମଟି ହେଲା '*The Tall Man Biju Patnaik* ପୁସ୍ତକର ଲୋକାର୍ପଣ ପରେ' ଏବଂ ଦ୍ୱିତୀୟଟି ହେଲା 'ବିଜୁବାବୁଙ୍କ ଯୋଗ୍ୟ ଦାୟାଦ ନବୀନ ପଟ୍ଟନାୟକ'। ଏଥିସହିତ କିଛି ନୂଆ ଫଟୋଗ୍ରାଫ୍ ମଧ୍ୟ ସ୍ଥାନିତ ହୋଇଛି ଏହି ଦ୍ୱିତୀୟ ସଂସ୍କରଣରେ। ଆଶା କରିବି ଯେ ଏହି ଦ୍ୱିତୀୟ ସଂସ୍କରଣ ମଧ୍ୟ ସୁଖପାଠ୍ୟ ଓ ଲୋକାଦୃତ ହେବ।

ବିମଳେନ୍ଦୁ ମହାନ୍ତି

(ବିମଳେନ୍ଦୁ ମହାନ୍ତି)

Digitized by srujanika@gmail.com

# ସୂଚୀପତ୍ର



- ୦ -

Digitized by srujanika@gmail.com

# ପରିବାର ଓ ପିଲାଦିନ

୧୯୧୬ ମସିହା ମାର୍ଚ୍ଚ ପାଞ୍ଚ ତାରିଖ ଭୋର ସମୟରେ କଟକର ତୁଳସୀପୁରର 'ଆନନ୍ଦଭବନ'ରେ ବିଜୁ ପଟ୍ଟନାୟକ ଜନ୍ମ ଗ୍ରହଣ କରିଥିଲେ। ବିଜୁବାବୁଙ୍କ ବାପାଙ୍କ ନାଁ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଏବଂ ମା'ଙ୍କ ନାଁ ଆଶାଲତା ଦେବୀ। ବାପା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଗଂଜାମ ଜିଲ୍ଲା ଭଂଜନଗର ନିକଟବର୍ତ୍ତୀ ନୂଆଗାଁର ବାସିନ୍ଦା ଥିଲେ। ସେମାନେ ଥିଲେ ନଅ ଭାଇ ଓ ନଅ ଭଉଣୀ ଏବଂ ମା' ଆଶାଲତାଙ୍କ ଘର ଥିଲା ବଙ୍ଗଳାର ଟିଟାଗଂଜ ସହର। ଆଶାଲତା ଦେବୀଙ୍କ ପରିବାରର ଅଧିକାଂଶ ଲୋକ ଥିଲେ ସ୍ୱାଧୀନତା ସଂଗ୍ରାମୀ। ୧୮୮୬ ମସିହାରେ ଲକ୍ଷ୍ମୀନାରାୟଣବାବୁ ମାଡ୍ରାସ ଖ୍ରୀଷ୍ଟିଆନ କଲେଜରୁ ବି.ଏ ପାସ୍ କରିଥିଲେ। ସେତେବେଳେ ତାଙ୍କଭଳି ଉଚ୍ଚଶିକ୍ଷିତ ବ୍ୟକ୍ତି ଓଡ଼ିଶାରେ ଖୁବ୍ କମ୍ ଥିଲେ। ଲକ୍ଷ୍ମୀନାରାୟଣ ପଟ୍ଟନାୟକ ପ୍ରଥମେ ସମ୍ବଲପୁର ସିଭିଲ୍ କୋର୍ଟରେ ମାସକୁ ୨୦ଟଙ୍କା ବେତନରେ କିରାନି ଭାବେ ଚାକିରି ଜୀବନ ଆରମ୍ଭ କରିଥିଲେ। ନିଜର ପ୍ରତିଭା ଓ ଅଧ୍ୟବସାୟ ଫଳରେ ସେ ମୁନ୍‌ସଫ୍ ପଦବୀକୁ ଉନ୍ନୀତ ହୋଇଥିଲେ। ସମ୍ବଲପୁର ଛାଡ଼ି ସେ କଟକ ଚାଲିଆସି ମୁନସଫ୍ ଭାବେ କାର୍ଯ୍ୟରେ ଯୋଗଦେଇଥିଲେ। ତାଙ୍କ ବିଚାର ପଦ୍ଧତିରେ ଇଂରେଜ ସାହେବମାନେ ମଧ୍ୟ ମୁଗ୍ଧ ହେଉଥିଲେ। ଲକ୍ଷ୍ମୀନାରାୟଣବାବୁ ନିଜ ପିଲାମାନଙ୍କୁ ବାସ୍ତବତା ସହ ଲଢ଼େଇ କରିବାକୁ ଶିକ୍ଷା ଦେଇଥିଲେ। ତାଙ୍କର ତିନି ପୁଅ ଓ ଗୋଟିଏ ଝିଅ। ବଡ଼ ପୁଅଙ୍କ ନାମ ଥିଲା ସଦାନନ୍ଦ। ପିତାମାତା ତାଙ୍କର ଶ୍ରଦ୍ଧା ନାମ ରଖିଥିଲେ ଜର୍ଜ୍। ପରବର୍ତ୍ତୀ ସମୟରେ ସେ ଜର୍ଜ୍ ପଟ୍ଟନାୟକ ନାମରେ ଜଣେ ଦନ୍ତ ଚିକିତ୍ସକ ଭାବେ ପ୍ରସିଦ୍ଧି ଲାଭ କରିଥିଲେ। ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜର ଦନ୍ତ ଚିକିତ୍ସା ବିଭାଗର ମୁଖ୍ୟ ଭାବେ କାର୍ଯ୍ୟକରି ସେ ଅବସର ଗ୍ରହଣ କରିଥିଲେ। ଜର୍ଜ୍ ପଟ୍ଟନାୟକ ଜଣେ ଖେଳାଳି ଭାବେ ଖ୍ୟାତି ଅର୍ଜନ କରିଥିଲେ ଏବଂ ଫୁଟବଲ୍, କ୍ରିକେଟ ଓ ଟେନିସ ଖେଳରେ ସେ ଥିଲେ ନିପୁଣ। ଓଡ଼ିଶା ଅଲମ୍ପିକ୍ ଆସୋସିଏସନ୍ ସହିତ ସେ ଆଜୀବନ ଜଡ଼ିତ ଥିଲେ। ସେ କଟକର ବାରବାଟୀ ଷ୍ଟାଡ଼ିୟମ୍ ଗଢ଼ିବାରେ ଭୈରବ ଚନ୍ଦ୍ର ମହାନ୍ତିଙ୍କ ଅନ୍ୟତମ ସହଯୋଗୀ ଥିଲେ। ବିଜୁ ପଟ୍ଟନାୟକଙ୍କ ବଡ଼ଭଉଣୀଙ୍କ ନାଁ

Digitized by srujanika@gmail.com

ଥିଲା ସ୍ୱୀକୃତି ପଟ୍ଟନାୟକ। ସେ ଜଣେ ଉଚ୍ଚଶିକ୍ଷିତା ଓ ପ୍ରତିଭାଶାଳୀ ଭଦ୍ରମହିଳା ଥିଲେ। ସେ ଇଂରାଜୀ ସାହିତ୍ୟରେ ସ୍ନାତକୋତ୍ତର ଶିକ୍ଷା ଲାଭ କରିଥିଲେ। ବିଜୁବାବୁଙ୍କ ଭିଣେଇ ବ୍ରହ୍ମାନନ୍ଦ ମହାପାତ୍ର ସେତେବେଳେ ଅବକାରୀ ବିଭାଗର ଜଣେ ଉଚ୍ଚପଦସ୍ଥ କର୍ମଚାରୀ ଥିଲେ। ସେ ମଧ୍ୟ ଜଣେ ବିଖ୍ୟାତ ଫୁଟବଲ ଖେଳାଳି ଥିଲେ। ବିବାହ ପରେ ସ୍ୱୀକୃତି ମହାପାତ୍ର ଜଣେ ସ୍ନେହମୟୀ ଭଗ୍ନୀ, ଆଦର୍ଶ ଗୃହିଣୀ ଭାବରେ ମହିଳାମାନଙ୍କୁ ସଂଗଠିତ କରିବାରେ ନିଜକୁ ନିୟୋଜିତ କରିଥିଲେ। ବିଜୁ ପଟ୍ଟନାୟକଙ୍କ ସାନଭାଇଙ୍କ ନାଁ ଥିଲା ଜୟାନନ୍ଦ ପଟ୍ଟନାୟକ। ସମସ୍ତେ ତାଙ୍କୁ ସିଜୁ ବୋଲି ଡ଼ାକୁଥିଲେ। ସେ ଇଣ୍ଡିଆନ୍ ଏୟାର୍ ଫୋର୍ସର ଜଣେ ଉଚ୍ଚପଦସ୍ଥ ଅଫିସର ଥିଲେ। ଶେଷରେ କର୍କଟ ରୋଗରେ ପୀଡ଼ିତ ହୋଇ ମୃତ୍ୟୁବରଣ କରିଥିଲେ। ଚାରି ଭାଇ-ଭଉଣୀ କଟକର ମିସନ୍ ସ୍କୁଲରେ ପାଠପଢ଼ା ଆରମ୍ଭ କରିଥିଲେ। ସେ ସ୍କୁଲ୍‌ର ପ୍ରଧାନ ଶିକ୍ଷକ ଓ.ଜେ. ମିଲ୍‌ମ୍ୟାନ୍ ଜଣେ ଦକ୍ଷ ଶିକ୍ଷକ ଥିଲେ ଏବଂ ସେ ବିଜୁବାବୁଙ୍କ ଖେଳକସରତ ଓ ଶୃଙ୍ଖଳା ନିଷ୍ଠା ଦେଖି ତାଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ।

ମାତ୍ର ୭ ବର୍ଷ ବୟସରେ ବିଜୁବାବୁ ଆପେଣ୍ଡିସାଇଟ୍ସ ରୋଗରେ ଆକ୍ରାନ୍ତ ହୋଇଥିଲେ ଏବଂ ଦୁର୍ଯ୍ୟୋଗକୁ ଆପେଣ୍ଡିସାଇଟ୍ସଟି ଫାଟିଗଲା। ଆପେଣ୍ଡିସାଇଟ୍ସ ଫାଟିଗଲେ ବଞ୍ଚିବା ଖୁବ୍ କଷ୍ଟକର ହୋଇଥାଏ। ସୌଭାଗ୍ୟକୁ ଡାକ୍ତର ଆନନ୍ଦ ଲାଲ ବୋଷ ଡାକରା ପାଇ ଲକ୍ଷ୍ମୀନାରାୟଣଙ୍କ ଘରେ ପହଞ୍ଚିଲେ ଏବଂ କହିଲେ, ବିଜୁଙ୍କୁ ବଞ୍ଚାଇବାର ଏକମାତ୍ର ଉପାୟ ହେଲା ଅପରେସନ୍ କରିବାକୁ ହେବ। ଡାକ୍ତର ବୋଷ ସେତେବେଳର ପ୍ରଖ୍ୟାତ ଇଂରେଜ ସର୍ଜନ ଡାକ୍ତର ମେଜର ପିବ୍ଲେସଙ୍କୁ ଅସ୍ତ୍ରୋପଚାର କରିବାକୁ ଅନୁରୋଧ କଲେ। ଡାକ୍ତର ପିବ୍ଲେସ ବିଜୁଙ୍କୁ ପଚାରିଲେ, "ବୀର ବାଳକ, କଷ୍ଟ ସହିବାକୁ ପ୍ରସ୍ତୁତ ?" ବିଜୁଙ୍କର ଉତ୍ତର ଥିଲା, 'ପ୍ରସ୍ତୁତ'। ବିନା ନିଶ୍ଚେତକ ପ୍ରୟୋଗରେ ଅସ୍ତ୍ରୋପଚାର ହେଲା ଏବଂ ବିଜୁବାବୁ ସୁସ୍ଥହୋଇ ନୂଆ ଜୀବନ ପାଇଲେ।

ବିଜୁବାବୁ ଗଛଚଢ଼ା, ପାଣି ବୁଡ଼ା ସବୁଥିରେ ପାରଙ୍ଗମ ଥିଲେ। ତାଙ୍କୁ ଟିକିଏ ସମୟ ମିଳିଲେ ତାଙ୍କ ଘର ଆଗରେ ଥିବା ଝଙ୍କା ବରଗଛ ଓହଳରେ ସେ ଦୋଳି ଖେଳନ୍ତି। ଦୋଳି ଖେଳୁ ଖେଳୁ ଦିନେ ତାଙ୍କ ହାତ ଖସିଗଲା, ସେ ଛିଟିକି ଯାଇ ତଳେ ପଡ଼ିଗଲେ। ମାଆ ଆଶାଦେବୀ ବିଜୁବାବୁଙ୍କର ଏ ଅବସ୍ଥା ଦେଖି କାନ୍ଦି ପକେଇଲେ। କିନ୍ତୁ ତାଙ୍କର ବାପା ଲକ୍ଷ୍ମୀନାରାୟଣ ପଟ୍ଟନାୟକ କହିଲେ, ଏମିତି ଛୋଟ ଛୋଟ ଦୁର୍ଘଟଣାରେ ବ୍ୟସ୍ତ ହେଲେ ଜଣେ ସଫଳତାର ଶିଖରରେ ପହଞ୍ଚ ପାରିବନାହିଁ।

Digitized by srujanika@gmail.com

ମହାନଦୀ ପଠାରେ ଭୂଇଁ ବରକୋଳି ଓ ଅନ୍ୟାନ୍ୟ କୋଳି ତୋଳି ଖାଇବା ବିଜୁବାବୁଙ୍କ ନିତିଦିନିଆ ଅଭ୍ୟାସ ଥିଲା। ଦିନେ ସେ ସାଙ୍ଗମାନଙ୍କ ସହିତ ଗଡ଼ଖାଇ ପାଖ ଜାମୁକୋଳି ଗଛରୁ ପାଚିଲା ଜାମୁକୋଳି ଖାଇବା ପାଇଁ ଯାଇଥିଲେ। କିନ୍ତୁ ସେଠି ପହଞ୍ଚି ଦେଖିଲେ ଜାମୁକୋଳି ଗଛ ମୂଳେ ଗୋରା ସିପାହୀମାନେ ବସି ଗପ ମାରୁଛନ୍ତି। ତାଙ୍କୁ ଦେଖି ବିଜୁବାବୁଙ୍କ ସାଙ୍ଗମାନେ ଜାମୁକୋଳି ଖାଇବା ନୋହିଲା ଭାବି ଯେ ଯାହାର ଘରକୁ ଫେରିଗଲେ। କିନ୍ତୁ ବିଜୁବାବୁ ଫେରିଲେନି। ସେ ଗୋଟିଏ ଗଛର ଉହାଡ଼ରେ ରହି ସେଇ ସିପାହୀମାନଙ୍କ ଉପରକୁ ଟେକା ଫୋପାଡ଼ିବାକୁ ଆରମ୍ଭ କଲେ। ସିପାହୀମାନେ ଏପରି ଆକସ୍ମିକ ଘଟଣା ପାଇଁ ପ୍ରସ୍ତୁତ ନ ଥିଲେ। ସେମାନଙ୍କୁ କିଏ ଟେକା ଫୋପାଡୁଛି ବୁଝିବା ଆଗରୁ, ବିଜୁବାବୁ ତୁଳସୀପୁର ଆଡ଼କୁ ବିଜୁଳି ବେଗରେ ଧାଇଁ ଯାଇ ତାଙ୍କ ଘର ଭିତରକୁ ପଶିଗଲେ। ତାଙ୍କ ବାପା ତାଙ୍କୁ ଦେଖି ସେ ଏମିତି କାହିଁକି ଦଉଡ଼ି ଦଉଡ଼ି ଝାଳନାଳ ହୋଇ ଘରକୁ ଆସିଛି ବୋଲି ପଚାରିଲେ। ସେ ସବୁକଥା ତାଙ୍କ ବାପାଙ୍କୁ କହିଲେ। ବାପା ସବୁ ଶୁଣି ଏମିତି ଭୀରୁ ପରି ଧାଇଁଆସିବା ଘଟଣାକୁ ନାପସନ୍ଦ କଲେ। ବିଜୁବାବୁ ବହିବସ୍ତାନି ଘରେ ଥୋଇ ପୁଣି ଗଡ଼ଖାଇ ପାଖ ଜାମୁକୋଳି ଗଛ ନିକଟକୁ ଗଲେ। ସିପାହୀମାନେ ତାଙ୍କୁ ଦେଖି ତୁରନ୍ତ ଧରି ଥାନାକୁ ନେଇଗଲେ। ପୋଲିସ ତାଙ୍କ ବୟସ ଦେଖି ତାଙ୍କ ହାତରେ ଦଶ ପାହାର ଦେଇ ତାଙ୍କୁ ଛାଡ଼ି ଦେଲେ।

୧୯୨୬ ମସିହାରେ ମୋହନ ଦାସ କରମଚାନ୍ଦ ଗାନ୍ଧୀ ଓଡ଼ିଶା ଆସି କଟକର ସ୍ୱରାଜ ଆଶ୍ରମରେ ରହୁଥାନ୍ତି। ପ୍ରତିଦିନ ବହୁ ଲୋକ ତାଙ୍କୁ ଦେଖିବା ପାଇଁ ରୁଣ୍ଡ ହେଉଥାନ୍ତି। ଗାନ୍ଧିଜୀଙ୍କୁ ଦର୍ଶନ କରିବାକୁ ସ୍କୁଲ କଲେଜର ପିଲାମାନେ ମଧ୍ୟ ଭିଡ଼ ଲଗାଇଥାନ୍ତି। ସେତେବେଳେ ବିଜୁବାବୁଙ୍କର ବୟସ ମାତ୍ର ୧୦ବର୍ଷ, କିନ୍ତୁ ଗାନ୍ଧିଜୀଙ୍କ ପାଖକୁ ଯାଇ ମୁଣ୍ଡିଆ ମାରିବେ, ଦି'ପଦ କଥା ହେବେ ଏଇ ଆଶା ନେଇ ସେ ଭିଡ଼ ଭିତରେ ଠେଲିପେଲି ବଡ଼ଭାଇ ଜର୍ଜ୍ ପଟ୍ଟନାୟକଙ୍କ ସହିତ ଆଗେଇ ଚାଲିଥାନ୍ତି। ସେତେବେଳର କଟକର ପୋଲିସ ଏସ୍‌ପି ମିଷ୍ଟର ହରଗ୍ରିଭ୍ ସାହେବ୍ ବିଜୁବାବୁଙ୍କୁ ଆଗକୁ ନ ବଢ଼ିବାକୁ ହାତରେ ଇଙ୍ଗିତ ଦେଲେ। ମାତ୍ର ସେ କିଛି ନ ଶୁଣି ଭିଡ଼ ଭିତରେ ଧସେଇ ପଶିଲେ। ଏସ୍‌ପି ଏହି ଅବାଧ୍ୟ ବାଳକର ଆଚରଣରେ କ୍ରୋଧିତ ହୋଇ ହାତରେ ଧରିଥିବା ପିତଳ ଗୋବ ଥିବା ଲାଠିରେ ତାଙ୍କ ମୁଣ୍ଡରେ ଏକ ପ୍ରହାର ଦେଲେ। ତାଙ୍କର ମୁଣ୍ଡ ଫାଟି ରକ୍ତ ଝରଝର ହୋଇ ବୋହି ପଡ଼ିଲା। ଉପସ୍ଥିତ ଜନତା

Digitized by srujanika@gmail.com

ଉତ୍ତେଜିତ ହୋଇ ପଡ଼ିଲେ। ମହାତ୍ମା ଗାନ୍ଧି ପାଟିତୁଣ୍ଡ ଶୁଣି ନିଜେ ଘଟଣା ସ୍ଥଳକୁ ଧାଇଁ ଆସିଲେ ଏବଂ ବିଜୁବାବୁଙ୍କୁ କୋଳ କରି ତାଙ୍କ ମୁଣ୍ଡରୁ ରକ୍ତ ପୋଛି ଦେଲେ। ବିଜୁବାବୁ ସେହିଦିନଠାରୁ ବ୍ରିଟିଶ ଶାସନ ବିରୁଦ୍ଧରେ ସଂଗ୍ରାମ କରିବାକୁ ମାନସିକ ପ୍ରସ୍ତୁତି ଆରମ୍ଭ କରିଥିଲେ।

୧୯୨୭ ମସିହାରେ ମିସନ୍ ସ୍କୁଲର ପ୍ରଧାନ ଶିକ୍ଷକ ମିଷ୍ଟର ମିଲ୍‌ମ୍ୟାନ୍ ଅନ୍ୟତ୍ର ବଦଳି ହୋଇ ଚାଲିଗଲା ପରେ ସେଠାରେ ପାଠପଢ଼ାର ଶୃଙ୍ଖଳା ରହିଲା ନାହିଁ। ସ୍କୁଲରେ ବିଭିନ୍ନ ପ୍ରକାର ସମସ୍ୟା ଦେଖାଦେଲା। ଅଭିଭାବକମାନେ ହତୋତ୍ସାହ ହୋଇପଡ଼ିଲେ। ତେଣୁ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ବିଜୁବାବୁଙ୍କ ସମେତ ଅନ୍ୟ ପିଲାମାନଙ୍କର ନାମ ରେଭେନ୍ସା କଲେଜିଏଟ୍ ସ୍କୁଲରେ ଲେଖାଇଲେ। ରେଭେନ୍ସା କଲେଜିଏଟ୍ ସ୍କୁଲକୁ ଯିବାଆସିବା କରିବା ପାଇଁ ଲକ୍ଷ୍ମୀନାରାୟଣବାବୁ ପିଲାମାନଙ୍କୁ ନୂଆ ସାଇକେଲ୍ କିଣିଦେଲେ। ନୂଆ ସ୍କୁଲର ଶିକ୍ଷକମାନେ ବିଜୁବାବୁଙ୍କ ପାଠପଢ଼ା ସହିତ ଭଲିବଲ, ଫୁଟବଲ୍, ଦଉଡ଼ା ଦଉଡ଼ି, କୁସ୍ତି କସରତରେ ଅତ୍ୟନ୍ତ ଦକ୍ଷତା ଦେଖି ତାଙ୍କୁ ଜଣେ ଆଦର୍ଶ ଛାତ୍ର ଭାବେ ସ୍ନେହ କରୁଥିଲେ। ପାଠପଢ଼ା ସଙ୍ଗେ ସଙ୍ଗେ ବିଜୁବାବୁ ଦେଶବିଦେଶର ଖବର ଜାଣିବା ପ୍ରତି ଆଗ୍ରହୀ ଥିଲେ। ବିଶେଷ କରି ଭାରତ ସ୍ୱାଧୀନତା ଆନ୍ଦୋଳନର ଟିକିନିଖି ବିବରଣୀ ସେ ନିଜ ଘରେ ଓ ସାଙ୍ଗସାଥୀମାନଙ୍କ ସହିତ ଆଲୋଚନା କରୁଥିଲେ।

୧୯୩୦ ମସିହାରେ କଟକ ଜିଲ୍ଲାରେ ପ୍ରଳୟଙ୍କରୀ ବନ୍ୟା ହୋଇଥିଲା। ଲୋକମାନଙ୍କ ପାଖରେ ସରକାରୀ କିମ୍ବା ବେସରକାରୀ ସାହାଯ୍ୟ ପହଞ୍ଚି ପାରୁନଥାଏ। ଭୋକ ଉପାସରେ ଲୋକମାନେ ଘରର ଛପର ଛାତ ଉପରେ ସାହାଯ୍ୟ ଆଶାରେ ଚାତକ ଭଳି ଚାହିଁ ରହିଥାନ୍ତି। ସମସ୍ତେ ଜଳବନ୍ଦୀ। ଉତ୍କଳମଣି ଗୋପବନ୍ଧୁ ଦାସ କଟକରୁ କିଛି ଛାତ୍ରଙ୍କୁ ଧରି ଚୁଡ଼ା-ଚାଉଳ ଯୋଗାଡ଼ କରି ଡ଼ଙ୍ଗାରେ ବରୀ ଯାଉଥିଲେ। ସେହି ଛାତ୍ରମାନଙ୍କ ଭିତରେ ବିଜୁ ପଟ୍ଟନାୟକ ବି ଥିଲେ। ମଝି ନଈରେ ହଠାତ୍ ପବନ ହେବାରୁ ଗୋପବନ୍ଧୁ ହାତରେ ଧରିଥିବା ଛତାଟି ପାଣିରେ ପଡ଼ିଗଲା। ବିଜୁ ପଟ୍ଟନାୟକ ଏହା ଦେଖି ପାଣି ସୁଅକୁ ଖାତିର ନ କରି ପହଁରି ପହଁରି ଛତାଟିକୁ ଧରି ପୁଣି ଉଠି ଆସିଲେ ଡଙ୍ଗାକୁ। ବିଜୁ ପଟ୍ଟନାୟକଙ୍କ ସାହସକୁ ତାରିଫ ନ କରି ରହିପାରିଲେନି ଗୋପବନ୍ଧୁ ଦାସ। ସେ ବଡ଼ ହେଲେ ଜଣେ ଖୁବ୍ ବଡ଼ ମଣିଷ ହୋଇ ସବୁକ୍ଷେତ୍ରରେ ବିଜୟୀ ହେବେ ବୋଲି ଆଶୀର୍ବାଦ କରିଥିଲେ।

Digitized by srujanika@gmail.com

୧୯୩୨ ମସିହାରେ ବିଜୁବାବୁ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ମାଟ୍ରିକ ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ। ସବୁ ବିଷୟ ଅପେକ୍ଷା ବିଜ୍ଞାନ ପ୍ରତି ତାଙ୍କର ଅଧିକ ଆଗ୍ରହ ଥିଲା। ସେଥିପାଇଁ ସେ ରେଭେନ୍‌ସା କଲେଜରେ ନାମ ଲେଖାଇ ଆଇ.ଏସ୍‌ସି ପଢ଼ିଲେ। ଆଇ.ଏସ୍‌ସିରେ କୃତିତ୍ୱ ସହିତ ଉତ୍ତୀର୍ଣ୍ଣ ହୋଇ ରେଭେନ୍ସାରେ ବି.ଏସ୍‌ସି ପଢ଼ିଲେ। ରେଭେନ୍‌ସା କଲେଜରେ ସେ କ୍ରମାଗତ ଭାବେ ତିନିବର୍ଷ ଆଥ୍‌ଲେଟିକ୍ ଚମ୍ପିଆନ୍ ହୋଇଥିଲେ। ଏପର୍ଯ୍ୟନ୍ତ ତାଙ୍କ ରେକର୍ଡର ସମକକ୍ଷ କେବଳ ନନ୍ଦନନ୍ଦନ ମହାପାତ୍ର (ଫେଲୁବାବୁ), ନନ୍ଦକୃଷ୍ଣ ଦାସ ଓ କାଳୀ ପ୍ରସନ୍ନ ଦାସ ହୋଇପାରିଛନ୍ତି। ଓଡ଼ିଶାରେ ପୋଲ୍‌ଭଲ୍ଟ ଖେଳ ପ୍ରଥମେ ବିଜୁବାବୁ ଆରମ୍ଭ କରିଥିଲେ। ଖେଳ ଛାଡ଼ିବାର ବହୁବର୍ଷ ପରେ ବିଜୁବାବୁ ଥରେ କଟକ ପୋଲିସ ପଡ଼ିଆକୁ ଅତିଥି ଭାବରେ ନିମନ୍ତ୍ରିତ ହୋଇ ଯାଇଥାନ୍ତି। ସେଠାରେ ସେ ଘୋଷଣା କଲେ ଯେ, ଯେଉଁ ବ୍ୟକ୍ତି ପୋଲ୍‌ଭଲ୍ଟରେ ସେ କରିଥିବା ରେକର୍ଡ ଭାଙ୍ଗିବ ତାକୁ ସେ ପୁରସ୍କୃତ କରିବେ। ଯୋଗକୁ ପୋଲିସରେ ସର୍ଜେଣ୍ଟ ଚାକିରି କରୁଥିବା ନନ୍ଦକୃଷ୍ଣ ଦାସ ବିଜୁବାବୁଙ୍କ ରେକର୍ଡ ଭାଙ୍ଗିବାରେ କୃତକାର୍ଯ୍ୟ ହୋଇଥିଲେ। ବିଜୁବାବୁ ତାଙ୍କୁ ୧୦୦ ଟଙ୍କା ପୁରସ୍କାର ରାଶି ପ୍ରଦାନ କରି ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତ କାମନା କରିଥିଲେ। ନନ୍ଦକୃଷ୍ଣ ଦାସ ପରବର୍ତ୍ତୀ ସମୟରେ ଡେକାଥେଲନ୍ କ୍ରୀଡ଼ାରେ ଭାରତରେ ପ୍ରଥମ ହୋଇ ଓଡ଼ିଶା ପାଇଁ ଗୌରବ ଆଣିଥିଲେ।

ଅତି ଶୃଙ୍ଖଳାର ସହିତ ତାଙ୍କ ପିଲାମାନଙ୍କୁ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ବଢ଼ାଇଥିଲେ। ଘରକୁ ପରିଷ୍କାର ପରିଚ୍ଛନ୍ନ ରଖିବା, ଘର ଚାରିପଟେ ଥିବା ଫୁଲ ବଗିଚାର ଯତ୍ନ ନେବା, ନିଜ କାମ ନିଜେ କରିବା ଆଦି ଯାବତୀୟ କାର୍ଯ୍ୟ ସେ ନିଜେ କରୁଥିଲେ ଓ ପିଲାମାନଙ୍କ ଦ୍ୱାରା ମଧ୍ୟ କରାଉଥିଲେ। ସଂଯମୀ ଓ ଦେଶଭକ୍ତ ଲକ୍ଷ୍ମୀନାରାୟଣଙ୍କ ବ୍ୟକ୍ତିତ୍ୱ ବିଜୁ ପଟ୍ଟନାୟକଙ୍କୁ ବହୁଭାବରେ ପ୍ରଭାବିତ କରିଥିଲା।

- ୦ -

Digitized by srujanika@gmail.com

# ବିଜୁ ପଟ୍ଟନାୟକଙ୍କର କଟକରୁ ପେଶାୱାର ସାଇକେଲ ଯାତ୍ରା

୧୯୩୨ ମସିହାରେ ବିଜୁ ପଟ୍ଟନାୟକ ରେଭେନ୍‌ସା କଲେଜର ପ୍ରଥମ ବର୍ଷ ଆଇ.ଏସ୍‌ସି ଛାତ୍ର। ଖରାଦିନ ଛୁଟିରେ ସେ ଭ୍ରମର, ଅମର ଓ ତାଙ୍କର ଅନ୍ୟ ସାଙ୍ଗସାଥୀ ମହାନଦୀ କୂଳରେ ବସି ଗପ କରୁଥାନ୍ତି। ବାପା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ନିଜ ଗାଁ ଭଂଜନଗରରୁ ଶଗଡ଼ ଗାଡ଼ିରେ କଟକ ଆସୁଆସୁ କେମିତି ସମ୍ବଲପୁରରେ ପହଞ୍ଚିଥିଲେ ସେ କଥା ବିଜୁ ପଟ୍ଟନାୟକ ବର୍ଣ୍ଣନା କରୁଥାନ୍ତି। ହଠାତ୍ ତାଙ୍କ ମୁଣ୍ଡରେ ଏକ ଖିଆଲ ଜୁଟିଲା ସେମାନେ ସାଇକେଲ୍‌ରେ ଏକ ଦୁଃସାହସିକ ଯାତ୍ରା କରିବେ। ସେଇଠି ସ୍ଥିର କଲେ, ସେମାନେ ଏକାଠି ମିଶି କଟକରୁ ସାଇକେଲ୍‌ରେ ପେଶାୱାର ଯିବେ। ମାତା ଆଶାଦେବୀ ଏପରି ଦୁଃସାହସିକ ଯାତ୍ରାରୁ ବିଜୁଙ୍କୁ ନିବର୍ତ୍ତାଇବା ପାଇଁ ଚେଷ୍ଟା କରିଥିଲେ। ମାତ୍ର ପିତା ଲକ୍ଷ୍ମୀନାରାୟଣ ଆନନ୍ଦରେ ଏ ଯାତ୍ରା ପାଇଁ ସ୍ୱୀକୃତି ଦେଇଥିଲେ। ଏହି ଦୁଃସାହସିକ ଯାତ୍ରା ପାଇଁ ଆବଶ୍ୟକ ଖର୍ଚ୍ଚ ନିମନ୍ତେ ଆର୍ଥିକ ଅନୁଦାନ ଲାଗି ବିଜୁବାବୁ ଓ ତାଙ୍କ ସହଯୋଗୀମାନେ କଟକ ଆଥଲେଟିକ୍ ଆସୋସିଏସନକୁ ଆବେଦନ କରିଥିଲେ। କିନ୍ତୁ ଆସୋସିଏସନ କୌଣସି ସାହାଯ୍ୟ ଦେଇ ନ ଥିଲେ। ମେ' ମାସ ପହିଲାଦିନ ତାଙ୍କର ଅନ୍ୟ ଦୁଇଜଣ ସାଙ୍ଗ କଟକ ସହରର ଭ୍ରମରବର ସାହୁ, ଅମର ଦେଙ୍କ ସହିତ ମିଶି ସେ କଟକରୁ ମାଜିଷ୍ଟ୍ରେଟ୍‌ଙ୍କଠାରୁ ସାର୍ଟିଫିକେଟ୍ ପ୍ରଭୃତି ଘେନି ପ୍ରାୟ ୩୦୦୦ କିଲୋମିଟର ଦୂରରେ ଅବସ୍ଥିତ ପେଶାୱାର ଅଭିମୁଖେ ସାଇକେଲ୍ ଯାତ୍ରା ଆରମ୍ଭ କଲେ। ମନରେ କୌଣସି ଭୟ ନଥାଏ। ଥାଏ ଅଦମ୍ୟ ଉତ୍ସାହ ଓ ଆନନ୍ଦ। ଦୁର୍ଜୟକୁ ଜୟ କରିବାର ଦୁର୍ବାର କାମନା।

କଟକରୁ ସେମାନେ ଚାରୋଟି ନଦୀ ମହାନଦୀ, ବିରୂପା, ବ୍ରାହ୍ମଣୀ ଓ ଖରସ୍ରୋତା ପାରହୋଇ ପ୍ରାୟ ସନ୍ଧ୍ୟା ୫ଟା ବେଳକୁ ଡୋଲିପୁରର ଡିଷ୍ଟ୍ରିକ୍ଟ ବୋର୍ଡ ଡାକବଙ୍ଗଳାରେ ପହଞ୍ଚିଲେ। ସେଠାରେ ରାତ୍ରିଯାପନ କରି ପରଦିନ ଆନନ୍ଦପୁର ଏସ୍.ଡି.ଓ.ଙ୍କ ଘରେ ପହଞ୍ଚି ତାଙ୍କର ଆତିଥ୍ୟ ଗ୍ରହଣ କଲେ। ସେତେବେଳେ ଓଡ଼ିଶାରେ ଏସ୍.ଡି.ଓ.ମାନେ ମୁଖ୍ୟତଃ ଅଣଓଡ଼ିଆ ଥିଲେ। କିନ୍ତୁ ଆନନ୍ଦପୁର ଏସ୍.ଡି.ଓ. ଓଡ଼ିଆ ଥିବାରୁ ତାଙ୍କୁ ବହୁତ ଭଲ ଲାଗିଲା। ବିଜୁବାବୁ 'ବୁଲାନିଶା'ରେ ଲେଖିଛନ୍ତି, "ଜଳଯୋଗ କରିବା

Digitized by srujanika@gmail.com

ପାଇଁ ଏସ୍.ଡି.ଓ.ଙ୍କ ଘରେ ପହଞ୍ଚିଲୁ। ଓଡ଼ିଆ ଭଦ୍ରଲୋକ ଆମକୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ ଓ ସଙ୍ଗେ ସଙ୍ଗେ ଆମର ଜଳଖିଆ ବନ୍ଦୋବସ୍ତ କରିବାକୁ କହିଲେ।"

ବିଜୁବାବୁଙ୍କର ସେହି ଯାତ୍ରାପଥରେ ଚମ୍ପୁଆରେ ପହଞ୍ଚି ଦେଖିଲେ ସେଠାରେ 'ଇଷ୍ଟର୍ଣ୍ଣ ଷ୍ଟେଟ୍ସ୍ ଫରେଷ୍ଟ ସ୍କୁଲ' ନାମରେ ଏକ ଅନୁଷ୍ଠାନ ଅଛି। ସେହି ଅନୁଷ୍ଠାନରେ ଜଙ୍ଗଲ ସମ୍ବନ୍ଧୀୟ ବିଭିନ୍ନ ଶିକ୍ଷା ଦିଆଯାଉଥିଲା। ସେହି ସ୍କୁଲ ସମ୍ବନ୍ଧରେ ବର୍ଣ୍ଣନା କରିବାକୁ ଯାଇ ବିଜୁବାବୁ ଲେଖିଛନ୍ତି, "ଏହି ସ୍କୁଲଟି ବେଶ୍ ଉନ୍ନତ ଧରଣର। ଏହାର ଛାତ୍ର ସମସ୍ତେ ଓଡ଼ିଆ।"

ଜଙ୍ଗଲ, ପାହାଡ଼, ଉଠାଣିଗଡ଼ାଣି ଅତିକ୍ରମ କରି ସେମାନେ ମେ' ଚାରି ତାରିଖ ଦିନ ପହଞ୍ଚିଲେ ଚକ୍ରଧରପୁରଠାରେ। ସେଠି ସେମାନେ ଜାଣିଲେ ମହାତ୍ମା ଗାନ୍ଧି ସେଠାକୁ ଆସୁଛନ୍ତି, ଲୋକମାନଙ୍କୁ ସଭାରେ ଭାଷଣ ଦେବେ। ଗାନ୍ଧିଙ୍କଠାରୁ ନୂଆକିଛି ଶୁଣିବେ, ତାଙ୍କୁ ଦେଖିବେ ଏହା ଭାବି ତିନିଜଣଯାକ ସଭାସ୍ଥଳରେ ବସିରହିଲେ। ମହାତ୍ମା ଗାନ୍ଧି ଚକ୍ରଧରପୁରରେ ହରିଜନମାନଙ୍କ ଦୁର୍ଦ୍ଦଶା ମୋଚନ ପାଇଁ ବକ୍ତୃତା ପ୍ରଦାନ କଲେ। ଗାନ୍ଧିଙ୍କ ଭାଷଣ ଛୁଆଁଅଛୁଆଁ ଭେଦଭାବ ଏ ଦେଶ ପାଇଁ ଅଭିଶାପ, ଏହା ବିଜୁବାବୁଙ୍କ ମନରେ ଗଭୀର ରେଖାପାତ କଲା। ଏହି ଭେଦଭାବକୁ ଦୂର କରିବାକୁ ବିଜୁବାବୁ ଆଗାମୀ ଦିନରେ ଚେଷ୍ଟା କରିବେ ବୋଲି ମନେମନେ ସ୍ଥିର କଲେ। ବିଜୁ ପଟ୍ଟନାୟକ ସବୁବେଳେ ଅସାଧ୍ୟକୁ କିପରି ସାଧ୍ୟ କରିହେବ ସେଥିପାଇଁ ଆଗଭର ହେଉଥିଲେ।

ଚକ୍ରଧରପୁରରୁ ୧୨ ମାଇଲ ଗଲାପରେ ଗୋଟିଏ ମୋଟର ସାଇକେଲରେ ଜଣେ ଓଡ଼ିଆ ଭଦ୍ରଲୋକ ଆସି ସେମାନଙ୍କୁ ଅଟକାଇଲେ। ସେ ସେମାନଙ୍କୁ କିଛି ଖାଇବା ଜିନିଷ ସାଙ୍ଗରେ ଦେଲେ ଓ ନାମଧାମ ପଚାରିଲେ। ସେ ହେଉଛନ୍ତି ଜଣେ ଫରେଷ୍ଟ ଅଫିସର। ଏହିଠାରୁ ସେମାନଙ୍କର ଓଡ଼ିଆ କଥାବାର୍ତ୍ତା ଶୁଣିବା ଶେଷ ହୋଇଗଲା। ତାଙ୍କର ଯାତ୍ରା ବାଟରେ ରାଞ୍ଚିର ୪୦ ମାଇଲ ପୂର୍ବରୁ ବନଗାଓଁ ନାମକ ସ୍ଥାନରେ ଥିବା ଏକ ଡାକବଙ୍ଗଳାରେ ଗୋଟିଏ ରାତି ରହିଲେ। ସୌନ୍ଦର୍ଯ୍ୟପ୍ରିୟ ବିଜୁବାବୁ ସେହି ବଙ୍ଗଳା ଚାରିପାଖରେ ଥିବା ପ୍ରାକୃତିକ ଦୃଶ୍ୟକୁ ଖୁବ୍ ଉପଭୋଗ କରିଥିଲେ। ବନଗାଓଁଠାରୁ ଯାତ୍ରାକରି ରାଞ୍ଚିରେ ପହଞ୍ଚି ଦୁଇବନ୍ଧୁଙ୍କ ସହ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କର ଭାଇ ଜ୍ୟୋତିରିନ୍ଦ୍ର ଠାକୁର ନିର୍ମାଣ କରିଥିବା ରମଣୀୟ ପ୍ରାସାଦଟି ଦେଖିଥିଲେ। ରାଞ୍ଚିର ପାଗଳ ଡାକ୍ତରଖାନା ମଧ୍ୟ ବୁଲି ଦେଖିଥିଲେ।

Digitized by srujanika@gmail.com

ତାଙ୍କର ଯାତ୍ରାପଥରେ ଆହ୍ଲାବାଦରେ ପହଞ୍ଚି ଲକ୍ଷ୍ୟ କଲେ ଯେ, ଆମ ରାଜ୍ୟ ଓଡ଼ିଶା ତୁଳନାରେ ସେ ଅଞ୍ଚଳର ଲୋକ ଯେପରି ସୁସ୍ଥସବଳ; ଗାଈ, ବଳଦ ମଧ୍ୟ ସେହିପରି ହୃଷ୍ଟପୁଷ୍ଟ ଓ ବୃହଦାକାର। ଓଡ଼ିଶାର ଗାଈ, ବଳଦ ରୁଗ୍ଣ। ଆମେ ଗାଈଗୁଡ଼ିକୁ ଗୋମାତା ରୂପେ ପୂଜା କରୁ - କଂସେଇ ହାଣିବାକୁ ନେଲେ ବିରୋଧ କରୁ ଅଥଚ ସେମାନଙ୍କର ଯତ୍ନ ନେଉନାହୁଁ। ଆମ ଗୋରୁଗାଈଗୁଡ଼ିକ କଙ୍କାଳସାର। ଆମେ ସବୁ ଗୋରୁଗାଈ ପ୍ରତି ଅବହେଳା କରି ନିଜର ସ୍ୱାର୍ଥ ପ୍ରତି ଅଧିକ ଧ୍ୟାନ ଦେଉଥିବାରୁ ଗୋରୁଗାଈଗୁଡ଼ିକ ରୁଗ୍ଣ ହୋଇଥାନ୍ତି। କିନ୍ତୁ ସେ ଅଞ୍ଚଳରେ ଲୋକେ ଗୋରୁଗାଈଙ୍କ ପ୍ରତି ଉଚିତ ଯତ୍ନ ନେଉଥିବାରୁ ସେଠାକାର ଗୋରୁଗାଈ ସୁସ୍ଥ ଓ ସବଳ।

ଲକ୍ଷ୍ନୌରେ ପହଞ୍ଚି ବିଭିନ୍ନ ସ୍ଥାନ ପରିଦର୍ଶନ କରିବାବେଳେ ସେ ନବାବ ଆସଫଉଦ୍ଦୌଲାଙ୍କ ପ୍ରାସାଦ ଦେଖିବାକୁ ଗଲେ। ଗୋମତୀ ନଦୀକୂଳରେ ଅବସ୍ଥିତ ଅତି ବିରାଟ ପ୍ରାସାଦ। ସେହି ପ୍ରାସାଦକୁ ଦେଖିଲା ପରେ ଯୁବକ ବିଜୁ ଅନୁଭବ କଲେ ଯେ, ସେଦିନର ନବାବଙ୍କର ନବାବପଣିଆ ପ୍ରାସାଦର ପ୍ରତି ଇଞ୍ଚରେ ଅକ୍ଷୁଣ୍ଣ ରହିଛି। ଆସଫଉଦ୍ଦୌଲାଙ୍କର ଛ'ଶହ ବେଗମ ଥିବା କଥା ଶୁଣି ସେ ଆଶ୍ଚର୍ଯ୍ୟ ହେଲେ। ସେହି ଛ'ଶହ ବେଗମଙ୍କ ଗହଣରେ ନବାବ ଆସି ୧୫୦ ଫୁଟ ଦୈର୍ଘ୍ୟ ଓ ୩୦ ଫୁଟ ପ୍ରସ୍ଥରେ ନିର୍ମିତ ଏକ ମନୋରମ ସ୍ନାନକୁଣ୍ଡରେ ସୁବାସିତ ଗୋଲାପ ଜଳରେ ସ୍ନାନ କରିବା କଥା ଶୁଣି ମନେ ମନେ ଭାବିଲେ ନବାବଟା କେଡ଼େ ସୌଖୀନ ଥିଲା !

ସେହି ଲକ୍ଷ୍ନୌରେ ଆସଫଉଦ୍ଦୌଲାଙ୍କ ରାଜତ୍ୱ କାଳରେ ନିର୍ମିତ 'ଇମାମବାଡ଼ି'ର ନିର୍ମାଣ ରହସ୍ୟ କଥା ସେ ପଚାରି ବୁଝିଥିଲେ। ଆସଫଉଦ୍ଦୌଲାଙ୍କ ଶାସନ କାଳରେ ଏକ ବଡ଼ ଧରଣର ଦୁର୍ଭିକ୍ଷ ଦେଶରେ ପଡ଼ିଥିଲା। ଲୋକେ ଖାଇବାକୁ ନ ପାଇବାରୁ ନବାବଙ୍କ ଦ୍ୱାରସ୍ଥ ହେଲେ। କି ଗରିବ କି ବଡ଼ଲୋକ ସମସ୍ତେ ହାଜର ହେଲେ। ସେହି ପ୍ରଜାମାନଙ୍କୁ ଲଗାଇ ସେ ଇମାମବାଡ଼ି ନିର୍ମାଣ କରିଥିଲେ ଆଉ ତା' ବଦଳରେ ସେମାନଙ୍କୁ ଅନ୍ନଦାନ କରିଥିଲେ। 'ଇମାମବାଡ଼ି'ର ନିର୍ମାଣ କୌଶଳ ବର୍ଣ୍ଣନା କରିବା ସହିତ ନିର୍ମାଣ ରହସ୍ୟ ସେ ତାଙ୍କ ଭ୍ରମଣ କାହାଣୀରେ ଲିପିବଦ୍ଧ କରିଛନ୍ତି। 'ଇମାମବାଡ଼ି'ର ପ୍ରବେଶ ଦ୍ୱାରରେ ଲେଖା ହୋଇଥିବା କଥାକୁ ସେ ମଧ୍ୟ ତାଙ୍କ ଲେଖାରେ ସ୍ଥାନ ଦେଇଛନ୍ତି। ପ୍ରବେଶ ଦ୍ୱାରରେ ଲେଖାଅଛି- "ଯିସକୋ ନା ଦେୟେ ମୌଲା, ଇସ୍‌କୋ ଦେୟେ ଆସଫଉଦ୍ଦୌଲା"। ଏହାଛଡ଼ା ସିପାହୀ ବିଦ୍ରୋହ ସମୟରେ ସାହେବମାନେ ପ୍ରାଣ ବିକଳରେ ଯେଉଁ ସ୍ଥାନରେ ଆଶ୍ରୟ ନେଇଥିଲେ ସେହି ସ୍ଥାନ ମଧ୍ୟ ସେ ଦେଖିବାକୁ ଯାଇଥିଲେ।

Digitized by srujanika@gmail.com

ତାଙ୍କ ଯାତ୍ରା ସମୟରେ ସେ ଆଗ୍ରାର ତାଜମହଲ ଦେଖିବା ସହିତ ଆକବରଙ୍କ ଦୁର୍ଗ ଫତେପୁରସିକ୍ରି ମଧ୍ୟ ଦେଖିଥିଲେ। ସେ ତାଜମହଲ ବିଷୟରେ ବହିରେ ପଢ଼ିଥିଲେ, କିନ୍ତୁ ଆଖିରେ ଦେଖିବା ପରେ ତାଜମହଲର ସୌନ୍ଦର୍ଯ୍ୟ ତାଙ୍କୁ ଆଶ୍ଚର୍ଯ୍ୟ କରିଥିଲା। ତାଙ୍କ ମନୋଭାବକୁ ପ୍ରକାଶ କରିବାକୁ ଯାଇ ସେ ଲେଖିଛନ୍ତି, "ଅବଶେଷରେ ସେହି ପୃଥିବୀ ବିଖ୍ୟାତ ତାଜମହଲ ଦେଖିବାକୁ ଗଲୁ। ଭିତରେ ଯାଇ ଯାହା ଦେଖିଲୁ, ସେଥିରେ ବିସ୍ମୟରେ ଅବାକ୍ ଓ ସ୍ତବ୍ଧ ହୋଇ ରହିଲୁ। ଛବିରେ ଦେଖି ଭାବିଥିଲୁ ଯେ, ଗୋଟିଏ କ୍ଷୁଦ୍ର ଅଥଚ ସୁନ୍ଦର ଘର ହୋଇଥିବ। କିନ୍ତୁ ଏହା ଏତେ ବିରାଟ, ଏତେ ସୁନ୍ଦର, ଏତେ ଗମ୍ଭୀର ତାହା ମୁଁ କଳ୍ପନା ସୁଦ୍ଧା କରିନଥିଲି। ମମତାଜଙ୍କ ସୌଭାଗ୍ୟକୁ ଅତ୍ୟନ୍ତ ହିଂସା ହେଲା। ତାଙ୍କରି କବର ଦେଖିବାକୁ ଆମେ ଏତେ ଦୂରରୁ ଦଉଡୁଛୁ।"

ଯାତ୍ରାପଥରେ ସେମାନେ ଏକ ଘଞ୍ଚ ଜଙ୍ଗଲରେ ଗୋଟିଏ ବାଘ ହାବୁଡ଼ରେ ପଡ଼ିଥିଲେ। ହେଲେ ସେମାନେ ବାଘ ଦେଖି ଡରିନଯାଇ ଠିଆ ହୋଇ ରହିଲେ। ତାଙ୍କର ଅନ୍ୟ ଦୁଇ ସାଙ୍ଗ ସେତେବେଳକୁ ଭୟରେ ଗୋଟାପଣ ଥରୁଥାନ୍ତି। ବିଜୁବାବୁ ସେମାନଙ୍କୁ ଦମ୍ଭଧରି ଛିଡ଼ାହେବାକୁ କହିଲେ। ତାଙ୍କ ଭାଗ୍ୟକୁ ବାଘଟି ସେଠାରୁ ଚାଲିଗଲା। ଭୟଭୀତ ନ ହୋଇ ତା'ପରେ ସେମାନେ ଯାତ୍ରା ଆରମ୍ଭ କଲେ। ବିଜୁବାବୁ ତାଙ୍କର ସାଙ୍ଗମାନଙ୍କୁ କହିଲେ, "ଥରେ ମରଣ ସହ ଲଢ଼େଇ କର, ଦେଖିବ ମରଣ ଆପେ ଆପେ ଦୂରକୁ ପଳାଇବ।"

ତାଙ୍କର ଏହି ସାଇକେଲ୍ ଯାତ୍ରା ସମୟରେ ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ ଶିକ୍ଷାନୁଷ୍ଠାନ ଭିତରେ ବୁଲିବାକୁ ଯାଇଛନ୍ତି। ପ୍ରଥମେ ସେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ଦେଖି ଚମତ୍କୃତ ହୋଇଥିଲେ ଏବଂ ଓଡ଼ିଶାରେ ଏଭଳି ଏକ ବିଶ୍ୱବିଦ୍ୟାଳୟ ଗଠନ କରିବାର ସ୍ୱପ୍ନ ଦେଖିଥିଲେ। ସେହି ବିଶ୍ୱବିଦ୍ୟାଳୟ ଚାରିପଟେ ବୁଲି ଆସିବାକୁ ତାଙ୍କୁ ତିନିଘଣ୍ଟା ସମୟ ଲାଗିଥିଲା। ତାଙ୍କ ଯାତ୍ରାପଥରେ ସେ ଆହ୍ଲାବାଦ ବିଶ୍ୱବିଦ୍ୟାଳୟ ଦେଖିବାର ସୁଯୋଗ ପାଇଥିଲେ। ତାଙ୍କ ଦୃଷ୍ଟିରେ କାନପୁରରେ ପହଞ୍ଚି ସେଠାକାର କୃଷି ମହାବିଦ୍ୟାଳୟକୁ ଦେଖି ସେହିଭଳି ଏକ ମହାବିଦ୍ୟାଳୟ ଓଡ଼ିଶାରେ ପ୍ରତିଷ୍ଠା କରିବେ ବୋଲି ମନେମନେ ସ୍ଥିର କରିଥିଲେ ଏବଂ ତାଙ୍କର ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଓଡ଼ିଶାରେ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ। ତାଙ୍କ ଯିବା ବାଟରେ ସେ ଆଲିଗଡ଼ ବିଶ୍ୱବିଦ୍ୟାଳୟ ଦେଖିବାକୁ ଯାଇଥିଲେ। ସେହି ବିଶ୍ୱବିଦ୍ୟାଳୟର ବିଜ୍ଞାନ

Digitized by srujanika@gmail.com

ବିଭାଗଗୁଡ଼ିକୁ ଦେଖି ସେ ଅତ୍ୟନ୍ତ ମୁଗ୍ଧ ହୋଇଯାଇଥିଲେ ଏବଂ ବିଶ୍ୱବିଦ୍ୟାଳୟର ବିଜ୍ଞାନାଗାର ଭାରତବର୍ଷର ସବୁଠାରୁ ବଡ଼ ବିଜ୍ଞାନାଗାର ଥିଲା । ସେହି ବିଜ୍ଞାନାଗାର ଦେଖି ବିଜୁବାବୁ ପରବର୍ତ୍ତୀ ଜୀବନରେ ବିଜ୍ଞାନ ଶିକ୍ଷା ଓ ଗବେଷଣା ପ୍ରତି ବିଶେଷ ଆକୃଷ୍ଟ ହୋଇଥିଲେ । ସେ ଆଲିଗଡ଼ ବିଶ୍ୱବିଦ୍ୟାଳୟର ତତ୍‌କାଳୀନ କୁଳପତି ସାର୍ ସୟଦ୍ ରୋଜ ମାସୁଦ୍‌ଙ୍କୁ ଦେଖାକରି ଶିକ୍ଷାଜନିତ ବିଭିନ୍ନ ବିଷୟରେ ପଚାରି ବୁଝିଥିଲେ । ସେ ଲାହୋରରେ ପହଞ୍ଚି ଦେଖିବାକୁ ପାଇଥିଲେ ଯେ ସେଠାରେ ନାରୀ ଶିକ୍ଷା ପ୍ରତି ବିଶେଷ ଧ୍ୟାନ ଦିଆଯାଉଛି । ତାହା ତାଙ୍କୁ ଆନନ୍ଦିତ କରିଥିଲା । କିନ୍ତୁ ଜାମ୍ମୁରେ ପହଞ୍ଚିବା ପରେ ଦେଖିଲେ ଯେ ନାରୀ ଶିକ୍ଷା ପ୍ରତି ସେଠାରେ ଆଗ୍ରହ ଖୁବ୍ କମ୍ । ଜାମ୍ମୁ କଲେଜରେ ୫୫୦ ଛାତ୍ରଛାତ୍ରୀମାନଙ୍କ ମଧ୍ୟରୁ ଛାତ୍ରୀ ଥିଲେ ମାତ୍ର ୭ଜଣ । ଦେଶର ସର୍ବାଙ୍ଗୀନ ଉନ୍ନତି ପାଇଁ ନାରୀ ଶିକ୍ଷା ଯେ ଅତ୍ୟନ୍ତ ଆବଶ୍ୟକ ତାହା ଛାତ୍ରାବସ୍ଥାରୁ ସେ ଅନୁଭବ କରି ତାଙ୍କ ଭ୍ରମଣକାହାଣୀରେ ଉଲ୍ଲେଖ କରିଛନ୍ତି । ଦେଶର ଶିକ୍ଷା ବିଶେଷକରି ନାରୀ ଶିକ୍ଷାର ପ୍ରସାର ପାଇଁ ସେ ଯେଉଁ ସ୍ୱପ୍ନ ଦେଖିଥିଲେ ତାକୁ ସେ ପରବର୍ତ୍ତୀ କାଳରେ କାର୍ଯ୍ୟକାରୀ କରିବାକୁ ଚେଷ୍ଟାକରି ବହୁଭାବରେ ସଫଳ ହୋଇଥିଲେ । ବିଜୁବାବୁ ତାଙ୍କ ରାଜନୈତିକ ଜୀବନକାଳରେ ରାଜ୍ୟରେ ନାରୀ ଶିକ୍ଷା ପ୍ରସାର କରିବା, ନାରୀମାନଙ୍କ ପାଇଁ ଚାକିରିରେ ସ୍ଥାନ ସଂରକ୍ଷଣ କରିବା, ପଞ୍ଚାୟତ ଓ ପୌର ନିର୍ବାଚନରେ ନାରୀମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ କରିବା ଓ ନାରୀମାନଙ୍କୁ ବିଭିନ୍ନ ଉଚ୍ଚ ପଦବୀରେ ରଖିବା ପାଇଁ ପଦକ୍ଷେପମାନ ଗ୍ରହଣ କରିଥିଲେ ।

ବିଜୁବାବୁ ରାଓଲପିଣ୍ଡିରେ ପହଞ୍ଚିବା ପରେ ତାଙ୍କ ଲକ୍ଷ୍ୟସ୍ଥଳ ପେଶାୱାରକୁ ସାଇକେଲ୍‌ରୁ ଓହ୍ଲାଇ ଚାଲିଚାଲି ଉଠାଣିଆ ରାସ୍ତାରେ ଗଲାବେଳେ ରାସ୍ତାର ଦୁଇପାର୍ଶ୍ୱରେ ଅଙ୍ଗୁର ବଗିଚା ଉପରେ ତାଙ୍କ ଦୃଷ୍ଟି ପଡ଼ିଲା । ତାଙ୍କର ଅଙ୍ଗୁର ଖାଇବାକୁ ଇଚ୍ଛା ହେଲା ଏବଂ ପେଣ୍ଟାରୁ ଅଙ୍ଗୁର ଛିଣ୍ଡାଇ ଆଣି ଖାଇଲେ, ଯାହା ଅତ୍ୟନ୍ତ ଖଟ୍ଟା ଥିଲା । ଅଙ୍ଗୁର ଖିଆ ଛାଡ଼ି ସେମାନେ ଆଗକୁ ଆଗକୁ ବଢ଼ିଲେ ।

ବହୁ ଦୁର୍ଗମ ପଥ ଅତିକ୍ରମ କରିବା ପରେ ତିନି ବନ୍ଧୁ ପେଶାୱାରରେ ପହଞ୍ଚିଥିଲେ । ସେଠି ଦୁଇ ତିନି ଦିନ ରହିବା ପରେ ବନ୍ଧୁ ଅମର ଦେଙ୍କର 'ରୟାଲ ଏୟାରଫୋର୍ସ'ରେ ଚାକିରି ହୋଇଯାଇଥିଲା । ସେ ଦୁଇବନ୍ଧୁଙ୍କଠାରୁ ବିଦାୟ ନେଇ ଚାକିରି ସ୍ଥଳରେ ଯୋଗଦେବାକୁ ଚାଲି ଯାଇଥିଲେ । ଫେରିବାବେଳେ ବିଜୁବାବୁ ଓ ଭ୍ରମରବର ସାହୁ ଏକାଠି କଟକ ଫେରିଥିଲେ ।

– ୦ –

Digitized by srujanika@gmail.com

# ବିମାନ ଚାଳକରୁ ଭାରତ ସୁରକ୍ଷାର ସାରଥି

୧୯୩୪ ମସିହାରେ ବି.ଏସ୍‌ସି ପାଠ ପଢୁଥିବା ସମୟରେ ବିମାନ ଚାଳନା ଶିକ୍ଷା କରିବା ପାଇଁ ବିଜୁ ପଟ୍ଟନାୟକ ବାପାଙ୍କୁ ଅନୁରୋଧ କଲେ। ବାପାଙ୍କର ଇଚ୍ଛା ଥିଲା ତାଙ୍କର ସାହସୀ ଓ ଉଚ୍ଚାଭିଳାଷୀ ପୁଅ ବିମାନ ଚାଳକ ହେଉ। କିନ୍ତୁ ବିମାନ ଚାଳନା ଶିକ୍ଷା କରିବାକୁ ଯେଉଁ ଅର୍ଥର ଆବଶ୍ୟକ ତାହା ତାଙ୍କ ପାଖରେ ନଥିଲା। ଯାହା ପେନସନ୍ ପାଉଥିଲେ ସେଥିରେ ଘର ଚଳାଇ ବିଜୁଙ୍କର ବିମାନ ଚାଳନା ଶିକ୍ଷା ପାଇଁ ଆବଶ୍ୟକୀୟ ଅର୍ଥ ଯୋଗାଇବା ତାଙ୍କ ପକ୍ଷରେ ସମ୍ଭବ ନଥିଲା। କିନ୍ତୁ ପାରଳାଖେମୁଣ୍ଡି ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଦେବ ସେତେବେଳେ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କୁ ତାଙ୍କ ରାଜ୍ୟର ଦେଓ୍ୱାନ ରୂପେ ନିଯୁକ୍ତ କଲେ; ଲକ୍ଷ୍ମୀନାରାଣୟ ପଟ୍ଟନାୟକ ଯେଉଁ ଦରମା ପାଇଲେ ସେଥିରେ ବିଜୁ ପଟ୍ଟନାୟକଙ୍କୁ ବିମାନ ଚାଳନା ଶିକ୍ଷା ପାଇଁ ଆବଶ୍ୟକ ହେଉଥିବା ଅର୍ଥ ଯୋଗାଇଦେବାକୁ ସମର୍ଥ ହେଲେ। ଅଧାରୁ ବି.ଏସ୍‌ସି ପାଠ ଛାଡ଼ି ଯୁବକ ବିଜୁ ଏରୋନଟିକାଲ ଟ୍ରେନିଂ ଇନଷ୍ଟିଚ୍ୟୁଟ୍ ଅଫ୍ ଇଣ୍ଡିଆରେ ତିନିବର୍ଷିଆ ପାଇଲଟ୍ ଟ୍ରେନିଂ ପାଇଁ ଯୋଗଦାନ କରିଥିଲେ। ତାଲିମ ପାଉଥିବା ସମୟରେ ବିମାନ ଚାଳନା କ୍ଷେତ୍ରରେ ତାଙ୍କର ଦୁଃସାହସିକତାକୁ ଦେଖି ତାଙ୍କର ସହପାଠୀ ଇଂରେଜ ଯୁବକମାନେ ଆଶ୍ଚର୍ଯ୍ୟ ହୋଇଯାଉଥିଲେ। ସେମାନେ ବିଜୁବାବୁଙ୍କୁ 'ଦି ଗ୍ରେଟ୍ ପଟ୍ଟନାୟକ' ବୋଲି ଡ଼ାକୁଥିଲେ। ବିଜୁ ପଟ୍ଟନାୟକ ଆକାଶରେ ବିଭିନ୍ନ ଢ଼ଙ୍ଗରେ ବିମାନ ଚଳାଇଲେ। ଥରେ ବିମାନ ଚାଳନା ଶିକ୍ଷା ସମୟରେ ଗୋଟିଏ ବିମାନ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଯାଇଥିଲେ ସୁଦ୍ଧା ସେ ତାଙ୍କ ବୁଦ୍ଧି ଓ ସାହସ ବଳରେ ଆକାଶଛତା ମାଧ୍ୟମରେ ଅତି ଆଶ୍ଚର୍ଯ୍ୟଜନକ ଭାବେ ବଞ୍ଚିଯାଇଥିଲେ। ଏ ଘଟଣା ସମସ୍ତଙ୍କୁ ଆଚମ୍ଭିତ କରିଥିଲା। ତିନି ବର୍ଷ ପାଇଲଟ ଟ୍ରେନିଂ ପାଠ୍ୟକ୍ରମରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେବାପରେ ସେ ୧୯୩୬ ମସିହାରେ ଇଣ୍ଡିଆନ ନ୍ୟାସନାଲ ଏୟାର ଓ୍ୱେଜ୍ କମ୍ପାନୀରେ ପାଇଲଟ ରୂପେ ଚାକିରି ଜୀବନ ଆରମ୍ଭ କରିଥିଲେ। ଅଳ୍ପଦିନ ମଧ୍ୟରେ ଆକର୍ଷଣୀୟ ଦରମା ସହିତ ସେ ଦିଲ୍ଲୀର ବେସାମରିକ ଏୟାର ଲାଇନ୍ସର ମୁଖ୍ୟ ପାଇଲଟ ଭାବେ କାର୍ଯ୍ୟ କଲେ।

Digitized by srujanika@gmail.com

୧୯୪୦ ମସିହାରେ ବିଜୁ ପଟ୍ଟନାୟକ ଭାରତର ତତ୍କାଳୀନ ବଡ଼ଲାଟ ଲର୍ଡ୍ ୱାଭେଲଙ୍କୁ ବହୁଥର ତାଙ୍କ ବିମାନରେ ବିଭିନ୍ନ ସ୍ଥାନକୁ ନେଇ ଯାତ୍ରା କରିଥିଲେ ଏବଂ ବଡ଼ଲାଟ ତାଙ୍କ ବିମାନ ଚାଳନାରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଥିଲେ। ସେ ସମୟରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଘମାଘୋଟ ଲଢ଼ାଇ ଚାଲିଥାଏ। ବିଜୁ ପଟ୍ଟନାୟକ ସେତେବେଳେ ଜାପାନୀମାନଙ୍କ ଘେରରେ ରହିଯାଇଥିବା କେତେକ ବ୍ରିଟିଶ ପରିବାରକୁ ମୁକୁଳାଇ ନିରାପଦରେ ଭାରତକୁ ନେଇଆସିଥିଲେ। ସେଥିପାଇଁ ବ୍ରିଟିଶ ସରକାର ତାଙ୍କୁ ପୁରସ୍କୃତ କରିଥିଲେ। ଏହି ସମୟରେ ବିଜୁବାବୁ ମଧ୍ୟ ମସ୍କୋ, ଚୁନ୍‌କିଂ ଓ ଅନ୍ୟାନ୍ୟ ପ୍ରମୁଖ ଯୁଦ୍ଧକ୍ଷେତ୍ରଗୁଡ଼ିକୁ ଏକାଧିକବାର ଦୁଃସାହସିକ ଅଭିଯାନରେ ଯାତ୍ରା କରିଥିଲେ ଓ ରୁଷୀୟମାନଙ୍କଦ୍ୱାରା ସମ୍ମାନିତ ହୋଇଥିଲେ।

୧୯୪୨ ମସିହା ଅଗଷ୍ଟ ୯ରେ ମହାତ୍ମା ଗାନ୍ଧି ବମ୍ବେଠାରେ ଏକ ବିରାଟ ସଭାରେ ଇଂରେଜମାନଙ୍କୁ 'ଭାରତଛାଡ଼'ର ଚରମବାଣୀ ଶୁଣାଇଲେ ଏବଂ ଭାରତୀୟମାନଙ୍କୁ ଆହ୍ୱାନ ଦେଲେ 'କର ବା ମର'। ବାଲ୍ୟକାଳରୁ ଦେଶପ୍ରେମରେ ଉଦ୍‌ବୁଦ୍ଧ ବିଜୁ ପଟ୍ଟନାୟକ ସେତେବେଳେ ଡ଼ାଲମିଆ ଜୈନ ଏୟାରୱେଜ୍‌ର ମୁଖ୍ୟ ପାଇଲଟ ଥିଲେ। ସେ ଚିନ୍ତା କରୁଥିଲେ କିଭଳି ଭାବରେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସାହାଯ୍ୟ କରିପାରିବେ। ସୁଯୋଗ ବି ଜୁଟିଲା, ସେ ସ୍ୱାଧୀନତା ସଂଗ୍ରାମର ଆଗଧାଡ଼ିର ନେତା ଜୟପ୍ରକାଶ ନାରାୟଣ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ରାମମନୋହର ଲୋହିଆ, ଅରୁଣା ଆସଫ ଅଲ୍ଲୀ ପ୍ରମୁଖଙ୍କୁ ନେଇ ଗଠିତ ଅଣ୍ଡରଗ୍ରାଉଣ୍ଡ ସୋସଲିଷ୍ଟ ନେତାମାନଙ୍କୁ ଆକାଶମାର୍ଗରେ ମାଡ୍ରାସରୁ ବମ୍ବେ, କଲିକତାରୁ ଦିଲ୍ଲୀ ପ୍ରଭୃତି ସ୍ଥାନକୁ ନିଜେ ଚଳାଉଥିବା ବିମାନରେ ନେବା ଆଣିବା କରୁଥିଲେ। ୧୯୪୩ ମସିହା ଜାନୁଆରୀ ମାସ ୧୩ ତାରିଖ ଦିନ ବିଜୁ ପଟ୍ଟନାୟକଙ୍କୁ ଦିଲ୍ଲୀରୁ ବ୍ରିଟିଶ ପୋଲିସ୍ ଗିରଫ କଲା। ତାଙ୍କ ହାତରେ ହାତକଡ଼ି ପଡ଼ିଲା ପରେ ସେ ତାଙ୍କ ସ୍ତ୍ରୀଙ୍କ ପାଖକୁ ଯାଇ ଘରେ ଲୁଚାଇ ରଖିଥିବା ପିସ୍ତଲଗୁଡ଼ିକୁ ବାହାରେ ଫୋପାଡ଼ି ଦେବାକୁ ନିର୍ଦ୍ଦେଶ ଦେଇଥିଲେ। ଗୋଡ଼ରେ ବେଡ଼ି ହାତରେ କଡ଼ି ପକାଇ ପୁଲିସ ତାଙ୍କୁ ନିର୍ଘାତ ପ୍ରହାର କରି ରାସ୍ତାରେ ଚଲାଇ ଚଲାଇ ନେଇଥିଲେ। ସେତେବେଳେ ନିର୍ଯାତନାରେ ବିଜୁବାବୁଙ୍କ ସମଗ୍ର ଶରୀର କ୍ଷତବିକ୍ଷତ ହୋଇସାରିଥାଏ। ଏହି ବିଷୟରେ ଶ୍ରୀଯୁକ୍ତ ସନାତନ ପାଣି ତାଙ୍କ ଲିଖିତ 'ଜୀବନ୍ତ କିମ୍ବଦନ୍ତୀ' ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି ଯେ, ବିଜୁବାବୁ ଟୋପାଏ ପାଣି ମାଗିବାରୁ ବ୍ରିଟିଶ ସରକାରଙ୍କର ତୋଷାମୋଦକାରୀ ଯୁଦ୍ଧ ସଚିବ ଚନ୍ଦୁଲାଲ ତ୍ରିବେଦୀ

Digitized by srujanika@gmail.com

ଜଣେ ଜହ୍ଲାଦ ଭଳି ନିର୍ଦ୍ଦେଶ ଦେଇଥିଲେ, 'ଶାଲା ପାନି ମାଗତା ହୈ, ପାନି ନେହିଁ, ଶାଲା କୋ ପିସାପ କର କେ ପିଲାଓ'। ଧନ ପାଇଁ, ଚାକିରି ସୁରକ୍ଷା ପାଇଁ, ଗୋରା ସାହେବମାନଙ୍କର ଅନୁକମ୍ପା ପାଇବା ପାଇଁ ସରକାରୀ କର୍ମଚାରୀ ଯେ କେତେ ତଳକୁ ଖସିଯାଇପାରେ ତାହାର ଏକ ଚାକ୍ଷୁସ ପ୍ରମାଣ ଥିଲେ ଦେଶଦ୍ରୋହୀ ଚନ୍ଦୁଲାଲ ତ୍ରିବେଦୀ। ତେଣୁ ତୋଷାମୋଦର ପୁରସ୍କାର ସ୍ୱରୂପ କଳା ଲୋକ ହୋଇଥିଲେ ବି ବ୍ରିଟିଶ ସରକାର ତାଙ୍କୁ ଯୁଦ୍ଧ ସଚିବ ହିସାବରେ ନିଯୁକ୍ତି ଦେଇଥିଲେ ଏବଂ ଭାରତ ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ୧ ଏପ୍ରିଲ ୧୯୪୬ରୁ ୧୪ ଅଗଷ୍ଟ ୧୯୪୭ ଯାଏ ଦେଶଦ୍ରୋହୀ ଚନ୍ଦୁଲାଲ ତ୍ରିବେଦୀ ଓଡ଼ିଶାର ରାଜ୍ୟପାଳ ମଧ୍ୟ ହୋଇଥିଲେ।

ଗିରଫ ହେବାପରେ ବିଜୁବାବୁଙ୍କୁ ପ୍ରଥମେ ଲାଲକିଲା ଜେଲ୍‌ରେ ବନ୍ଦୀ କରି ରଖାଗଲା। ପରେ ତାଙ୍କୁ ଫିରୋଜପୁର ଜେଲ୍‌ରେ ରଖାଯାଇଥିଲା। ସେଠାରୁ ସେ କଟକ ଜେଲ୍‌ରେ ଆସି ରହିଲେ। ବିଚାରାଳୟରେ ତାଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇ ଚାକିରିରୁ ବହିଷ୍କୃତ କରିବା ସଙ୍ଗେ ସଙ୍ଗେ ଦୁଇବର୍ଷ ଜେଲ୍‌ଦଣ୍ଡ ଭୋଗିବାକୁ ପଡ଼ିଥିଲା। ୧୯୪୫ ମସିହାରେ ସେ କଟକ ଜେଲ୍‌ରୁ ଖଲାସ ହେଲେ।

୧୯୪୭ ମସିହାରେ ମହାତ୍ମା ଗାନ୍ଧିଙ୍କର ଇଚ୍ଛା ଅନୁସାରେ ଦିଲ୍ଲୀରେ ଆଫ୍ରିକା ଓ ଏସିଆ ମହାଦେଶର ବହୁ ଦେଶର ପ୍ରତିନିଧିମାନେ ଔପନିବେଶିକବାଦ ବିରୋଧରେ ଆଲୋଚନା ପାଇଁ ଏକ ସମ୍ମିଳନୀ ଆୟୋଜିତ ହୋଇଥିଲା। କିନ୍ତୁ ଏହି ସମ୍ମିଳନୀରେ ଇଣ୍ଡୋନେସିଆର ବିପ୍ଳବୀ ସରକାରଙ୍କର ପ୍ରଧାନମନ୍ତ୍ରୀ ଡକ୍ଟର ସୁଲତାନ ସାହରିୟର ଯୋଗଦେଇ ପାରିନଥିଲେ। ଡକ୍ଟର ସାହରିୟର ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କୁ ଦୁଃଖର ସହ ଜଣାଇଥିଲେ ଯେ, ଇଣ୍ଡୋନେସିଆର ସବୁ ବନ୍ଦରଗୁଡ଼ିକ ଡଚ୍ ସରକାର ଅକ୍ତିଆରରେ ଥିବାରୁ ବିପ୍ଳବୀ ସରକାର ବହୁ ଅସୁବିଧାର ସମ୍ମୁଖୀନ ହେଉଛି ଏବଂ ଦେଶ ବାହାରକୁ ଯିବାର କୌଣସି ଉପାୟ ନାହିଁ। ସେତେବେଳେ ଯୋଗିଆକର୍ତ୍ତା ଥିଲା ଇଣ୍ଡୋନେସିଆର ବିପ୍ଳବୀ ସରକାରଙ୍କ ରାଜଧାନୀ। ଯୋଗିଆକର୍ତ୍ତାରେ ପହଞ୍ଚି ସେଠାରୁ ବିପ୍ଳବୀ ରାଷ୍ଟ୍ରର ଉପରାଷ୍ଟ୍ରପତି ଡକ୍ଟର ମହମ୍ମଦ ହାଟାଙ୍କୁ ପଣ୍ଡିତ ନେହେରୁଙ୍କ ସହ ଆଲେଚନା ପାଇଁ ସୁମାତ୍ରାରୁ ଦିଲ୍ଲୀକୁ ଆଣିବା ଏକ ପ୍ରକାର ଅସମ୍ଭବ କାର୍ଯ୍ୟ ଥିଲା। ପଣ୍ଡିତ ନେହେରୁ ଡକ୍ଟର ସାହରିୟରଙ୍କୁ ଡଚ୍‌ମାନଙ୍କ କବଳରୁ ଉଦ୍ଧାର କରି ଆଣିବା ପାଇଁ ଯୁବ ପାଇଲଟ ବିଜୁ ପଟ୍ଟନାୟକଙ୍କର ସାହାଯ୍ୟ ଲୋଡ଼ିଥିଲେ। ବିଜୁ ପଟ୍ଟନାୟକ ତାଙ୍କ ଡାକୋଟା ବିମାନରେ ନିଜ ସ୍ତ୍ରୀ ଜ୍ଞାନଦେବୀଙ୍କୁ

Digitized by srujanika@gmail.com

ବସାଇ ୧୯୪୭ ମସିହା ଜୁଲାଇ ୨୨ ତାରିଖ ଦିନ ବାହାରି ପଡ଼ିଲେ ଯୋଗିଆକର୍ତ୍ତା ଅଭିମୁଖେ। ବିଜୁବାବୁ ନିଜର ପୁରୁଣା ଡାକୋଟା ଉଡ଼ାଜାହାଜକୁ ଅତି ସନ୍ତର୍ପଣରେ ଉଡ଼ାଇ ନେଇ ସିଙ୍ଗାପୁରରେ କିଛି ସମୟ ପାଇଁ ଅଟକିଥିଲେ। ବିଜୁ ପଟ୍ଟନାୟକଙ୍କ ଇଣ୍ଡୋନେସିଆ ଯାତ୍ରା ସମ୍ପର୍କରେ ଖବର ପାଇଗଲେ ଡଚ୍ ସେନା। ସେହି ସମୟରେ ସିଙ୍ଗାପୁରରେ ଥିବା ଡଚ୍ ଆମ୍ବାସଡ଼ର ସିଲଲାମିଙ୍ଗ ବିଜୁ ପଟ୍ଟନାୟକଙ୍କୁ ଧମକ ଦେଇଥିଲେ ଯେ ସେ ଯଦି ଯୋଗିଆକର୍ତ୍ତାକୁ ଡଚ୍ ସରକାରଙ୍କ ବିନା ଅନୁମତିରେ ତାଙ୍କ ଉଡ଼ାଜାହାଜ ନେବାକୁ ସାହସ କରନ୍ତି, ତେବେ ତାହାକୁ ଗୁଳି କରି ଖସାଇ ଦିଆଯିବ। ବିଜୁବାବୁ ଯୋଗିଆକର୍ତ୍ତା ଯିବାକୁ ତାଙ୍କ ଡାକୋଟା ବିମାନର ଉଡ଼ାଣ ଆରମ୍ଭ କରିବା ସମୟରେ ତାଙ୍କୁ ଡଚ୍ ବିମାନବାହିନୀର ଲଢୁଆ ବିମାନସବୁ ଘେରିଯାଇଥିଲେ। କିନ୍ତୁ ଅତ୍ୟନ୍ତ ପାରଙ୍ଗମ ପାଇଲଟ୍ ବିଜୁବାବୁ ଶତ୍ରୁପକ୍ଷକୁ ବିମାନଗୁଡ଼ିକୁ ଚକମା ଦେଇ ନିଜ ଉଡ଼ାଜାହାଜକୁ ବହୁ ଉଚ୍ଚକୁ ଉଡ଼ାଇନେଇ ସୁମାତ୍ରା ଦ୍ୱୀପରେ ପହଞ୍ଚି ଯିବାକୁ ସମର୍ଥ ହୋଇଥିଲେ। ବିପ୍ଳବୀ ସରକାରଙ୍କ ନେତାମାନଙ୍କ ସହିତ ଆଲୋଚନା କରିବା ପରେ ଉପରାଷ୍ଟ୍ରପତି ଡକ୍ଟର ମହମ୍ମଦ ହାଟ୍ଟା ଓ ସୁଲତାନ ସାହରିୟରଙ୍କୁ ସୁମାତ୍ରାରୁ ନିଜ ବିମାନରେ ଦିଲ୍ଲୀ ଆଣି ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ସର୍ଦ୍ଦାର ବଳଦେବ ସିଂଙ୍କ ସହିତ ଆଲୋଚନା କରାଇଥିଲେ ଏବଂ ପୁନର୍ବାର ସେମାନଙ୍କୁ ଫେରାଇ ନେଇ ନିର୍ବିଘ୍ନରେ ସୁମାତ୍ରାରେ ପହଞ୍ଚାଇ ଦେଇଥିଲେ। ପୁଣି ସୁମାତ୍ରାରୁ ଯୋଗିଆକର୍ତ୍ତା ଯାଇ ଡକ୍ଟର ସୁକର୍ଣ୍ଣଙ୍କୁ ଭେଟିଥିଲେ ଏବଂ ଭାରତୀୟ ନେତୃବର୍ଗଙ୍କର ଇଣ୍ଡୋନେସିଆ ପ୍ରତି ପୂର୍ଣ୍ଣ ସମର୍ଥନ ରହିଥିବା ଜଣାଇଥିଲେ।

କୃତଜ୍ଞତାର ନିଦର୍ଶନ ସ୍ୱରୂପ ଇଣ୍ଡୋନେସିଆ ସ୍ୱାଧୀନ ହେବା ପରେ ସେଠାକାର ରାଷ୍ଟ୍ରପତି ସୁକର୍ଣ୍ଣ ୧୯୫୦ ମସିହାରେ ବିଜୁ ପଟ୍ଟନାୟକଙ୍କୁ ଏକ ସ୍ୱତନ୍ତ୍ର ଉତ୍ସବରେ ଇଣ୍ଡୋନେସିଆର ସର୍ବୋଚ୍ଚ ସମ୍ମାନ 'ଭୂମିପୁତ୍ର' ସମ୍ମାନରେ ସମ୍ମାନିତ କରିଥିଲେ ଓ ତାଙ୍କୁ ପାଞ୍ଚଶହ ବର୍ଗମାଇଲ ପରିମିତ ମୂଲ୍ୟବାନ ଜଙ୍ଗଲ, ଡଚ୍ ପରିତ୍ୟକ୍ତ ଏକ ବିରାଟ ପ୍ରାସାଦ, କେତେଗୁଡ଼ିଏ ଖଣି (ଯାହାର ମୂଲ୍ୟ ଅନ୍ୟୂନ ପାଞ୍ଚଶହ କୋଟି ହେବ) ଉପହାର ସ୍ୱରୂପ ଦେଇଥିଲେ। କିନ୍ତୁ ବିଜୁବାବୁ ଅତି ବିନମ୍ରତାର ସହିତ ଏହି ଉପହାରଗୁଡ଼ିକୁ ଇଣ୍ଡୋନେସିଆ ସରକାରଙ୍କୁ ଫେରାଇଦେଇ କହିଥିଲେ– ବୀର କଳିଙ୍ଗ ରାଜ୍ୟର ରାଜା କାହାରିଠାରୁ କୌଣସି ଉପହାର ଗ୍ରହଣ କରନ୍ତି ନାହିଁ। ମୁଁ କଳିଙ୍ଗ

Digitized by srujanika@gmail.com

ମାଟିର ସନ୍ତାନ। ତେଣୁ ମୁଁ ଆପଣମାନଙ୍କର ଶ୍ରଦ୍ଧା ଗ୍ରହଣ କରୁଛି, କିନ୍ତୁ ଏ ଉପହାର ଗ୍ରହଣ କରିପାରିବି ନାହିଁ। ଏଠାରେ ସୂଚିତ କରିବା ସମୀଚୀନ ହେବ ଯେ, ୧୯୯୫ ମସିହା ଅଗଷ୍ଟ ମାସରେ ଇଣ୍ଡୋନେସିଆ ସରକାର ତାଙ୍କ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳନ ଅବସରରେ ବିଜୁ ପଟ୍ଟନାୟକଙ୍କୁ ସେ ଦେଶର ଅନ୍ୟ ଏକ ଶ୍ରେଷ୍ଠ ସମ୍ମାନ 'ବିନତଙ୍ଗ ଯଶ ଉତ୍ତମ' ଉପାଧିରେ ଭୂଷିତ କରିଥିଲେ।

୧୯୪୭ ମସିହାରେ ପାକିସ୍ତାନର ସେନାବାହିନୀ ଅତର୍କିତ ଭାବରେ କାଶ୍ମୀର ଉପରେ ଆକ୍ରମଣ କରି ଶ୍ରୀନଗରର ଚାରିପଟୁ ଘେରିଗଲେ। ପାକିସ୍ତାନ ସେନାବାହିନୀ ଶ୍ରୀନଗରର ବିମାନଘାଟି ଅକ୍ତିଆର କରିବାକୁ ଆପ୍ରାଣ ଉଦ୍ୟମ କରୁଥିଲା। ପଣ୍ଡିତ ଜବାହରଲାଲ ନେହେରୁ ଏହି ପରିସ୍ଥିତିର ମୁକାବିଲା କରିବାକୁ ବିଜୁବାବୁଙ୍କ ପରାମର୍ଶ ଲୋଡ଼ିଥିଲେ। ବିଜୁ ପଟ୍ଟନାୟକ ଆତ୍ମବିଶ୍ୱାସର ଥିଲେ ଏକ ଜ୍ୱଳନ୍ତ ପ୍ରତୀକ ଓ ଜଣେ ପ୍ରବୀଣ ରାଜନୀତିଜ୍ଞ। ତାଙ୍କ ଜୀବନର ବହୁ ଘଟଣାବଳୀ ପ୍ରମାଣ କରେ ଯେ ସେ ଥିଲେ ଏକ ଅନନ୍ୟ ବ୍ୟକ୍ତିତ୍ୱର ଅଧିକାରୀ। ଏଭଳି ସମୟରେ ଭାରତର ସୈନିକମାନଙ୍କୁ କାଶ୍ମୀର ପଠାଇବା ଅତ୍ୟନ୍ତ ଜରୁରୀ ହୋଇପଡ଼ିଥିଲା। ତେବେ ପ୍ରଧାନମନ୍ତ୍ରୀ ନେହେରୁ ଜାଣିଥିଲେ ବିମାନ ଚାଳନାରେ ବିଶ୍ୱରେ ବିଜୁବାବୁ ଥିଲେ ଅଦ୍ୱିତୀୟ। ଶ୍ରୀନଗର ବିମାନଘାଟୀରେ ବିମାନ ଅବତରଣ ଅତ୍ୟନ୍ତ କଠିନ ବ୍ୟାପାର ଥିଲା। ପ୍ରଧାନମନ୍ତ୍ରୀଙ୍କ ସହ ଆଲୋଚନା ପରେ ବିଜୁ ପଟ୍ଟନାୟକ କାଳ ବିଳମ୍ବ ନକରି ନିଜ ଡାକୋଟା ବିମାନରେ ୧୯୪୭ ମସିହା ଅକ୍ଟୋବର ୨୭ ତାରିଖରେ ଦିଲ୍ଲୀର ପାଲାମ ବିମାନ ବନ୍ଦରରୁ ଲେଫଟ୍‌ନାଣ୍ଟ କର୍ଣ୍ଣେଲ ରଣଜିତ ରାୟଙ୍କ ଅଧୀନସ୍ଥ ଅଳ୍ପ କିଛି ଭାରତୀୟ ସୈନ୍ୟମାନଙ୍କ ସହ ଶ୍ରୀନଗର ବିମାନ ବନ୍ଦରରେ ଯାଇ ଅବତରଣ କଲେ। ସେତିକିବେଳେ ପାକିସ୍ତାନୀ ଆକ୍ରମଣକାରୀମାନେ ବାରମୂଲା ଘାଟିରେ ଅଟକି ରହି ଲୁଣ୍ଠନ ସାମଗ୍ରୀ ବଣ୍ଟାକୁଣ୍ଟା କରିବା ସହ ମଉଜମଜଲିସରେ ବ୍ୟସ୍ତ ଥାଆନ୍ତି। ଏହି ସୁଯୋଗରେ ଭାରତୀୟ ସୈନ୍ୟବାହିନୀ ପାକିସ୍ତାନ ସୈନ୍ୟବାହିନୀ ସହ ଘମାଘୋଟ ଲଢ଼ାଇ କରି ସେମାନଙ୍କୁ ପଛକୁ ହଟାଇବାରେ ସମର୍ଥ ହୋଇଥିଲେ। ବିଜୁବାବୁଙ୍କ ପାଇଁ ଭାରତୀୟ ସୈନ୍ୟମାନେ ଶ୍ରୀନଗର ବିମାନ ଘାଟିକୁ ନିଜ ଅକ୍ତିଆରରେ ରଖିବାକୁ ସମର୍ଥ ହୋଇଥିଲେ। ବିଜୁବାବୁଙ୍କ ଏହି କାର୍ଯ୍ୟଦ୍ୱାରା ହଜାର ହଜାର ଭାରତୀୟ ସୈନ୍ୟମାନଙ୍କୁ କାଶ୍ମୀରରେ ପହଞ୍ଚାଇବା ସହଜସାଧ ହୋଇପାରିଥିଲା। ଜେନେରାଲ କେ.ଏସ୍. ଥିମେୟାଙ୍କ ନେତୃତ୍ୱରେ ଭାରତୀୟ ସୈନ୍ୟବାହିନୀ ପାକିସ୍ତାନ

Digitized by srujanika@gmail.com

ସୈନ୍ୟବାହିନୀଙ୍କୁ ପରାଜିତ କରି ସେମାନଙ୍କୁ ପଛଘୁଞ୍ଚା ଦେବାକୁ ବାଧ୍ୟ କରିଥିଲେ। କିନ୍ତୁ କାଶ୍ମୀରକୁ ସମ୍ପୂର୍ଣ୍ଣରୂପେ ସେମାନଙ୍କଠାରୁ ମୁକ୍ତ କରିବା ପୂର୍ବରୁ ଜବାହରଲାଲ ନେହେରୁ ଜାତିସଂଘର ନିର୍ଦ୍ଦେଶରେ ଭାରତୀୟ ସୈନ୍ୟବାହିନୀଙ୍କୁ ଯୁଦ୍ଧ ବନ୍ଦ କରିବାକୁ ନିର୍ଦ୍ଦେଶ ଦେଇଥିଲେ। ଯଦି ଭାରତୀୟ ସୈନ୍ୟମାନଙ୍କୁ ଆଉ ତିନିଦିନ ସମୟ ମିଳିଥାନ୍ତା ତେବେ ସମଗ୍ର କାଶ୍ମୀରକୁ ପାକିସ୍ତାନ କବଳରୁ ମୁକ୍ତ କରାଯାଇପାରିଥାନ୍ତା।

୧୯୫୦ ମସିହାରେ ଜୟପ୍ରକାଶ ନାରାୟଣଙ୍କ ଅନୁରୋଧରେ ଓ ତତ୍‌କାଳୀନ କେନ୍ଦ୍ରମନ୍ତ୍ରୀ ରଫି ଅହମ୍ମଦ କିଦ୍ୱାଇଙ୍କ ଜରୁରୀ ଫୋନ୍ ବାର୍ତ୍ତା ପାଇ ବିଜୁ ପଟ୍ଟନାୟକ ନେପାଳରେ ଗଣତନ୍ତ୍ର ପ୍ରତିଷ୍ଠା ନିମନ୍ତେ ବି.ପି. କୋଇରାଲାଙ୍କ ଗୋଷ୍ଠୀକୁ ସାହାଯ୍ୟ କରିବାକୁ ବିମାନ ଯୋଗେ ବର୍ମାରୁ ଅସ୍ତ୍ରଶସ୍ତ୍ର ନେଇ କାଠମାଣ୍ଡୁରେ ପହଞ୍ଚାଇ ଦେଇଥିଲେ। ସେଠାରେ ରାଣା ସୈନ୍ୟଙ୍କ ସହିତ ଗୃହଯୁଦ୍ଧର ଅବସାନ ପରେ ରାଇଫଲ୍‌ଗୁଡ଼ିକୁ ଅତି ସନ୍ତର୍ପଣରେ ଭାରତକୁ ଫେରାଇ ଆଣିଥିଲେ।

୧୯୬୨ ମସିହା ଅକ୍ଟୋବର କୋଡ଼ିଏ ତାରିଖରେ ଚୀନ୍ ଅତର୍କିତ ଭାବେ ଭାରତ ଆକ୍ରମଣ କଲା। ଚୀନ୍ ସୈନ୍ୟମାନେ ବମ୍‌ଡିଲା ପର୍ଯ୍ୟନ୍ତ ମାଡ଼ି ଆସିଥିଲେ। ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ଚୀନ୍ ସୈନ୍ୟମାନଙ୍କ ଅଗ୍ରସରକୁ କେମିତି ରୋକାଯାଇପାରିବ ସେଥିପାଇଁ ବିଜୁ ପଟ୍ଟନାୟକଙ୍କ ପରାମର୍ଶ ଓ ସାହାଯ୍ୟ ଲୋଡ଼ିଲେ। ବୈଦେଶିକ ବ୍ୟାପାର ବିଭାଗରେ ତାଙ୍କୁ ଏକ ଅଫିସ୍ ଘର ଯୋଗାଇ ଦିଆଯାଇ ତାଙ୍କ ସହିତ ସଦାସର୍ବଦା ବିଚାରବିମର୍ଶ କରୁଥିଲେ ପଣ୍ଡିତଜୀ। ସେତେବେଳେ ଭାରତର ପ୍ରତିରକ୍ଷା ମନ୍ତ୍ରୀ ଭି.କେ. କ୍ରିଷ୍ଣମେନନ ମଧ୍ୟ ବିଜୁ ପଟ୍ଟନାୟକଙ୍କ ପରାମର୍ଶକୁ ବେଶ୍ ଗୁରୁତ୍ୱ ଦେଉଥିଲେ। ପଣ୍ଡିତ ନେହେରୁ ବିଜୁବାବୁଙ୍କୁ ନିଜର ସ୍ୱତନ୍ତ୍ର ପ୍ରତିନିଧି ରୂପେ ଆମେରିକା ପଠାଇ ଆମେରିକା ସରକାରଙ୍କଠାରୁ ସହଯୋଗ ଲୋଡ଼ିଥିଲେ।

ଲେଫ୍‌ଟନାଣ୍ଟ ଜେନେରାଲ ବି.ଏସ୍. କାଉଲ ତାଙ୍କ ପୁସ୍ତକ 'ଅନ୍‌ଟୋଲ୍ଡ ଷ୍ଟୋରି'ରେ ବିଜୁବାବୁଙ୍କ ସେହି ଚୀନ ଆକ୍ରମଣ ସମୟର ଭୂମିକା ସମ୍ପର୍କରେ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଉଲ୍ଲେଖ କରିଛନ୍ତି। ଶ୍ରୀ କାଉଲ ଲେଖିଛନ୍ତି "ବିଜୁ ପଟ୍ଟନାୟକ ଆମେରିକାରେ ଏପରି କି ଯାଦୁକାରୀ ବ୍ୟକ୍ତିତ୍ୱ ପ୍ରକାଶ କଲେ କେଜାଣି, ମାର୍କିନ ନେତୃବର୍ଗ ଖୁବ୍ ପ୍ରଭାବିତ ହେଲେ।" ତତ୍‌କାଳୀନ ଆମେରିକା ରାଷ୍ଟ୍ରପତି ଜେ.ଏଫ୍. କେନେଡ଼ି ଭାରତକୁ ସମ୍ପୂର୍ଣ୍ଣ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଲେ। ଏହି ଘଟଣା ପରେ ଚୀନ ଏକତରଫା ଭାବେ ଯୁଦ୍ଧବିରତି ଘୋଷଣା କଲା।

Digitized by srujanika@gmail.com

ନର୍ଥ ଇଷ୍ଟର୍ଣ୍ଣ ଫ୍ରଣ୍ଟିୟର ଏଜେନ୍ସିରେ ଅବସ୍ଥାପିତ ହୋଇଥିବା ଭାରତୀୟ ସୈନିକମାନଙ୍କୁ ଆକାଶ ମାର୍ଗରୁ ଖାଦ୍ୟପଦାର୍ଥ ଯୋଗାଇଦେବାକୁ ସେତେବେଳେ ବିଜୁ ପଟ୍ଟନାୟକଙ୍କର କଳିଙ୍ଗ ଏୟାର ଲାଇନ୍ସ ଦାୟିତ୍ୱ ଗ୍ରହଣ କରିଥିଲା। ତାଙ୍କଦ୍ୱାରା ପ୍ରତିଷ୍ଠିତ କଳିଙ୍ଗ ଏୟାର ଲାଇନ୍ସକୁ ସୈନ୍ୟବାହିନୀର ସମସ୍ତେ ଭୂରି ଭୂରି ପ୍ରଶଂସା କରୁଥିଲେ। ଅରୁଣାଚଳପ୍ରଦେଶର 'ଦାପୋରିଜେ' ନାମକ ସ୍ଥାନରେ ଥିବା ଏୟାର ଷ୍ଟ୍ରିପ୍‌ରେ ସ୍ଥାପିତ ଏକ ଫଳକରେ ବିଜୁବାବୁଙ୍କର ନାମ ରହିଥିବା ସ୍ୱଚକ୍ଷୁରେ ଦେଖି ଅଭିଭୂତ ହୋଇପଡ଼ିଥିବା କଥା ଭାରତୀୟ ସେନାବାହିନୀର ସେବାନିବୃତ୍ତ କର୍ଣ୍ଣେଲ ଶରତ ମହାପାତ୍ର ଉଲ୍ଲେଖ କରିଛନ୍ତି।

ଚୀନ୍ ଯୁଦ୍ଧ ସମୟରେ ଅତ୍ୟନ୍ତ ବିପଦସଙ୍କୁଳ ପରିତ୍ୟକ୍ତ ତେଜପୁରକୁ ଅତି ଦୁଃସାହସିକତାର ସହିତ ବିଜୁ ପଟ୍ଟନାୟକ ସେ ସମୟର ଭାରତର ସ୍ୱରାଷ୍ଟ୍ର ମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରୀ, ଆସାମର ମୁଖ୍ୟମନ୍ତ୍ରୀ ବି.ପି. ଚାଲିହାଙ୍କୁ ନିଜ ବିମାନରେ ନେଇ ଆର୍ମି କମାଣ୍ଡରମାନଙ୍କ ସହିତ ଆଲୋଚନା କରିଥିଲେ। କାଉଲ ତାଙ୍କ ବହିରେ ବିଜୁ ପଟ୍ଟନାୟକଙ୍କୁ ପ୍ରଶଂସା କରି କହିଛନ୍ତି, "ବିଜୁ ପଟ୍ଟନାୟକ ନିଜର ସୁରକ୍ଷା ଅପେକ୍ଷା ଦେଶକୁ ବେଶି ଭଲ ପାଆନ୍ତି।"

୧୯୬୨ ମସିହାରେ ଭାରତର ସ୍ୱରାଷ୍ଟ୍ର ମନ୍ତ୍ରୀଙ୍କର ପ୍ରେସ୍ ଅଫିସର ଥିବା ପ୍ରସିଦ୍ଧ ସାମ୍ବାଦିକ କୁଲଦୀପ ନାୟାରଙ୍କ ଲିଖିତ ପୁସ୍ତକ 'ବିଟୁଇନ୍ ଦି ଲାଇନ୍‌ସ'ର କିଛି ଧାଡ଼ି ଏଠାରେ ଉଦ୍ଧାର କଲେ ସେ ସମୟରେ ବିଜୁ ପଟ୍ଟନାୟକଙ୍କୁ ଭାରତ ସରକାର ଦେଉଥିବା ଗୁରୁତ୍ୱ ବୁଝିହେବ। 22 November 1962 we flew to Tezpur. The airport has been saved in the nick of time.... Accompanying Home Minister Shastri in this trip was Orissa's Pattnaik; Likeable but Flamboyant apt to play to the gallery and therefore sounding amateurish even when what he speaks sounds sense. x x x The Flamboyant Biju Pattnaik meanwhile talked to some military officials, he spoke about 'Guerrillas'. Later I learnt that he has been allotted a separate room in the Ministry of external affairs and was working on some kind of a hush – hush Project. (Page 174)

Digitized by srujanika@gmail.com

୧୯୬୫ ମସିହାରେ ପାକିସ୍ତାନ ପୁଣିଥରେ ଭାରତ ବିରୁଦ୍ଧରେ ଯୁଦ୍ଧ ଆରମ୍ଭ କରିଦେଲା। ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ଲାଲବାହାଦୂର ଶାସ୍ତ୍ରୀ 'ଜୟ ଜବାନ ଜୟ କିଷାନ' ସ୍ଲୋଗାନ ଦେଇ ଭାରତବାସୀଙ୍କୁ ପାକିସ୍ତାନର ଭାରତ ବିରୁଦ୍ଧରେ ଏହି ଲଢ଼େଇରେ ଏକଜୁଟ ହୋଇ ଶତ୍ରୁର ସାମ୍ନା କରିବାକୁ ଆହ୍ୱାନ ଜଣାଇଲେ। ଜଳ, ସ୍ଥଳ, ଆକାଶର ସୁରକ୍ଷା ପାଇଁ ଭାରତର ପ୍ରତିରକ୍ଷା ବାହିନୀ ସଜାଗ ରହିଲେ। ଖବର ମିଳିଲା ଯେ ଇଣ୍ଡୋନେସିଆରୁ ପାକିସ୍ତାନ ବୁଡ଼ାଜାହାଜ ଆଣି ଭାରତକୁ ଜଳପଥରେ ଆକ୍ରମଣ କରିବ। ଶାସ୍ତ୍ରୀଜୀ ବିଜୁ ପଟ୍ଟନାୟକଙ୍କୁ ଡ଼କାଇ ତାଙ୍କୁ ଅନୁରୋଧ କଲେ ଯେ, ସେ ଇଣ୍ଡୋନେସିଆ ଯାଇ ରାଷ୍ଟ୍ରପତି ସୁକର୍ଣ୍ଣଙ୍କୁ ପାକିସ୍ତାନକୁ କୌଣସି ସାହାଯ୍ୟ କରିବା ମନୋବୃତ୍ତିରୁ ନିବୃତ୍ତ କରାନ୍ତୁ। ବିଜୁ ପଟ୍ଟନାୟକ ଇଣ୍ଡୋନେସିଆ ଯାଇ ସୁକର୍ଣ୍ଣଙ୍କୁ ପ୍ରଥମେ ପାକିସ୍ତାନକୁ ବୁଡ଼ାଜାହାଜ ପଠାଇବା କାର୍ଯ୍ୟରୁ ନିବୃତ୍ତ କରାଇଲେ। ସୁକର୍ଣ୍ଣଙ୍କୁ ସ୍ମରଣ କରାଇଦେଲେ ଯେ ଭାରତ ଧର୍ମଭିତ୍ତିରେ ଅନ୍ୟାୟ କାର୍ଯ୍ୟକୁ କେବେ ସମର୍ଥନ କରେ ନାହିଁ। ଇଣ୍ଡୋନେସିଆର ସ୍ୱାଧୀନତା ଆନ୍ଦୋଳନରେ ଭାରତର ଅକୁଣ୍ଠ ସାହାଯ୍ୟ ଓ ତାଙ୍କର ବ୍ୟକ୍ତିଗତ ଅବଦାନ ସୁକର୍ଣ୍ଣଙ୍କୁ ହତବାକ୍ କରିଥିଲା ଓ ସେ ପାକିସ୍ତାନ ମୁସଲିମ୍ ରାଷ୍ଟ୍ର ହୋଇଥିଲେ ମଧ୍ୟ ସାମରିକ ସାହାଯ୍ୟ ଦେବାକୁ ଅସମ୍ମତ ହେଲେ ଓ ତତ୍‌କ୍ଷଣାତ୍ ପଠାଇଥିବା ବୁଡ଼ାଜାହାଜଗୁଡ଼ିକୁ ଫେରାଇ ଆଣିବାକୁ ଆଦେଶ ଦେଇଥିଲେ।

ଏଭଳି ସାହସୀ ବୀର ଯୁଗସାରଥୀ ଓଡ଼ିଶାରେ ଆଉ ଜନ୍ମ ନେବେ କି ନାହିଁ ତାହା କହିବା କଷ୍ଟ। ୟୁନେସ୍କୋର ପ୍ରଥମ ମହାନିର୍ଦ୍ଦେଶକ ସାର୍ ଜୁଲିଆନ ହକ୍ସଲେ ଥରେ କହିଥିଲେ ଯେ, "ବିଜୁ ପଟ୍ଟନାୟକ ଏଭଳି ଜଣେ ଉଲ୍ଲେଖନୀୟ ଭାରତୀୟ ଯାହାଙ୍କ ସାହସିକତା କଥା ବଖାଣିଲେ ଗୋଟିଏ ବହି ହେବ।" ସେହିପରି ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ବିଜୁବାବୁଙ୍କୁ ଗ୍ରୀକ୍ ଉପକଥାର ସ୍ଫିଙ୍କ୍ସ୍ ସହିତ ତୁଳନା କରି କହିଥିଲେ ଯେ, "ସ୍ଫିଙ୍କ୍ସ୍ ଯେପରି ଧ୍ୱଂସର ଭସ୍ମଶଯ୍ୟା ଭିତରୁ ଉଠି ପୁଣି ଆକାଶକୁ ଲମ୍ଫ ଦେଇଥାଏ, ବିଜୁବାବୁ ସେହିପରି ବହୁ ପରାଜୟର ଧୂଳିଶଯ୍ୟାରୁ ନବଜନ୍ମ ଲାଭ କରି ପୁଣି ଉତ୍‌ଥାନର ଚୂଡ଼ା ଆଡ଼େ ଡେଣା ମେଲେଇଥାନ୍ତି।"

– ୦ –

Digitized by srujanika@gmail.com

# ରାଜନୈତିକ ଜୀବନ

ରାଜନୀତି କ୍ଷେତ୍ରରେ ବିଜୁବାବୁ ଏକ ନିଆରା ବ୍ୟକ୍ତିତ୍ୱ। ଜଣେ ରାଜନୈତିକ ବ୍ୟକ୍ତି ହିସାବରେ ତାଙ୍କ ନିକଟରେ ଯେଉଁ ଗୁଣଗୁଡ଼ିକ ଥିଲା, ଆଜିର ରାଜନୀତିରେ ସେସବୁ କ୍ୱଚିତ ଦେଖିବାକୁ ମିଳେ। କ୍ଷମତା ରାଜନୀତିରେ ନିଜ ବିବେକକୁ ବଳିଦେଇ ଯିଏ ସାଲିସ କରିପାରେ ସିଏ ଉପରକୁ ଉଠିବାକୁ ସଫଳ ହୋଇଥାଏ। ବିଜୁବାବୁଙ୍କର ସେ ଗୁଣଟି ଆଦୌ ନ ଥିଲା। ଯେଉଁ ଗୁଣଟି ପାଇଁ ସେ ସମସ୍ତଙ୍କର ଅତି ପ୍ରିୟପାତ୍ର ହୋଇପାରିଥିଲେ, ସେଇଟି ହେଉଛି ସମସ୍ତଙ୍କ ସହ ମିଶିପାରିବାର କଳା। ସେ ଶତ୍ରୁ ହେଉ କି ମିତ୍ର, ବିରୋଧୀ ହେଉ କି ଘନିଷ୍ଠ, ସମସ୍ତଙ୍କ ସହ ମିଶି ସମନ୍ୱୟ ରକ୍ଷା କରିପାରିବାର ଦକ୍ଷତା ତାଙ୍କ ନିକଟରେ ନିହିତ ଥିଲା। ସେ ରାଜନୀତି କରୁଥିଲେ; କିନ୍ତୁ ରାଜନୀତିରୁ ବହୁ ଊର୍ଦ୍ଧ୍ୱରେ ଥିଲେ। ସେ ଥିଲେ ଜଣେ ରାଷ୍ଟ୍ରନାୟକ। ବିଜୁବାବୁ ତାଙ୍କ ଜୀବନକାଳରେ ସମସ୍ତ ରାଜନୈତିକ ଦଳର ତୁଙ୍ଗନେତାମାନଙ୍କ ସହିତ ସୁସମ୍ପର୍କ ସ୍ଥାପନ କରିପାରିଥିଲେ। ସେ ଜୀବନରେ କାହାକୁ ଶତ୍ରୁ ବୋଲି ବିବେଚନା କରୁ ନଥିଲେ। ସୌମ୍ୟରଞ୍ଜନ ପଟ୍ଟନାୟକ ତାଙ୍କ ଆଲେଖ୍ୟ 'ବିରୋଧୀଙ୍କ ପ୍ରତି ଆକ୍ରୋଶ ରଖୁ ନ ଥିଲେ'ରେ ଲେଖିଛନ୍ତି, "ତାଙ୍କ ସହିତ ମୋର ବ୍ୟକ୍ତିଗତ ସମ୍ପର୍କ ବହୁତ ଭଲ ଥିଲା। ବିଜୁବାବୁ ଜଣେ ଭିନ୍ନ ଚରିତ୍ର ଭିନ୍ନ ସ୍ୱାଦର ଲୋକ ଥିଲେ। ଯିଏ ତାଙ୍କ ସଂସ୍ପର୍ଶରେ ଥରେ ଆସିଛି ସେ ବିଜୁବାବୁ କ'ଣ ତାହା ଅନୁଭବ କରିପାରିଥିବ।" ଧନୀ, ସ୍ୱଚ୍ଛଳ ବର୍ଗର ଲୋକଙ୍କ ଅପେକ୍ଷା ଅଭାବଗ୍ରସ୍ତ ସାଧାରଣ ଲୋକଙ୍କ ସହିତ ମିଶିବା ଓ ତାଙ୍କୁ ନିଜର କରିନେବା ବିଜୁବାବୁଙ୍କର ଏକ ବିଶେଷ ଗୁଣ ଥିଲା। ଯାହା ସହିତ ସେ ମିଶୁଥିଲେ ଅତି ନିବିଡ଼ ଭାବରେ ମିଶୁଥିଲେ। ତାଙ୍କ ନିକଟରେ କିଛି ବାଛବିଚାର ନ ଥିଲା। ଆଉ ସବୁଠୁ ବଡ଼ କଥାଟି ହେଲା ସମସ୍ତଙ୍କ କଥା ସେ ଧୈର୍ଯ୍ୟର ସହ ଶୁଣୁଥିଲେ ଆଉ ବୁଝୁଥିଲେ ମଧ୍ୟ। ସେ ସିଧାସଳଖ ସାଧାରଣ ଲୋକଙ୍କ ସହିତ ମିଶିବାକୁ ଭଲ ପାଉଥିଲେ।

ବିଜୁବାବୁ ଭାରତର ଜଣେ ବିଶିଷ୍ଟ ଶିଳ୍ପପତି ଥିଲେ। ଯଦି ସେ ଅର୍ଥ ଉପାର୍ଜ୍ଜନକୁ ନିଜର ଜୀବନର ଲକ୍ଷ୍ୟ ରଖିଥାନ୍ତେ, ତେବେ ସେ ବିର୍ଲା, ଡାଲମିଆଁ, ଜୈନ,

Digitized by srujanika@gmail.com

ଅମ୍ବାନୀ, ଆଦାନି ପରିବାରର ସମକକ୍ଷ ହୋଇପାରିଥାନ୍ତେ। ତାଙ୍କର ନିଜର ୧୨ଟି ବିମାନ ଥିଲା। କଲିକତାର ଗ୍ରାଣ୍ଡ୍ ହୋଟେଲ୍‌ରେ ତାଙ୍କ ପାଇଁ ବର୍ଷସାରା ଦୁଇଟି ବିଳାସପୂର୍ଣ୍ଣ କକ୍ଷ ସଂରକ୍ଷିତ ହୋଇ ରହୁଥିଲା। ଦିଲ୍ଲୀର ଔରଙ୍ଗଜେବ ରୋଡ୍‌ରେ ତାଙ୍କର ଏକ ବାସଗୃହ ଥିଲା। କଲିକତାର ଚିତ୍ତରଂଜନ ଏଭେନ୍ୟୁରେ ଏକ ବିରାଟ ଅଟ୍ଟାଳିକା ମଧ୍ୟ ଥିଲା। ସେ ଓଡ଼ିଶାର ଜନସାଧାରଣଙ୍କର ଉନ୍ନତି ପାଇଁ ଶିଳ୍ପପତିରୁ ରାଜନୀତି କ୍ଷେତ୍ରକୁ ପ୍ରବେଶ କରିଥିଲେ। ୧୯୪୬ ମସିହାରୁ ୧୯୯୭ ମସିହା ପର୍ଯ୍ୟନ୍ତ ଏକାବନବର୍ଷ କାଳରୁ କେବଳ ଚାରିବର୍ଷ (୧୯୬୭-୭୧) ବ୍ୟତୀତ ସେ ବିଧାନସଭା ହେଉ ବା ଲୋକସଭା ହେଉ ତାର ସଦସ୍ୟ ପଦରେ ରହିଥିଲେ। ମାତ୍ର ଅନ୍ୟୂନ ଦଶବର୍ଷ କାଳ ସେ କ୍ଷମତା ବା ମନ୍ତ୍ରୀପଦରେ ରହିଥିଲେ। ୨୩ ଜୁନ୍ ୧୯୬୧ରୁ ୨ ଅକ୍ଟୋବର ୧୯୬୩ ଦୁଇବର୍ଷ ଚାରିମାସ ଓ ୫ ମାର୍ଚ୍ଚ ୧୯୯୦ରୁ ୧୫ ମାର୍ଚ୍ଚ ୧୯୯୫ ପାଞ୍ଚବର୍ଷ - ଏହିପରି ମୋଟ୍ ସାତବର୍ଷରୁ ଊର୍ଦ୍ଧ୍ୱ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରେ ରହିଥିବାବେଳେ ୧୯୭୭ରୁ ୧୯୮୦ ଅଢ଼େଇବର୍ଷ କେନ୍ଦ୍ରମନ୍ତ୍ରୀ ଭାବେ କାର୍ଯ୍ୟ କରିଥିଲେ।

୧୯୪୬ ମସିହାରେ ବିଜୁବାବୁ ଉତ୍ତର କଟକ ଆସନରୁ ବିଧାନସଭାକୁ ନିର୍ବାଚିତ ହୋଇଥିଲେ। ୧୯୫୨ରେ ସେ ଗଞ୍ଜାମ ଜିଲ୍ଲାର ଜଗନ୍ନାଥପ୍ରସାଦ ବିଧାନସଭାମଣ୍ଡଳିରୁ ନିର୍ବାଚିତ ହୋଇଥିଲେ। ସେହିଭଳି ୧୯୫୭ ନିର୍ବାଚନରେ ଗଞ୍ଜାମ ଜିଲ୍ଲାର ସୋରଡ଼ା ନିର୍ବାଚନମଣ୍ଡଳିରୁ ବିଧାନସଭାକୁ ନିର୍ବାଚିତ ହୋଇଥିଲେ। ବିଜୁବାବୁଙ୍କର ଲୋକପ୍ରିୟତା ଓ କ୍ଷମତା ଧୀରେ ଧୀରେ ବଢ଼ିବାକୁ ଲାଗିଲା। ସେ ଡକ୍ଟର ହରେକୃଷ୍ଣ ମହତାବଙ୍କୁ ଯେଉଁ ପରାମର୍ଶ ଦେଉଥିଲେ ତାକୁ ମହତାବ ଗ୍ରହଣ କରୁନଥିଲେ। ତେଣୁ ମହତାବ ଓ ବିଜୁଙ୍କ ମଧ୍ୟରେ ମତଭେଦ ଦିନକୁଦିନ ବଢ଼ିବାରେ ଲାଗିଲା। ମହତାବ ଦୈନିକ ଖବରକାଗଜ 'ପ୍ରଜାତନ୍ତ୍ର' ମାଧ୍ୟମରେ ବିଜୁ ଓ ନୀଳମଣି ରାଉତରାୟଙ୍କ ବିରୁଦ୍ଧରେ ନାନା ଅଭିଯୋଗ ପ୍ରକାଶ କରାଇଥିଲେ। ପ୍ରଦେଶ କଂଗ୍ରେସର ଦୁଇଜଣ ଅତ୍ୟନ୍ତ ପ୍ରଭାବଶାଳୀ ବ୍ୟକ୍ତି ବିବାଦରେ ଛନ୍ଦି ହୋଇପଡ଼ିଲେ। ୧୯୬୧ ମସିହା ଜାନୁଆରୀ ମାସରେ ବିଜୁ ପଟ୍ଟନାୟକ ବନମାଳି ପଟ୍ଟନାୟକଙ୍କୁ ପରାଜିତ କରି ରାଜ୍ୟ କଂଗ୍ରେସର ସଭାପତି ଆସନ ଅଳଙ୍କୃତ କଲେ। ୧୯୬୧ ମସିହା ଜୁନ୍ ମାସରେ ରାଜ୍ୟ ବିଧାନସଭା ପାଇଁ ବିଜୁବାବୁଙ୍କ ନେତୃତ୍ୱରେ ହୋଇଥିବା ନିର୍ବାଚନରେ କଂଗ୍ରେସ ଦଳ ୧୪୦ଟି ଆସନରୁ ୮୨ଟି ଆସନରେ ଜିତିଥିଲା। ଏଠାରେ ଉଲ୍ଲେଖଯୋଗ୍ୟ ଯେ ବିଜୁ ପଟ୍ଟନାୟକ

Digitized by srujanika@gmail.com

ନିର୍ବାଚନ ପ୍ରଚାର ପାଇଁ ୧୪୦ଟି ନୂଆ ଜିପ୍ ଆଣି ପ୍ରାର୍ଥୀପତ୍ର ଦାଖଲ ଦିନ ହିଁ ସବୁ ପ୍ରାର୍ଥୀଙ୍କୁ ଗୋଟିଏ ଗୋଟିଏ ଜିପ୍ ଯୋଗାଇ ଦେଇଥିଲେ। ବିଜୁବାବୁଙ୍କର ଏହିଭଳି ପଦକ୍ଷେପ ତାଙ୍କୁ ବିଧାୟକମାନଙ୍କ ଭିତରେ ଆଦରଣୀୟ କରିଥିଲା ଏବଂ ସେ ଚୌଦ୍ୱାର ବିଧାନସଭା ଆସନରୁ ଜିତି ୨୩ ଜୁନ୍‌ରେ ରାଜ୍ୟର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିଥିଲେ। କିନ୍ତୁ ଦୁଇଜଣ ପ୍ରମୁଖ ରାଜନୀତିଜ୍ଞ ଡକ୍ଟର ହରେକୃଷ୍ଣ ମହତାବ ଓ ରାଜେନ୍ଦ୍ର ନାରାୟଣ ସିଂହଦେଓ ବିଜୁବାବୁଙ୍କ ରାଜନୈତିକ ଉତ୍‌ଥାନରେ ଈର୍ଷାପ୍ରଣୋଦିତ ହୋଇଥିଲେ। ୧୯୬୧ ମସିହାରେ ଗଠିତ ହୋଇଥିବା କଂଗ୍ରେସ ସରକାର ବିଶେଷକରି ବିଜୁବାବୁ ଓ ବୀରେନ୍ ମିତ୍ରଙ୍କ ବିରୁଦ୍ଧରେ ଦୁର୍ନୀତି ଓ ପ୍ରଶାସନିକ ଅନିୟମିତତା ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହେବାକୁ ଲାଗିଲା।

ବିଜୁବାବୁ ତାଙ୍କ ବେପରୁଆ ମନୋବୃତ୍ତିରେ କାହାକୁ ଖାତିର କରୁନଥିଲେ। କାରଣ ସେ ଜାଣିଥିଲେ ସେ ଯାହା କରୁଛନ୍ତି, ରାଜ୍ୟବାସୀଙ୍କ ହିତ ପାଇଁ କରୁଛନ୍ତି। ଥରେ ଭାଷଣ ଦେଲାବେଳେ ଝାରସୁଗୁଡ଼ାଠାରେ ସେ କହିଥିଲେ, "ମୁଁ ଶୂନ୍‌ରୁ ଜୀବନ ଆରମ୍ଭ କରିଥିଲି, ଆଜି ମୁଁ ଦଶକୋଟି ଟଙ୍କାର ମାଲିକ। ଦଶଲକ୍ଷ ଟଙ୍କା ଖର୍ଚ୍ଚ କରି ମୁଁ ମୁଖ୍ୟମନ୍ତ୍ରୀ ହେଲି। ଦଶକୋଟି ଟଙ୍କା ଖର୍ଚ୍ଚ କଲେ ଭାରତର ପ୍ରଧାନମନ୍ତ୍ରୀ ହୋଇପାରିବି। ଆମ ଯୁବକମାନେ ମୋ ପରି ଉଦ୍ୟୋଗୀ ହେବା ଦରକାର।" ଏହି ପ୍ରସଙ୍ଗ ଲୋକସଭାରେ ଆଲୋଚନା ହୋଇଥିଲା ଏବଂ କିପରି ସେ ୧୦ କୋଟି ଟଙ୍କା ରୋଜଗାର କରିଛନ୍ତି ତାହା ଉପରେ ତର୍କବିତର୍କ ହୋଇଥିଲା। ଏହି କଥାଟି ମଧ୍ୟ ଖାନ୍ନା କମିଶନର ତଦନ୍ତ ପରିସରଭୁକ୍ତ ହୋଇଥିଲା। ବିଜୁବାବୁ କିନ୍ତୁ କାମରାଜ ଯୋଜନାରେ ୨ ଅକ୍ଟୋବର ୧୯୬୩ରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ।

୧୯୬୩ରୁ ୧୯୬୫ ପର୍ଯ୍ୟନ୍ତ ବିଜୁବାବୁ ରାଜ୍ୟ ଯୋଜନା ବୋର୍ଡ଼ର ସଭାପତି ଥିଲେ। ୧୯୬୭ ମସିହା ନିର୍ବାଚନରେ ବିଜୁବାବୁ କେନ୍ଦ୍ରାପଡ଼ା ଅନ୍ତର୍ଗତ ପାଟକୁରା ବିଧାନସଭା ନିର୍ବାଚନମଣ୍ଡଳିରୁ ପ୍ରାର୍ଥୀ ହୋଇ ପରାଜୟ ବରଣ କରିଥିଲେ। ୧୯୬୭ରୁ ୧୯୭୧ ଯାଏ ବିଜୁବାବୁ ବିଧାନସଭା ଓ ଲୋକସଭା ବାହାରେ ରହିଥିଲେ।

୧୯୬୯ ମସିହାରେ କଂଗ୍ରେସ ଦୁଇ ଦଳରେ ବିଭାଜିତ ହୋଇଥିଲା। ଓଡ଼ିଶା କଂଗ୍ରେସ ପ୍ରଥମେ କୌଣସି ଗୋଷ୍ଠୀ ସହିତ ଯୋଗ ଦେଇନଥିଲା। ୧୯୭୦ରେ ବିଜୁବାବୁ ଇନ୍ଦିରା ଗାନ୍ଧିଙ୍କୁ ତାଙ୍କୁ ରାଜ୍ୟସଭା ପାଇଁ ପ୍ରାର୍ଥୀ କରିବାକୁ ଅନୁରୋଧ କରିଥିଲେ। କିନ୍ତୁ ଇନ୍ଦିରା ଗାନ୍ଧି ଏହି ଅନୁରୋଧ ରକ୍ଷା କରି ନଥିଲେ। ଏହା ବିଜୁବାବୁଙ୍କୁ

Digitized by srujanika@gmail.com

ଶକ୍ତ ଧକ୍କା ଦେଇଥିଲା । ୧୯୭୧ ମସିହାର ପଞ୍ଚମ ସାଧାରଣ ନିର୍ବାଚନ ବିଜୁବାବୁଙ୍କ ପାଇଁ ଥିଲା ସବୁଠାରୁ ଖରାପ ସମୟ । ସେହିବର୍ଷ ସେ କଂଗ୍ରେସଠାରୁ ସମ୍ପର୍କ ଛିନ୍ନ କରି 'ଉତ୍କଳ କଂଗ୍ରେସ' ନାମରେ ଗୋଟିଏ ଆଞ୍ଚଳିକ ଦଳ ଗଠନ କରି ଅତ୍ୟନ୍ତ ଉତ୍ସାହିତ ହୋଇଯାଇଥିଲେ । ସେ ସମୟରେ ବାଙ୍ଗଲାଦେଶର ମୁକ୍ତି ସଂଗ୍ରାମରେ ଭାରତୀୟ ସେନାର ସକ୍ରିୟ ସହାୟତା ଯୋଗୁଁ ପାକିସ୍ତାନ ସେନାର ଶୋଚନୀୟ ପରାଜୟ ଘଟିଥିଲା । ୧୬ ଡିସେମ୍ବର ୧୯୭୧ରେ ପାକିସ୍ତାନର ଜେନେରାଲ ଏ.ଏ.କେ. ନିଆଜି ୯୩ ହଜାର ସୈନିକଙ୍କ ସହିତ ଭାରତର ସେନାଧ୍ୟକ୍ଷ ଜେନେରାଲ ଜଗଦୀଶ ସିଂ ଆରୋରାଙ୍କ ନିକଟରେ ଆତ୍ମସମର୍ପଣ କରିଥିଲେ । ଏହି ଯୁଦ୍ଧର ଫଳାଫଳ ଯୋଗୁଁ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କର ଲୋକପ୍ରିୟତା ଆକାଶଛୁଆଁ ହୋଇଥିଲା । ଏଥିରୁ ଇନ୍ଦିରା ଗାନ୍ଧୀ ରାଜନୈତିକ ଫାଇଦା ନେଇଥିଲେ । ଶ୍ରୀମତୀ ଗାନ୍ଧୀ 'ଗରିବୀ ହଟାଓ'ର ଯେଉଁ ଧ୍ୱନି ଦେଇଥିଲେ ତାହା ଲୋକଙ୍କ ଭିତରେ ମନ୍ତ୍ରବତ୍ କାର୍ଯ୍ୟ କରିଥିଲା । ଦେଶର ସର୍ବତ୍ର 'ଇନ୍ଦିରା ହାୱା' ଏପରି ପ୍ରବଳ ହୋଇଥିଲା ଯେ କୌଣସି ଅଣ-କଂଗ୍ରେସ ଦଳ ତା'ର ମୁକାବିଲା କରିବାରେ ସକ୍ଷମ ହୋଇ ନ ଥିଲେ । ମାତ୍ର ଦୁର୍ଦ୍ଧର୍ଷ ବିଜୁ ପଟ୍ଟନାୟକ ସେ ହାୱାକୁ ବେଖାତିର କରି ୧୯୭୧ ମସିହା ଫେବୃଆରୀ ମାସରେ ହୋଇଥିବା ନିର୍ବାଚନରେ ଚକଲଙ୍ଗଳ ଚିହ୍ନରେ ତାଙ୍କର ପୈତୃକ ଜନ୍ମସ୍ଥାନ ଗଞ୍ଜାମ ଜିଲ୍ଲାର ଭଞ୍ଜନଗର, କର୍ମକ୍ଷେତ୍ର ଭୁବନେଶ୍ୱର, ଚୌଦ୍ୱାର ଏବଂ ଖୋର୍ଦ୍ଧା ଆଦି ୪ଟି ବିଧାନସଭା ନିର୍ବାଚନମଣ୍ଡଳୀ ସହିତ ଗୋଟିଏ ଲୋକସଭା ଆସନ ଆସ୍କାରୁ ପ୍ରତିଦ୍ୱନ୍ଦ୍ୱିତା କରି ଏକ ବିରଳ ଇତିହାସ ସୃଷ୍ଟି କରିଥିଲେ । ମାତ୍ର ପରିସ୍ଥିତି ଏପରି ହେଲା, ଏହି ବହୁମୁଖୀ ପ୍ରତିଦ୍ୱନ୍ଦ୍ୱିତାରେ ବିଜୁବାବୁ କୌଣସି ଗୋଟିଏ ସ୍ଥାନରୁ ଜୟଲାଭ କରିପାରି ନ ଥିଲେ । ଏପରି ଏକ ଦାରୁଣ ସ୍ଥିତି ତାଙ୍କୁ ଦୋହଲାଇ ପାରି ନ ଥିଲା । ଏହି ନିର୍ବାଚନରେ ପରାସ୍ତ ହେବାପରେ ତାଙ୍କୁ ମ୍ରିୟମାଣ ହେବାର କେହି ଦେଖିନାହିଁ । ପରାଜୟ ସତ୍ତ୍ୱେ ତାଙ୍କ ମନୋବଳ ଅତୁଟ ରହିଥିଲା । ବଡ଼ ଆଶ୍ଚର୍ଯ୍ୟଜନକ ଥିଲା ତାଙ୍କର ମାନସିକ ଦୃଢ଼ତା ।

କିନ୍ତୁ ଏହି ନିର୍ବାଚନ ପରେ ବିଜୁବାବୁଙ୍କ ଉଦ୍ୟମରେ 'ଉତ୍କଳ କଂଗ୍ରେସ', 'ସ୍ୱତନ୍ତ୍ର ଦଳ' ଓ 'ଝାଡ଼ଖଣ୍ଡ ଦଳ' ମିଶି ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ସେହିବର୍ଷ ବିଜୁବାବୁ ରାଜନଗର ଉପନିର୍ବାଚନରେ ପ୍ରହଲ୍ଲାଦ ମଲ୍ଲିକଙ୍କ ସ୍ଥାନରେ ବିଧାନସଭାକୁ ନିର୍ବାଚିତ ହେଲେ । ୯ ଜୁନ୍ ୧୯୭୨ରେ 'ଉତ୍କଳ

Digitized by srujanika@gmail.com

କଂଗ୍ରେସ' କଂଗ୍ରେସ ଦଳ ସହ ମିଶ୍ରଣ ହେବ ବୋଲି ସ୍ଥିର ହେଲା ଏବଂ ବିଶ୍ୱନାଥ ଦାସଙ୍କ ମନ୍ତ୍ରିମଣ୍ଡଳ ଇସ୍ତଫା ପ୍ରଦାନ କଲେ। ୧୪ ଜୁନ୍‌ରେ କଂଗ୍ରେସ ଦଳର ମନ୍ତ୍ରିମଣ୍ଡଳ ଗଠନ ହେଲା, କିନ୍ତୁ ମୁଖ୍ୟମନ୍ତ୍ରୀ ହେଲେ ଇନ୍ଦିରା ଗାନ୍ଧିଙ୍କର ଅତି ପ୍ରିୟ ସାଜିଥିବା ନନ୍ଦିନୀ ଶତପଥୀ। ଉତ୍କଳ କଂଗ୍ରେସ ଓ କଂଗ୍ରେସ ଦଳର ମିଶ୍ରଣ ହୋଇଥିଲା, କିନ୍ତୁ ଉତ୍କଳ କଂଗ୍ରେସ ଦଳରୁ ବିଜୁ ପଟ୍ଟନାୟକ, ରାମକୃଷ୍ଣ ପଟ୍ଟନାୟକ, ପ୍ରତାପ ମହାନ୍ତି ଓ ଶରତ କୁମାର କର ପ୍ରମୁଖଙ୍କୁ କଂଗ୍ରେସ ଦଳ ଗ୍ରହଣ କରିନଥିଲା। ୧୯୭୨ ନଭେମ୍ବର ୧୨ରେ ବିଜୁବାବୁ ଉତ୍କଳ କଂଗ୍ରେସର ପୁନର୍ଗଠନ କଲେ। ସେ ହରେକୃଷ୍ଣ ମହତାବ ଓ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ସହିତ ବୁଝାମଣା କରି ଓଡ଼ିଶାରେ 'ପ୍ରଗତି ଦଳ' ଗଠନ କଲେ।

୧୯୭୩ ମାର୍ଚ୍ଚ ମାସ ପହିଲା ଦିନ ବିଜୁବାବୁ ୭୧ ଜଣ ବିଧାୟକଙ୍କୁ ସାଙ୍ଗରେ ଧରି ରାଜ୍ୟପାଳ ବି.ଡି. ଜଟୀଙ୍କୁ ସାକ୍ଷାତ କରି ତାଙ୍କୁ ମନ୍ତ୍ରିମଣ୍ଡଳ ଗଠନ କରିବାର ସୁଯୋଗ ଦେବାପାଇଁ ଦାବି କରିଥିଲେ। କିନ୍ତୁ ରାଜ୍ୟପାଳ ତାଙ୍କ ନ୍ୟାୟୋଚିତ ଅନୁରୋଧ ଅଗ୍ରାହ୍ୟ କରିଦେଇଥିଲେ। ରାଜ୍ୟପାଳଙ୍କ ଏହି ଅଣସାମ୍ବିଧାନିକ ନିଷ୍ପତ୍ତି ଯୋଗୁଁ ବିଜୁବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାରୁ ବଞ୍ଚିତ ହେଲେ। ରାଜ୍ୟପାଳ କଂଗ୍ରେସର ସଖୀକଣ୍ଢେଇ ସାଜି ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରି କରିବା ପାଇଁ କେନ୍ଦ୍ର ସରକାରଙ୍କୁ ସୁପାରିଶ କରିଥିଲେ ଏବଂ ମାର୍ଚ୍ଚ ୩ ତାରିଖରେ ରାଜ୍ୟରେ ରାଷ୍ଟ୍ରପତି ଶାସନ ଜାରି ହୋଇଥିଲା। ଶ୍ରୀ ଜଟୀଙ୍କ ଆଚରଣରେ କ୍ଷୁବ୍ଧ ହୋଇ ବିଜୁ ପଟ୍ଟନାୟକ ଦୁଇଜଣ ପୂର୍ବତନ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ, ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ଅନ୍ୟ ୭୧ ଜଣ ଅଣକଂଗ୍ରେସ ବିଧାୟକଙ୍କ ତରଫରୁ ହାଇକୋର୍ଟରେ ଏକ ମକଦ୍ଦମା ଦାୟେର କରିଥିଲେ ଏବଂ ଶ୍ରୀ ଜଟୀ ରାଜ୍ୟପାଳ ଭାବରେ ନିରପେକ୍ଷ ଆଚରଣ ପ୍ରଦର୍ଶନ ନ କରି କେନ୍ଦ୍ରରେ କଂଗ୍ରେସ କର୍ତ୍ତୃପକ୍ଷଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଯେଉଁଭଳି ପକ୍ଷପାତୀ ଭୂମିକା ଗ୍ରହଣ କରିଥିଲେ ତାହା ଦର୍ଶାଇଥିଲେ। ଓଡ଼ିଶା ହାଇକୋର୍ଟର ମୁଖ୍ୟ ବିଚାରପତି ଗତିକୃଷ୍ଣ ମିଶ୍ର ଓ ଅନ୍ୟତମ ବିଚାରପତି ସୁକାନ୍ତ କିଶୋର ରାୟଙ୍କୁ ନେଇ ଗଠିତ ଏକ ଡିଭିଜନ ବେଞ୍ଚରେ ଏହି ମକଦ୍ଦମାର ବିଚାର ଚାଲିଥିଲା। ବିଜୁ ପଟ୍ଟନାୟକଙ୍କ ପକ୍ଷରୁ ବାରିଷ୍ଟର ବିରେନ୍ଦ୍ର ମୋହନ ପଟ୍ଟନାୟକ ଓ ରାଜ୍ୟ ସରକାରଙ୍କ ପକ୍ଷରୁ ତତ୍କାଳୀନ ଆଡଭୋକେଟ ଜେନେରାଲ ଗଙ୍ଗାଧର ରଥ ମକଦ୍ଦମା ପରିଚାଳନା କରିଥିଲେ। ୨୨ ଅକ୍ଟୋବର ୧୯୭୩ ମସିହାରେ ଏହି ମକଦ୍ଦମାର ରାୟ ପ୍ରକାଶ ପାଇଥିଲା। ସେଥିରେ

Digitized by srujanika@gmail.com

"ରାଜ୍ୟପାଳଙ୍କର ଏହି ନିଷ୍ପତ୍ତି ଓ ରିପୋର୍ଟ ଅଦାଲତର ବିଚାର ପରିସରଭୁକ୍ତ ନୁହେଁ" ବୋଲି ଡିଭିଜନ ବେଞ୍ଚ ଉଲ୍ଲେଖ କରିଥିଲେ ଏବଂ ଉଭୟ ବିଚାରପତି ରାଜ୍ୟପାଳ ଶ୍ରୀ ଜଟ୍ଟୀଙ୍କ ଆଚରଣ ସମ୍ପର୍କରେ କଟୁ ମନ୍ତବ୍ୟ ପ୍ରଦାନ କରିଥିଲେ। ସେମାନେ କହିଥିଲେ, "ଶହ ଶହ ବର୍ଷ ଧରି ଯେଉଁ ଉତ୍କୃଷ୍ଟ ପରମ୍ପରାର ସହାୟତାରେ ସଂସଦୀୟ ଶାସନ ଓ ମନ୍ତ୍ରୀପରିଷଦ କାର୍ଯ୍ୟ କରିଆସୁଥିଲା ତାହାକୁ ଓଡ଼ିଶାର ରାଜ୍ୟପାଳ ଅଣୁମାତ୍ର ସମ୍ମାନ ପ୍ରଦର୍ଶନ କରିନଥିଲେ। ରାଜ୍ୟ ବିଧାନସଭାରେ ବହୁମତ ହରାଇ ନନ୍ଦିନୀ ଶତପଥୀ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେବାପରେ ରାଜ୍ୟପାଳ ବିରୋଧୀ ଦଳ ନେତାଙ୍କୁ ବିକଳ୍ପ ମନ୍ତ୍ରିମଣ୍ଡଳ ଗଠନ କରିବା ନିମନ୍ତେ ଆମନ୍ତ୍ରଣ କରିବା ଉଚିତ ଥିଲା। ସମ୍ପୃକ୍ତ ବିରୋଧୀଦଳ ନେତା ମନ୍ତ୍ରିମଣ୍ଡଳ ଗଠନ କରିପାରିବେ କି ନାହିଁ ସେକଥା ତାଙ୍କ ଉପରେ ନିର୍ଭର କରୁଥିଲା। ବିରୋଧୀଦଳ ନେତାଙ୍କ ସହିତ ସଂଖ୍ୟାଧିକ ବିଧାୟକଙ୍କର ସମର୍ଥନ ରହିଥିଲା ଏବଂ ସେ ବିଷୟ ରାଜ୍ୟପାଳ ସ୍ୱୀକାର କରିଥିଲେ। ଭବିଷ୍ୟତରେ ମନ୍ତ୍ରିମଣ୍ଡଳ ଦୃଢ଼ ରହିବ କି ନାହିଁ ସେ ସମ୍ପର୍କରେ ରାଜ୍ୟପାଳଙ୍କର କୌଣସି ଭୂମିକା ନ ଥିଲା। ଯଦି ବିରୋଧୀଦଳ ନେତାଙ୍କଦ୍ୱାରା ଗଢ଼ାଯାଇଥିବା ମନ୍ତ୍ରିମଣ୍ଡଳର ଭବିଷ୍ୟତରେ ପତନ ଘଟିଥାନ୍ତା ଏବଂ ଅନ୍ୟକୌଣସି ନେତା ବହୁମତ ସମର୍ଥନରେ ଅନ୍ୟ ଏକ ବିକଳ୍ପ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ଅକ୍ଷମତା ପ୍ରକାଶ କରିଥାନ୍ତେ, ତେବେ ରାଜ୍ୟରେ ରାଷ୍ଟ୍ରପତି ଶାସନ ପ୍ରବର୍ତ୍ତନ କରିବା ପାଇଁ ସୁପାରିଶ କରିବା ରାଜ୍ୟପାଳଙ୍କ ପକ୍ଷରେ ଯଥାର୍ଥ ହୋଇଥାନ୍ତା।" (ଓଡ଼ିଶା ରାଜନୀତିର ଗୋପନ କଥା, ବସନ୍ତ ଦାସ, ପୃ.୧୮୯-୯୧) ବିଜୁ ପଟ୍ଟନାୟକ ଶ୍ରୀ ଜଟ୍ଟୀଙ୍କ ବିରୁଦ୍ଧରେ ଉଚ୍ଚ ନ୍ୟାୟାଳୟରେ ମକଦ୍ଦମା କରିବା ଏବଂ ଉଚ୍ଚ ନ୍ୟାୟାଳୟ ଶ୍ରୀ ଜଟ୍ଟୀଙ୍କ ପକ୍ଷପାତ ଆଚରଣକୁ ଭର୍ତ୍ସନା କରିବା ଦ୍ୱାରା ସମଗ୍ର ଭାରତବର୍ଷରେ କଂଗ୍ରେସ ଦଳ ବ୍ୟତୀତ ଅନ୍ୟସବୁ ରାଜନୈତିକ ଦଳମାନେ ବିଜୁ ପଟ୍ଟନାୟକଙ୍କର ପଦକ୍ଷେପକୁ ପ୍ରଶଂସା କରିଥିଲେ ଓ ଜଟ୍ଟୀଙ୍କ ପକ୍ଷପାତ ନୀତିକୁ ନିନ୍ଦା କରିଥିଲେ।

୧୯୭୪ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ବିଜୁବାବୁଙ୍କ ଉତ୍କଳ କଂଗ୍ରେସ ଦଳ ୩୫ଟି ଆସନ ଓ ସ୍ୱତନ୍ତ୍ର ଦଳ ୨୧ଟି ଆସନ ପାଇଥିଲା। ୧୯୭୪ ସେପ୍ଟେମ୍ବର ୭ ତାରିଖରେ ବିଜୁବାବୁଙ୍କ ଉତ୍କଳ କଂଗ୍ରେସ, ସ୍ୱତନ୍ତ୍ର ଓ ଏସ୍‌ଏସ୍‌ପି ମିଶି ଓଡ଼ିଶାରେ 'ଭାରତୀୟ ଲୋକଦଳ'ର ରାଜ୍ୟ ଶାଖା ଗଠନ କରିଥିଲେ ଏବଂ ନୀଳମଣି ରାଉତରାୟ ଏହି ଦଳର ସଭାପତି ହୋଇଥିଲେ। ୧୯୭୫ ମସିହା ଜୁନ୍ ୧୨ ତାରିଖରେ ଶ୍ରୀ

Digitized by srujanika@gmail.com

ରାଜନାରାୟଣଙ୍କର ଇନ୍ଦିରା ଗାନ୍ଧିଙ୍କ ବିରୋଧରେ ନିର୍ବାଚନ ମକଦ୍ଦମାକୁ ବିଚାର କରି ଆହ୍ଲାବାଦ ହାଇକୋର୍ଟର ମାନ୍ୟବର ବିଚାରପତି ଜେଏମ୍‌ଏଲ୍ ସିହ୍ନା ଇନ୍ଦିରା ଗାନ୍ଧିଙ୍କ ଲୋକସଭା ନିର୍ବାଚନକୁ ଅସିଦ୍ଧ ଘୋଷଣା କରିଥିଲେ। କିନ୍ତୁ ଇନ୍ଦିରା ଗାନ୍ଧି ଆହ୍ଲାବାଦ ହାଇକୋର୍ଟ ରାୟ ବିରୁଦ୍ଧରେ ସୁପ୍ରିମ କୋର୍ଟରେ ମକଦ୍ଦମା କଲେ। ସୁପ୍ରିମ କୋର୍ଟ ଆହ୍ଲାବାଦ ହାଇକୋର୍ଟର ରାୟକୁ ସ୍ଥଗିତ ରଖି ମାମଲାର ବିଚାର ଶେଷପର୍ଯ୍ୟନ୍ତ ଇନ୍ଦିରା ଗାନ୍ଧି କ୍ଷମତାରେ ରହିବାକୁ ଆଦେଶ ଦେଲେ। ଜୁନ୍ ୨୫ ତାରିଖରେ ସାରାଦେଶରେ ସମ୍ବିଧାନର ୩୫୨ ଧାରା ଅନୁସାରେ ଇନ୍ଦିରା ଗାନ୍ଧୀ ଜରୁରୀ ପରିସ୍ଥିତି ଜାରି କରିଥିଲେ। ଜରୁରୀ ପରିସ୍ଥିତିର ଭୟାବହତାକୁ ଅଧ୍ୟାଦେଶ ମାଧ୍ୟମରେ ଦେଶରେ ପ୍ରବର୍ତ୍ତନ କରାଯାଇଥିବା ଜାତୀୟ ନିରାପତ୍ତା ଆଇନ୍ ବଳରେ କୌଣସି କାରଣ ନ ଥାଇ ୧୯ମାସ ଧରି ବିଜୁ ପଟ୍ଟନାୟକଙ୍କୁ ହରିଆନାର ରୋହତକ ଜେଲ୍‌ରେ ରହିବାକୁ ପଡ଼ିଥିଲା। ସେତେବେଳେ ଜୟପ୍ରକାଶ ନାରାୟଣଙ୍କୁ ମଧ୍ୟ ବନ୍ଦୀ କରାଯାଇଥିଲା। ଏହି ସମୟରେ ଜାତୀୟ ତୁଙ୍ଗ ନେତାମାନଙ୍କ ସହ ମିଶି ବିଜୁବାବୁ 'ଜନତା ଦଳ' କଥା କଳ୍ପନା କରିଥିଲେ ଏବଂ ଜେଲ୍‌ରୁ ମୁକ୍ତି ପରେ ତାଙ୍କ ଦିଲ୍ଲୀ ବାସଭବନରେ ଏହି ଦଳ ଗଠିତ ହୋଇଥିଲା। ବିଜୁବାବୁ ଥିଲେ 'ଜନତା ଦଳ' ଗଠନର କର୍ଣ୍ଣଧାର ଏବଂ ଭାରତୀୟ ଲୋକଦଳ, ଜନସଂଘ, କଂଗ୍ରେସ(ଓ) ଓ ସୋସିଆଲିଷ୍ଟ ଦଳକୁ ନେଇ ଏହି ଦଳ ଗଠିତ ହୋଇଥିଲା। ଏହା ବିଜୁ ପଟ୍ଟନାୟକଙ୍କର ଅସାଧାରଣ ରାଜନୈତିକ ଦୂରଦୃଷ୍ଟିର ପରିଚୟ ଦିଏ।

ଶ୍ରୀ ଅମର ପ୍ରସାଦ ଶତପଥୀ 'ବିଜୁବାବୁ ଏକ ଅଦମନୀୟ ବ୍ୟକ୍ତିତ୍ୱ' ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି, "ଓଡ଼ିଶାରେ ଖଣ୍ଡବିଖଣ୍ଡିତ ତତ୍କାଳୀନ ଜନତା ପାର୍ଟିର ଏକୀକରଣ ପ୍ରକ୍ରିୟାରେ ବିଜୁବାବୁ ଥିଲେ ସୂତ୍ରଧର। ପରବର୍ତ୍ତୀ ଅବସ୍ଥାରେ ସର୍ବଭାରତୀୟ ସ୍ତରରେ ଅଣକଂଗ୍ରେସ ଶକ୍ତିଙ୍କୁ ଏକାଠି କରିବାରେ ସେ ପ୍ରମୁଖ ଭୂମିକା ନେଇଥିଲେ। କୁହାଯାଉଥିଲା ନୂଆଦିଲ୍ଲୀସ୍ଥିତ ତାଙ୍କ ୩, ଆଉରଙ୍ଗଜେବ ରୋଡ଼୍ ବାସଭବନଟି ଥିଲା ଅଣକଂଗ୍ରେସ ଶକ୍ତିର କେନ୍ଦ୍ରସ୍ଥଳୀ। ଦଳମତନିର୍ବିଶେଷରେ ସମସ୍ତେ ତାଙ୍କୁ ଆଦରରେ ବିଜୁଦା' ବୋଲି ସମ୍ବୋଧନ କରୁଥିଲେ। ଏହି ପ୍ରକ୍ରିୟାର ସୁଫଳ ମିଳିଥିଲା ଭି.ପି. ସିଂହ ଏବଂ ଏଚ୍.ଡି. ଦେବେଗୌଡ଼ାଙ୍କୁ, ଯେଉଁମାନେ କି ଅଣକଂଗ୍ରେସ ସରକାରର ପ୍ରଧାନମନ୍ତ୍ରୀ ହୋଇଥିଲେ।" ବିଜୁବାବୁଙ୍କ ପ୍ରତି କୃତଜ୍ଞ ଅମର ପ୍ରସାଦ ଶତପଥୀ ପୁନର୍ବାର ଲେଖିଛନ୍ତି, "ନବେ ଦଶକରେ ବିଜୁବାବୁଙ୍କ ଆଶୀର୍ବାଦରେ ମୁଁ ପ୍ରଥମଥର

Digitized by srujanika@gmail.com

ପାଇଁ ବଡ଼ଚଣାରୁ ବିଧାନସଭାକୁ ପ୍ରତିନିଧିତ୍ୱ କରିବାର ସୁଯୋଗ ପାଇଥିଲି। ପରେ ୧୯୯୫ରୁ ୨୦୦୦ ବିଜୁବାବୁଙ୍କ ଆଶୀର୍ବାଦରେ ମୋତେ ବିଧାୟକ ହେବାର ସୁଯୋଗ ମିଳିଥିଲା।" ବର୍ତ୍ତମାନ ସେ ବିଧାନସଭାରେ ମୁଖ୍ୟ ସଚେତକ (କ୍ୟାବିନେଟ୍ ପାହ୍ୟା) ଭାବେ ନିଯୁକ୍ତି ପାଇ କାର୍ଯ୍ୟ ନିର୍ବାହ କରୁଛନ୍ତି।

୧୯୭୭ ଜାନୁଆରୀ ୧୭ ତାରିଖ ଦିନ ଇନ୍ଦିରା ଗାନ୍ଧି ଲୋକସଭା ନିର୍ବାଚନ ମାର୍ଚ୍ଚ ମାସରେ କରାଯିବାର ଘୋଷଣା କରିଥିଲେ। ୧୯୭୭ ନିର୍ବାଚନରେ ବିଜୁ ପଟ୍ଟନାୟକ କେନ୍ଦ୍ରାପଡ଼ା ଲୋକସଭା ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇ କେନ୍ଦ୍ରରେ ମୋରାରଜୀ ଦେଶାଇ (ଜନତାଦଳ)ଙ୍କ ମନ୍ତ୍ରିମଣ୍ଡଳରେ ଇସ୍ପାତ ଓ ଖଣି ବିଭାଗର ମନ୍ତ୍ରୀ ହୋଇଥିଲେ। ବିଜୁବାବୁଙ୍କ ନେତୃତ୍ୱରେ ଓଡ଼ିଶା ଜନତା ଦଳ ବିଧାନସଭାରେ ୧୧୬ଟି ଆସନ ପାଇଥିଲା ଏବଂ ନୀଳମଣି ରାଉତରାୟଙ୍କ ନେତୃତ୍ୱରେ ଓଡ଼ିଶାରେ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା। ମୋରାରଜୀ ଦେଶାଇଙ୍କ ସରକାର ବେଶିଦିନ ତିଷ୍ଠି ପାରି ନ ଥିଲା। କାରଣ ଜନତାଦଳରେ ଥିବା ପୂର୍ବତନ ଜନସଂଘର ମନ୍ତ୍ରୀ ଓ ସାଂସଦମାନେ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ସଭ୍ୟପଦ ଛାଡ଼ିବେ ନାହିଁ ବୋଲି ଜିଦ୍ ଧରିବାରୁ ବିଜୁ ପଟ୍ଟନାୟକ ଏବଂ ଚରଣ ସିଂହଙ୍କ ନେତୃତ୍ୱରେ ଲୋକଦଳ ମୋରାରଜୀ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେଇଥିଲେ। ଫଳରେ ପ୍ରଥମ ଜନତାଦଳ ସରକାର ଭାଙ୍ଗିଯାଇଥିଲା। କଂଗ୍ରେସ ସମର୍ଥନରେ ଚରଣ ସିଂହଙ୍କ ନେତୃତ୍ୱରେ କେନ୍ଦ୍ରରେ ନୂଆ ସରକାର ଗଠିତ ହୋଇଥିଲା। କିନ୍ତୁ ଶେଷ ମୁହୂର୍ତ୍ତରେ କଂଗ୍ରେସ ସମର୍ଥନ ପ୍ରତ୍ୟାହାର କରିନେବାରୁ ଆସ୍ଥାଭୋଟର ସମ୍ମୁଖୀନ ହୋଇ ନ ପାରି ଚରଣ ସିଂହ ପ୍ରଧାନମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଦେଇଥିଲେ। ମୋରାରଜୀ ସରକାରରେ ୧୯୭୯ରୁ ୧୯୮୦ ପର୍ଯ୍ୟନ୍ତ ବିଜୁବାବୁ କେନ୍ଦ୍ରରେ ଖଣି, ଇସ୍ପାତ ଓ କୋଇଲା ମନ୍ତ୍ରୀ ହୋଇଥିଲେ। ଏହି ସମୟରେ ବିଜୁବାବୁଙ୍କ ଉଦ୍ୟମକ୍ରମେ ଓଡ଼ିଶାର କୋରାପୁଟ ଜିଲ୍ଲାର ଦାମନଯୋଡ଼ିଠାରେ ଆଲୁମିନିୟମ୍ ପ୍ରକଳ୍ପ 'ନାଲ୍‌କୋ' ଜନ୍ମ ନେଇଥିଲା ଏବଂ କେଉଁଝରର ସ୍ପଞ୍ଜ ଆଇରନ କାରଖାନା ଓ ମହାନଦୀ ବ୍ୟାରେଜର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା। ଏତଦ୍‌ବ୍ୟତୀତ ଇନ୍ଦ୍ରାବତୀ ଜଳବିଦ୍ୟୁତ ଯୋଜନା, କୁଆଁଖିଆ ନଦୀବନ୍ଧ ଯୋଜନା, ସମଲ ବ୍ୟାରେଜ ପ୍ରଭୃତି ଅନେକ ଜନହିତକର କାର୍ଯ୍ୟକ୍ରମ ଆରମ୍ଭ କରାଯାଇଥିଲା। ବିଜୁବାବୁଙ୍କର ଏହିସବୁ କାର୍ଯ୍ୟ ଦେଖିଲେ ସେ କୃଷକମାନଙ୍କ ହିତ ପାଇଁ ଜଳସେଚନ ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ ବୋଲି ଜଣାପଡ଼େ।

Digitized by srujanika@gmail.com

ବିଜୁବାବୁଙ୍କର ବଡ଼ ସ୍ୱପ୍ନ ଥିଲା ଓଡ଼ିଶାକୁ ସମଗ୍ର ଭାରତରେ ଏକ ବିକଶିତ ରାଜ୍ୟ ଭାବେ ଉପସ୍ଥାପନ କରିବା। ତାଙ୍କର ମହତ୍ତ୍ୱାକାଂକ୍ଷା ଓ ଦୂରଦୃଷ୍ଟି ପାଇଁ ସେ କେତେକାଂଶରେ ସଫଳ ହୋଇଥିଲେ ମଧ୍ୟ। ବିଜୁବାବୁଙ୍କର ଆଉ ଏକ ବଡ଼ ଗୁଣ ଥିଲା – ତାହା ହେଉଛି ତାଙ୍କର ନିର୍ଭୀକତା। ତାଙ୍କର ସବୁ କଥା ଓ କାର୍ଯ୍ୟରେ ସ୍ପଷ୍ଟବାଦିତା ଓ ଦୁଃସାହସିକତା ବାରି ହୋଇପଡୁଥିଲା। କୌଣସି ପରିସ୍ଥିତିରେ ବି ସେ ପରାଜୟ ସ୍ୱୀକାର କରିବାକୁ କାପୁରୁଷତା ବୋଲି ମଣୁଥିଲେ। ପ୍ରତିକୂଳ ପରିସ୍ଥିତିରେ ଗତିକରି କିପରି ସଫଳତା ପାଇବାକୁ ହୁଏ ତାହା କେବଳ ବିଜୁବାବୁଙ୍କଠାରେ ହିଁ ଦେଖିବାକୁ ମିଳେ।

୧୯୮୦ ଓ ୧୯୮୪ ମସିହା ଲୋକସଭା ନିର୍ବାଚନରେ ବିଜୁବାବୁ କେନ୍ଦ୍ରାପଡ଼ା ଆସନରୁ ଜନତା ଦଳ ପ୍ରାର୍ଥୀ ଭାବେ ନିର୍ବାଚିତ ହୋଇଥିଲେ। ୧୯୮୫ ମସିହାରେ ଓଡ଼ିଶା ବିଧାନସଭା ନିର୍ବାଚନରେ ବିଜୁବାବୁ ଜନତା ଦଳର ପ୍ରାର୍ଥୀ ଭାବେ ଭୁବନେଶ୍ୱର ନିର୍ବାଚନମଣ୍ଡଳୀରୁ ଜିତିଥିଲେ ମଧ୍ୟ ତାଙ୍କ ଦଳ କ୍ଷମତାକୁ ଆସିପାରି ନ ଥିଲା। କିନ୍ତୁ ସେ ୨୨ ମାର୍ଚ୍ଚ ୧୯୮୫ରୁ ୩ ମାର୍ଚ୍ଚ ୧୯୯୦ ପର୍ଯ୍ୟନ୍ତ ବିରୋଧୀ ଦଳର ନେତା ହେବା ସଙ୍ଗେ ସଙ୍ଗେ ପବ୍ଲିକ୍ ଆକାଉଣ୍ଟସ କମିଟିର ଚେୟାରମ୍ୟାନ ଭାବେ କାର୍ଯ୍ୟ କରିଥିଲେ। ସେତେବେଳେ କଂଗ୍ରେସ ସରକାର ବିରୁଦ୍ଧରେ ବହୁ ଦୁର୍ନୀତି ଓ ଭ୍ରଷ୍ଟାଚାରର ଅଭିଯୋଗମାନ ଆସିଥିଲା। ୧୯୯୦ ନିର୍ବାଚନ ପୂର୍ବରୁ କଟକ, ପୁରୀ ଓ ଖୋର୍ଦ୍ଧାରୁ ବିଜୁବାବୁଙ୍କ ନେତୃତ୍ୱକୁ ସମର୍ଥନ କରି ତିନୋଟି ବିରାଟ ପଟୁଆର ଆସି ଭୁବନେଶ୍ୱରଠାରେ ସମାବେଶରେ ଏକାଠି ହୋଇ 'ଓଡ଼ିଶା ବଞ୍ଚାଅ କଂଗ୍ରେସ ହଟାଅ' ଧ୍ୱନି ଦେଇ ରାଜ୍ୟରେ କଂଗ୍ରେସ ବିରୋଧୀ ମନୋଭାବକୁ ତୀବ୍ର କରିଥିଲେ ଏବଂ ତାହା ଲୋକମାନଙ୍କୁ ପ୍ରଭାବିତ କରିଥିଲା। ୧୯୯୦ ବିଧାନସଭା ନିର୍ବାଚନରେ ଜନତା ଦଳ ୧୪୭ଟି ଆସନରୁ ୧୨୩ଟି ଆସନ ଦଖଲ କରିଥିଲା ଏବଂ ବିଜୁବାବୁ ବିଧାନସଭାକୁ ନିର୍ବାଚିତ ହୋଇ ତାଙ୍କ ଜନ୍ମଦିନ ମାର୍ଚ୍ଚ ୫ ତାରିଖରେ ଦ୍ୱିତୀୟ ଥର ପାଇଁ ମୁଖ୍ୟମନ୍ତ୍ରୀ ପଦରେ ଆସୀନ ହୋଇଥିଲେ।

ରାଜନୈତିକ ନିଷ୍ପତ୍ତି ନେବାରେ ବିଜୁବାବୁ ଏକ ଅତୁଳନୀୟ ବ୍ୟକ୍ତିତ୍ୱ। ତାଙ୍କର ଦ୍ୱିତୀୟ ପାଳି ମୁଖ୍ୟମନ୍ତ୍ରୀତ୍ୱ ଅର୍ଥାତ୍ ୧୯୯୦ରୁ ୧୯୯୫ ମସିହା ମଧ୍ୟରେ ସେ ଅନେକଗୁଡ଼ିଏ ଯୁଗାନ୍ତକାରୀ ନିଷ୍ପତ୍ତି ନେବାରେ ସଫଳ ହୋଇଥିଲେ। ତନ୍ମଧ୍ୟରୁ ଓଡ଼ିଶାରେ ୧୩ଟି ଜିଲ୍ଲାରୁ ୩୦ଟି ଜିଲ୍ଲାକୁ ବୃଦ୍ଧି କରିବା ତାଙ୍କର ଏକ ଐତିହାସିକ

Digitized by srujanika@gmail.com

ପଦକ୍ଷେପ ଥିଲା । ୧୬ଗୋଟି ନୂତନ ଜିଲ୍ଲା ଗଠନ ହୋଇସାରିବା ପରେ ସର୍ବଶେଷ ଜିଲ୍ଲା ଭାବରେ ଜଗତସିଂହପୁର ଜିଲ୍ଲା ଗଠିତ ହୋଇଥିଲା । ଜଗତସିଂହପୁରକୁ ଏକ ସ୍ୱତନ୍ତ୍ର ଜିଲ୍ଲା ନ କରି ପୂର୍ବବତ୍ କଟକ ଜିଲ୍ଲା ସହିତ ସଂଯୁକ୍ତ କରି ରଖିବା ସପକ୍ଷରେ ସେତେବେଳେ ଅନେକ ନେତୃସ୍ଥାନୀୟ ବ୍ୟକ୍ତି ଯୁକ୍ତି ବାଢ଼ିଥିଲେ ।

ତେବେ ସେତେବେଳେ ବିଜୁବାବୁଙ୍କ ଜଣେ ସର୍ବକାଳୀନ ପ୍ରଶଂସକ ଶ୍ରୀ ବିଷ୍ଣୁ ଦାସ ଜଗତସିଂହପୁର ଏକ ପୁରାତନ ଐତିହ୍ୟ ଓ ସଂସ୍କୃତିସମ୍ପନ୍ନ ସମୃଦ୍ଧ ଅଞ୍ଚଳ ହୋଇଥିବା ଦୃଷ୍ଟିରୁ ଜଗତସିଂହପୁରକୁ ଏକ ସ୍ୱତନ୍ତ୍ର ଜିଲ୍ଲା କରାଯିବାର ଆବଶ୍ୟକତା ରହିଛି ବୋଲି ତାଙ୍କ ନିକଟରେ ଦୃଢ଼ ଯୁକ୍ତି ଉପସ୍ଥାପନ କରିଥିଲେ । ଶେଷରେ ଜଗତସିଂହପୁର ୩୦ତମ ଜିଲ୍ଲା ଭାବରେ ଘୋଷିତ ହୋଇଥିଲା ଏବଂ ୧୯୯୩ ମସିହା ଏପ୍ରିଲ ୩ ତାରିଖ ଦିନ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ଏହି ଜିଲ୍ଲାର ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଏଠାରେ କହିବା ପ୍ରାସଙ୍ଗିକ ହେବ ଯେ ବିଜୁ ପଟ୍ଟନାୟକଙ୍କଠାରୁ ବହୁନେତା ସୁଦିନରେ ସୁବିଧା ସୁଯୋଗ ହାସଲ କରି ତାଙ୍କର ଅସୁବିଧା ସମୟରେ ତାଙ୍କ ସାଙ୍ଗ ଛାଡ଼ିଦେଇଛନ୍ତି । କିନ୍ତୁ ବିଷ୍ଣୁ ଦାସ 'ଉତ୍କଳ କଂଗ୍ରେସ' ଗଠନ ବେଳେ ବାଲିଚନ୍ଦ୍ରପୁରଠାରେ ଅନୁଷ୍ଠିତ ହୋଇଥିବା ଏକ କର୍ମୀ ଶିବିରରେ ତିନିଦିନ ରହଣି ସମୟରେ ବିଜୁ ପଟ୍ଟନାୟକଙ୍କ ସହିତ ତାଙ୍କର ପ୍ରଥମ ସାକ୍ଷାତ ପରଠାରୁ ତାଙ୍କ ଦ୍ୱାରା ସେ ଏଭଳି ଭାବରେ ପ୍ରଭାବିତ ହୋଇଥିଲେ ଯେ ସେହିଦିନୁ ବିଜୁ ପଟ୍ଟନାୟକଙ୍କର ସମସ୍ତ କାର୍ଯ୍ୟକ୍ରମରେ ସେ ଯୋଗ ଦେଉଥିଲେ । ଅଭାବ, ଅସୁବିଧାର ସମ୍ମୁଖୀନ ହୋଇଥିଲେ ମଧ୍ୟ ସେ କେବେ ବି ବିଜୁ ପଟ୍ଟନାୟକଙ୍କ ସାନ୍ନିଧ ଛାଡ଼ି ନଥିଲେ । ୧୯୮୫ ମସିହାରେ ବିଜୁବାବୁ ବିଷ୍ଣୁ ଦାସଙ୍କୁ ଜଗତସିଂହପୁର ନିର୍ବାଚନମଣ୍ଡଳୀରୁ ଏମ୍.ଏଲ୍.ଏ. ପ୍ରାର୍ଥୀ ଭାବେ ଲଢ଼ିବାକୁ ସୁଯୋଗ ଦେଇଥିଲେ ମଧ୍ୟ ସେ ନିର୍ବାଚନ ଜିତିପାରି ନଥିଲେ । ୧୯୯୦ ମସିହାରେ ସେ ଜନତା ଦଳର ପ୍ରାର୍ଥୀ ଭାବେ ପ୍ରଥମେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ ଏବଂ ପରେ ଲଗାତର ଭାବେ ୪ଥର ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ବିଜୁବାବୁଙ୍କ ଦେହାନ୍ତ ପରେ ବିଜୁ ଜନତା ଦଳର ସଭାପତି ନବୀନ ପଟ୍ଟନାୟକଙ୍କର ସେ ଅତ୍ୟନ୍ତ ଅନୁଗତ । ୨୦୧୪ ମସିହାରେ ସେ ବିଧାନସଭା ନିର୍ବାଚନରେ ପରାଜୟ ବରଣ କରିଥିଲେ ମଧ୍ୟ ଆଜି ବି ସେ ଜଗତସିଂହପୁର ଜିଲ୍ଲାର ଜଣେ ଲୋକପ୍ରିୟ ନେତା ଓ ସେଠାକାର ଲୋକଙ୍କର ସୁଖଦୁଃଖର ସାଥୀ ।

Digitized by srujanika@gmail.com

ଜିଲ୍ଲାର ସଂଖ୍ୟା ବୃଦ୍ଧି କରିବା ମୂଳରେ ବିଜୁବାବୁଙ୍କର ଏକମାତ୍ର ଉଦ୍ଦେଶ୍ୟ ଥିଲା କ୍ଷମତାର ବିକେନ୍ଦ୍ରୀକରଣ । ଏହା ପ୍ରଶାସନିକ ସଂସ୍କାର କ୍ଷେତ୍ରରେ ଏକ ସୁଦୂରପ୍ରସାରୀ ପଦକ୍ଷେପ ଥିଲା । ଜିଲ୍ଲା ଗଠନ ପରେ ପରେ ବିଜୁବାବୁ ତ୍ରିସ୍ତରୀୟ ପଞ୍ଚାୟତରାଜ ବ୍ୟବସ୍ଥା ପ୍ରଚଳନ କରିଥିଲେ । ଏସବୁରି ମୂଳରେ ତାଙ୍କର ଏକମାତ୍ର ଲକ୍ଷ୍ୟ ଥିଲା ଲୋକମାନଙ୍କ ପାଖରେ ସରକାରୀ ସେବାକୁ ପହଞ୍ଚାଇବା । ମାତ୍ର ଅନେକ କ୍ଷେତ୍ରରେ ତାଙ୍କର ଲକ୍ଷ୍ୟ ପୂରଣ ହୋଇନାହିଁ । ପ୍ରଶାସନ ଏବେବି ଲୋକଙ୍କ ପାଖରେ ଅପହଞ୍ଚ ରହିଛି । ବହୁ ଲୋକପ୍ରତିନିଧି ଥରେ ନିର୍ବାଚିତ ହେଲାପରେ ଲୋକଙ୍କ ସେବାକୁ ଗୁରୁତ୍ୱ ଦେଉ ନାହାଁନ୍ତି । ସରକାରୀ କର୍ମଚାରୀମାନେ ମଧ୍ୟ ନିଜର ସୁରକ୍ଷାକୁ ଅଗ୍ରାଧିକାର ଦେଇ ଅନ୍ୟାୟର ପ୍ରତିରୋଧ ନ କରି ଗରିବ ଜନସାଧାରଣଙ୍କୁ ନ୍ୟାୟ ଦେବାରେ ବିଫଳ ହେଉଛନ୍ତି । ଦୁନିଆରେ ଧନୀ ଓ ଦରିଦ୍ର ଦୁଇଟି ଶ୍ରେଣୀ ଲୋକ ବାସ କରନ୍ତି । ଧନୀ ଲୋକ ଖୀରି-ପୁରୀରେ ଭାସୁଥିଲାବେଳେ ଦରିଦ୍ର ଲୋକମାନଙ୍କୁ ଓଳିଏ ଦାନା ମଧ୍ୟ ମିଳେନାହିଁ । ବିଜୁବାବୁ ଏହି ଦରିଦ୍ର ଲୋକଙ୍କର ଅବସ୍ଥାରେ ସ୍ୱଚ୍ଛଳତା ଆଣିବା ପାଇଁ ସାରାଜୀବନ ଉଦ୍ୟମ କରିଥିଲେ । ସେ କହୁଥିଲେ ଦରିଦ୍ରର କୌଣସି ଜାତି ନାହିଁ । ସେମାନଙ୍କ ଖାଇବା, ରହିବା ଓ ପିନ୍ଧିବାର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବା ତାଙ୍କ ଜୀବନର ଲକ୍ଷ୍ୟ ଥିଲା । ଦ୍ୱିତୀୟବାର ମୁଖ୍ୟମନ୍ତ୍ରୀତ୍ୱ ସମୟରେ ତାଙ୍କ କାର୍ଯ୍ୟ ଦ୍ୱାରା ସେ ଏହାକୁ ପ୍ରମାଣିତ କରିଥିଲେ । ଦିନମଜୁରିଆଙ୍କ ପାଇଁ ସର୍ବନିମ୍ନ ମଜୁରି ବୃଦ୍ଧି ବିଜୁ ପଟ୍ଟନାୟକଙ୍କର ଏକ ସମୟୋପଯୋଗୀ ନିଷ୍ପତ୍ତି ଥିଲା । ସେ ସମୟରେ ଦିନମଜୁରିଆଙ୍କ ପାଇଁ ସର୍ବନିମ୍ନ ମଜୁରି ଏଗାର ଟଙ୍କା ଥିଲା । ଏହି ମଜୁରି ସେମାନଙ୍କ ପରିବାରର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବା ସମ୍ଭବପର ନୁହେଁ ବୋଲି ସେ ଅନୁଭବ କରିଥିଲେ । ଏପରି ଏକ ସ୍ଥିତି ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ବ୍ୟଥିତ କରିଥିଲା । ପ୍ରଚଳିତ ସର୍ବନିମ୍ନ ମଜୁରି ବୃଦ୍ଧି କରିବା ପାଇଁ ସେ ମନେ ମନେ ସ୍ଥିର କଲେ ।

ରାଜ୍ୟ ବିଧାନସଭାର ଅଧିବେଶନ ଚାଲିଥାଏ । ଗୃହରେ ସାଧାରଣ ବାତାବରଣ ଥିଲା । କୁଲିମୂଲିଆଙ୍କ ମଜୁରି ବଢ଼ାଇବା ପାଇଁ ବିରୋଧୀ କିମ୍ବା ସରକାରୀ ଦଳର ଦାବୀ ହୋଇ ନ ଥିଲା । ହଠାତ୍ ୧୯୯୦ ମସିହା ମାର୍ଚ୍ଚ ୧୯ ତାରିଖରେ ମୁଖ୍ୟମନ୍ତ୍ରୀ ନିଜ ଆସନରେ ଛିଡ଼ା ହୋଇ ଦୈନିକ ମଜୁରି ୧୧ ଟଙ୍କାରୁ ୨୫ ଟଙ୍କାକୁ ବୃଦ୍ଧି କରାଗଲା ବୋଲି ଘୋଷଣା କରିଦେଲେ । ଏଥିରେ ମନ୍ତ୍ରୀ ଓ ସରକାରୀ ଦଳର ବିଧାୟକମାନେ ହତବାକ୍ ହୋଇଯାଇଥିଲେ । ଅନେକ ଭାବିଲେ ବୋଧହୁଏ ମୁଖ୍ୟମନ୍ତ୍ରୀ

Digitized by srujanika@gmail.com

ସର୍ବନିମ୍ନ ମଜୁରି ଏଗାର ଟଙ୍କାରୁ ପନ୍ଦର ଟଙ୍କାକୁ ବୃଦ୍ଧି କରିବାକୁ ଚାହୁଁଥିଲେ, ମାତ୍ର ଭୁଲକ୍ରମେ ପଚିଶ ଟଙ୍କା ବୋଲି କହିଦେଲେ । ହେଲେ ସେକଥା ମୁଖ୍ୟମନ୍ତ୍ରୀଙ୍କ ପାଖରୁ ପଚାରି ବୁଝିବା ପାଇଁ କାହାରି ସାହସ ନ ଥିଲା । ସେଥିପାଇଁ ସେମାନେ ସାମ୍ବାଦିକମାନଙ୍କର ସାହାଯ୍ୟ ଲୋଡ଼ିଥିଲେ ।

ବିଧାନସଭା କକ୍ଷରୁ ମୁଖ୍ୟମନ୍ତ୍ରୀ ବାହାରି ତାଙ୍କ ବିଶ୍ରାମ କକ୍ଷକୁ ଯିବା ସମୟରେ ସାମ୍ବାଦିକମାନେ ତାଙ୍କ ପଛେପଛେ ଯାଇଥିଲେ । ସେମାନେ କିଛି ପଚାରିବା ପୂର୍ବରୁ ମୁଖ୍ୟମନ୍ତ୍ରୀ କହିଲେ, "କିରେ, ମଜୁରି ବଢ଼ିବା କଥା ସବୁ ଶୁଣିଲ ନା ନାହିଁ ?" ଯେତେବେଳେ ପଚରାଗଲା, "ଆଜ୍ଞା କ'ଣ ମଜୁରି ଏଣିକି ପଚିଶ ଟଙ୍କା ହେବ ?" ତାଙ୍କର ତତ୍‌କ୍ଷଣାତ୍ ଉତ୍ତର ଥିଲା, "ହେବ କ'ଣ ? ହେଲା ବୋଲି ଜାଣ । ମୁଁ ବିଧାନସଭାରେ ମଜୁରି ବୃଦ୍ଧି କଥା ଘୋଷଣା କରିବା ପରଠାରୁ ନୂତନ ମଜୁରି ଲାଗୁ ହୋଇଗଲାଣି ।" ହଠାତ୍ ମଜୁରି ବୃଦ୍ଧି ପାଇଁ କାହିଁକି ନିଷ୍ପତ୍ତି ନେଲେ ବୋଲି ପଚାରିବାରୁ ଶ୍ରୀ ପଟ୍ଟନାୟକ କହିଲେ, "ଏହା ତାଙ୍କର ଅଚାନକ ନିଷ୍ପତ୍ତି ନୁହେଁ । ସେ ଥରେ ବଲାଙ୍ଗିରରୁ କାର୍ ଯୋଗେ ଭୁବନେଶ୍ୱର ଫେରୁଥିବା ସମୟରେ ଜଣେ ଆଦିବାସୀ ବୁଢ଼ୀ ତାଙ୍କୁ ବାଟରେ ଅଟକାଇ ପଚାରିଥିଲା, "ବିଜୁ ପଟ୍ଟନାୟକ ରାଇଜ ଶାସନ କରୁଛି, ହେଲେ ଆମ ପାଇଁ କ'ଣ କରୁଛି ? ଆମକୁ ଦିନକୁ ପାଞ୍ଚ ଛଅ ଟଙ୍କା ମୂଲ ମିଳୁଛି, ସେ ପୁଣି ସବୁଦିନେ ନାହିଁ । ସେଥିରେ ଆମେ ଖାଇବୁ କ'ଣ ଆଉ ପିନ୍ଧିବୁ କ'ଣ ? ସେଦିନ ସେ ବୁଢ଼ୀର ଆକୁଳ ନିବେଦନ ମୋ ହୃଦୟକୁ ସ୍ପର୍ଶ କରିଥିଲା । ମୁଁ ସେଇଦିନ ମଜୁରି ବୃଦ୍ଧି ନିମନ୍ତେ ନିଷ୍ପତ୍ତି କରି ସାରିଥିଲି ଏବଂ ଆଜି କେବଳ ଘୋଷଣା କଲି ।" ('ଓଡ଼ିଶା ରାଜନୀତିର ଗୋପନ କଥା', ବସନ୍ତ ଦାସ, ପୃ.୩୧୯) ଏହି ଘଟଣାରୁ ବିଜୁ ପଟ୍ଟନାୟକଙ୍କ ହୃଦୟରେ ଦରିଦ୍ର, ଅବହେଳିତ ଓ ଅସହାୟଙ୍କ ପ୍ରତି କେତେ ଦରଦ ଥିଲା ତା'ର ସୂଚନା ମିଳେ ।

କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ଚାଷପାଇଁ ଆବଶ୍ୟକ ପଡୁଥିବା ବିହନ, ସାର ଓ ଅନ୍ୟାନ୍ୟ ସରଞ୍ଜାମ କିଣିବାକୁ ଆର୍ଥିକ ସାହାଯ୍ୟ ଯୋଗାଇଦେବାକୁ ବିଜୁବାବୁ ଏକ ଉପାଦେୟ ଯୋଜନା ପ୍ରଚଳନ କରିଥିଲେ । ସମସ୍ତ ରାଜନୈତିକ ଦଳ ଦରିଦ୍ର ଲୋକଙ୍କ ପାଇଁ ବାସଗୃହର ଆବଶ୍ୟକତା ରହିଛି ବୋଲି କଥାରେ କହୁଥିବାବେଳେ ବିଜୁବାବୁ ଦରିଦ୍ର ଲୋକଙ୍କ ପାଇଁ 'କଳିଙ୍ଗ କୁଟୀର' ଯୋଜନାର ପ୍ରବର୍ତ୍ତନ କରାଇଥିଲେ । ୧୩ ବର୍ଷ ପରେ ସେ ପଞ୍ଚାୟତ ଓ ମ୍ୟୁନିସିପାଲିଟି ନିର୍ବାଚନ କରାଇ

Digitized by srujanika@gmail.com

ଏଥିରେ ମହିଳାମାନଙ୍କ ପାଇଁ ୩୩ ଭାଗ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା କରିଥିଲେ। ମହିଳାଙ୍କ ନିଯୁକ୍ତି କ୍ଷେତ୍ରରେ ବୟସସୀମା କୋହଳ କରାଯାଇଥିଲା। ବୟସ ନିର୍ବିଶେଷରେ ବିଧବାମାନେ ପେନ୍‌ସନ୍ ପାଇବାକୁ ହକଦାର ହୋଇଥିଲେ। ବୃଦ୍ଧ, ଅକ୍ଷମ ଓ ବିଧବା ଭତ୍ତା ୧ ୦ ୦ ଟଙ୍କାକୁ ବୃଦ୍ଧି କରାଯାଇଥିଲା। ବିଜୁବାବୁ ରାଜ୍ୟରେ ମହିଳା ବିକାଶ ନିଗମ, ମହିଳା ବ୍ୟାଙ୍କ ଓ ରାଜ୍ୟ ମହିଳା କମିଶନ ପ୍ରତିଷ୍ଠା କରିଥିଲେ।

ଏ ରାଜ୍ୟରେ ୧ ୯ ୦ ୫ ମସିହାରେ ପ୍ରଥମ ତାପଜ ବିଦ୍ୟୁତ ଉତ୍ପାଦନ ( ୧ ୨ କିଲୋୱାଟ୍) ଦେବଗଡ଼ ରାଜାଙ୍କ ଦ୍ୱାରା କରାଯାଇଥିଲା। ୧ ୯ ୬ ୧ ମସିହାରେ ବିଜୁବାବୁ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବା ସମୟରେ ଓଡ଼ିଶାରେ ବିଦ୍ୟୁତ୍ ଅଭାବରୁ କଳକାରଖାନାଗୁଡ଼ିକରୁ ଉତ୍ପାଦନ ଠିକ୍ ଭାବରେ ହୋଇପାରୁ ନ ଥିଲା। ଗାଁଗହଳିର ସାଧାରଣ ଲୋକେ ଓ ଚାଷୀମାନେ ଆବଶ୍ୟକତା ଅନୁସାରେ ବିଦ୍ୟୁତଶକ୍ତି ପାଇପାରୁ ନ ଥିଲେ। ବିଜୁବାବୁଙ୍କର ସବୁବେଳେ ବିଶ୍ୱାସ ଥିଲା, ଯେଉଁ ରାଜ୍ୟ ଶକ୍ତି କ୍ଷେତ୍ରରେ ସ୍ୱୟଂସମ୍ପୂର୍ଣ୍ଣ ନୁହେଁ ସେ ରାଜ୍ୟର ଅର୍ଥନୈତିକ ପ୍ରଗତି, ସାମାଜିକ ଉନ୍ନତି ସମ୍ଭବପର ନୁହେଁ। ତେଣୁ ବିଜୁବାବୁ ବାଲିମେଳା ଜଳବିଦ୍ୟୁତ କେନ୍ଦ୍ର ପ୍ରତିଷ୍ଠା ଓ ତାଳଚେର ତାପଜବିଦ୍ୟୁତ କେନ୍ଦ୍ର ପ୍ରତିଷ୍ଠା କରି ରାଜ୍ୟର ବିଦ୍ୟୁତ ସଙ୍କଟକୁ କେତେକାଂଶରେ ଦୂର କରିଥିଲେ। ୧ ୯ ୭ ୭ ମସିହାରେ କେନ୍ଦ୍ରରେ ଖଣି ଓ ଇସ୍ପାତ ବିଭାଗର ମନ୍ତ୍ରୀ ଥିବାବେଳେ ବିଜୁବାବୁଙ୍କ ପ୍ରଚେଷ୍ଟାରେ ଇନ୍ଦ୍ରାବତୀ ଜଳବିଦ୍ୟୁତ ପ୍ରକଳ୍ପର ଶୁଭ ଦିଆଯାଇଥିଲା। ଏହା ୧ ୯ ୮ ୫ ମସିହାରେ ସମ୍ପୂର୍ଣ୍ଣ ହେବାକଥା, କିନ୍ତୁ ତାହା ହୋଇପାରିନଥିଲା। ଏ ସମ୍ପର୍କରେ ପୂର୍ବତନ ଶକ୍ତିମନ୍ତ୍ରୀ କାଳିନ୍ଦୀ ବେହେରା 'କଳିଙ୍ଗର ବରପୁତ୍ର' ପୁସ୍ତକରେ ଉଲ୍ଲେଖ କରିଛନ୍ତି ଯେ, " ୧ ୯ ୯ ୦ ମସିହାରେ ବିଜୁବାବୁ ଦ୍ୱିତୀୟଥର ପାଇଁ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିବା ପରେପରେ ଇନ୍ଦ୍ରାବତୀ ପାଇଁ ବିଶେଷ ଧ୍ୟାନ ଦେଲେ। x x x ପୁରୁଣା ପ୍ରକଳ୍ପ ସହ ବହୁ ନୂଆ ବିଦ୍ୟୁତ ପ୍ରକଳ୍ପ ପ୍ରତିଷ୍ଠା ପାଇଁ ସେ ସର୍ଭେ କାର୍ଯ୍ୟ ନିଜ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଆରମ୍ଭ କରିଥିଲେ।"

ପଶ୍ଚିମବଙ୍ଗର ପୂର୍ବତନ ମୁଖ୍ୟମନ୍ତ୍ରୀ ସିଦ୍ଧାର୍ଥ ଶଙ୍କର ରାୟ ବିଜୁବାବୁଙ୍କର ବ୍ୟକ୍ତିତ୍ୱରେ ବହୁଭାବରେ ପ୍ରଭାବିତ ହୋଇଥିଲେ। ସେ ଦୁଃଖର ସହିତ ମନ୍ତବ୍ୟ ଦେଇଥିଲେ ଯେ, ଓଡ଼ିଶା ସରକାର ଯଦି ବିଜୁବାବୁଙ୍କ ବିରୁଦ୍ଧରେ ଭିଜିଲାନ୍ସ ଲଗାଇ ମକଦ୍ଦମା କରି ନ ଥାନ୍ତେ ତେବେ ସେ ନିଶ୍ଚିତ ଭାବରେ ଭାରତର ପ୍ରଧାନମନ୍ତ୍ରୀ

Digitized by srujanika@gmail.com

ହୋଇପାରିଥାନ୍ତେ। କେନ୍ଦ୍ରରେ ଯେତେବେଳେ ରାଜନୈତିକ ହଟଚମଟ ଅଥବା ସଂକଟ ଦେଖାଯାଉଥିଲା, ସଙ୍ଗେ ସଙ୍ଗେ ତା'ର ସମାଧାନ ପାଇଁ ବିଜୁବାବୁଙ୍କୁ ଖୋଜା ପଡୁଥିଲା। ସେ ଥିଲେ କ୍ରାଇସିସ୍ ମ୍ୟାନେଜର। ଗାନ୍ଧିଜୀ କଂଗ୍ରେସ ଦଳ ସହିତ ସଂଶ୍ଳିଷ୍ଟ ହୋଇ ଦେଶର ସ୍ୱାଧୀନତା ପାଇଁ ସଂଗ୍ରାମ ଚଳାଇଥିଲେ। ବିଜୁବାବୁ କୌଣସି ଏକ ନିର୍ଦ୍ଦିଷ୍ଟ ରାଜନୈତିକ ଦଳ ମଧ୍ୟରେ ସୀମିତ ନ ଥିଲେ। କିନ୍ତୁ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ନିଜ ନିରାପତ୍ତାକୁ ବିପନ୍ନ କରି ବହୁ ସାହାଯ୍ୟ କରିଥିଲେ। ୧୯୪୬ ମସିହାରେ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଦେଶମାତୃକାର ସେବାପାଇଁ ସେ କଂଗ୍ରେସରେ ଯୋଗ ଦେଇଥିଲେ। ମାତ୍ର ୧୯୬୯ରେ କଂଗ୍ରେସର ବିଭାଜନ ପରେ ଇନ୍ଦିରା ଗାନ୍ଧୀଙ୍କର ଏକଛତ୍ରବାଦୀ ମନୋବୃତ୍ତି ବିଜୁବାବୁଙ୍କୁ ଅସହ୍ୟ ହେବାରୁ ସେ କଂଗ୍ରେସ ଦଳ ତ୍ୟାଗ କରି ଦୀର୍ଘ ୨୭ବର୍ଷ କାଳ ଅଣ-କଂଗ୍ରେସ ରାଜନୀତିରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ। ତାମିଲନାଡୁ ଓ ମହାରାଷ୍ଟ୍ରର ରାଜ୍ୟପାଳ ଆସନ ଅଳଙ୍କୃତ କରିଥିବା ପି.ସି. ଆଲେକଜାଣ୍ଡାର ତାଙ୍କ ଲିଖିତ ପୁସ୍ତକ *Through the Corridors of Power- An Inside Story*ରେ ବିଜୁବାବୁ ଜାତୀୟ ରାଜନୀତିରେ ଘଡ଼ିସନ୍ଧି ମୁହୂର୍ତ୍ତରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି କଂଗ୍ରେସ ବିରୋଧୀ ଦଳଗୁଡ଼ିକୁ ଏକଜୁଟ କରିବାରେ ସମର୍ଥ ହେଉଥିଲେ ବୋଲି ବର୍ଣ୍ଣନା କରିଛନ୍ତି।

ରାଜନୈତିକ ନିଷ୍ପତ୍ତି ନେବାବେଳେ ବିଜୁବାବୁ ସବୁବେଳେ ସହଯୋଗୀମାନଙ୍କ କଥାକୁ ଗୁରୁତ୍ୱ ଦେଉଥିଲେ। ଏମିତିକି ନିଜ ମତକୁ ଉପେକ୍ଷା କରି ବେଳେବେଳେ ସେ ସହଯୋଗୀଙ୍କ ମତକୁ ଅଗ୍ରାଧିକାର ଦେବାକୁ ପଛାଉ ନ ଥିଲେ। ଗଣତନ୍ତ୍ର ଉପରେ ଅଗାଧ ବିଶ୍ୱାସ ରଖିଥିବା ବିଜୁବାବୁଙ୍କର ଆଉ ଏକ ମହାନ ଗୁଣ ଥିଲା ପରାଜୟକୁ ସ୍ୱୀକାର କରିନେବାର ସାହସିକତା। ରାଜନୀତିର ମଇଦାନରେ ସେ ଯେତେଥର ହାରିଛନ୍ତି, ସବୁଥର ସେ ପରାଜୟକୁ ସ୍ୱୀକାର କରିନେଇଛନ୍ତି। କେବେ କାହାରି ମୁଣ୍ଡରେ ଅଠା ବୋଳି ନାହାନ୍ତି। ତେବେ ବଡ଼କଥାଟି ହେଉଛି ପରାଜୟ ଗ୍ଳାନିରେ ସେ କେବେ ଭାଙ୍ଗି ପଡୁ ନ ଥିଲେ। ସେ କହୁଥିଲେ, "ମୁଁ ରାଜନୀତି କରିପାରିଲି ନାହିଁ। ଆଜି ପର୍ଯ୍ୟନ୍ତ ସେବା କରି ଚାଲିଛି। ମୋ ସରଳତାର ସୁଯୋଗ ସମସ୍ତେ ନେଇଛନ୍ତି।"

ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀ ହେବାପରେ ବିଜୁ ପଟ୍ଟନାୟକ ହୃଦୟଙ୍ଗମ କରିପାରିଥିଲେ ଯେ କେନ୍ଦ୍ର ସରକାର ଓଡ଼ିଶାର ବିକାଶ ପାଇଁ ବାଧା ସୃଷ୍ଟି କରୁଛନ୍ତି। ଗୋଟିଏ ସମନ୍ୱିତ ଇସ୍ପାତ କାରଖାନା, ରେଳବାଇ ପ୍ରକଳ୍ପ ଓ ପାରାଦ୍ୱୀପ ବନ୍ଦରର

Digitized by srujanika@gmail.com

ଉନ୍ନତି ପାଇଁ ପ୍ରସ୍ତାବଗୁଡ଼ିକୁ କେନ୍ଦ୍ର ବିନା କାରଣରେ ମଞ୍ଜୁରୀ ଦେଉ ନଥିବାରୁ ବିଜୁବାବୁ ମର୍ମାହତ ହେଉଥିଲେ। ରାଜ୍ୟଗୁଡ଼ିକୁ ଅର୍ଥନୈତିକ ସ୍ୱାଧୀନତା ଦେବା ସପକ୍ଷରେ ସେ ଥିଲେ ମୁଖ୍ୟ ପ୍ରବକ୍ତା। ଓଡ଼ିଶାକୁ ଅର୍ଥନୈତିକ ସ୍ୱାତନ୍ତ୍ର୍ୟ ପ୍ରଦାନ କରିବାକୁ ସେ କେନ୍ଦ୍ରକୁ ବାରମ୍ବାର ଅନୁରୋଧ କରିଥିଲେ। ସେଥିରେ କୃତକାର୍ଯ୍ୟ ନ ହେବାରୁ କେନ୍ଦ୍ରର ଓଡ଼ିଶା ପ୍ରତି ଏଭଳି ପକ୍ଷପାତୀ ମନୋଭାବ ଗଣତନ୍ତ୍ରର ସଂଘୀୟ ବ୍ୟବସ୍ଥାକୁ ବିପଦାପନ୍ନ କରୁଛି ବୋଲି ସେ କେନ୍ଦ୍ରକୁ ସତର୍କ କରାଇ ଦେଇଥିଲେ। ଏହା ଥିଲା ଦେଶଭକ୍ତ ବିଜୁବାବୁଙ୍କର ଓଡ଼ିଶା ପ୍ରତି ଗଭୀର ଶ୍ରଦ୍ଧାର ନିଦର୍ଶନ।

୧୯୯୫ ମସିହା ମାର୍ଚ୍ଚ ୭ ଓ ୯ ତାରିଖ ଦିନ ରାଜ୍ୟରେ ସାଧାରଣ ନିର୍ବାଚନ ଅନୁଷ୍ଠିତ ହୋଇଥିଲା। ଏହି ନିର୍ବାଚନରେ ବିଜୁ ପଟ୍ଟନାୟକ ଭୁବନେଶ୍ୱର ନିର୍ବାଚନମଣ୍ଡଳୀରୁ ଶେଷଥର ପାଇଁ ଓଡ଼ିଶା ବିଧାନସଭାକୁ ବିପୁଳ ଭୋଟରେ ନିର୍ବାଚିତ ହୋଇଥିଲେ ଏବଂ ଜନତା ଦଳ ୪୬ଟି ଆସନରେ ବିଜୟୀ ହୋଇ ବିଧାନସଭାରେ ବିରୋଧୀ ଦଳର ମାନ୍ୟତା ପାଇଥିଲା। ୧୯୯୫ ମାର୍ଚ୍ଚ ୧୩ ତାରିଖ ଦିନ ବିଜୁ ପଟ୍ଟନାୟକ ଜନତା ବିଧାୟକ ଦଳର ନେତା ହେବା ସହିତ ବିଧାନସଭାରେ ବିରୋଧୀ ଦଳର ନେତା ଭାବେ ଆସୀନ ହୋଇଥିଲେ। ଓଡ଼ିଶାରେ ସେ ବିଧାନସଭାରେ ଚାରିଥର ବିରୋଧୀ ଦଳର ନେତା ଭାବେ କାର୍ଯ୍ୟ କରିଛନ୍ତି। ୨୩ ମାର୍ଚ୍ଚ ୧୯୯୫ରୁ ୨୦ ମେ ୧୯୯୬ ପର୍ଯ୍ୟନ୍ତ ଏକାଦଶ ବିଧାନସଭାରେ ବିରୋଧୀଦଳର ନେତା ରହି ସେ ଓଡ଼ିଶାର ଉନ୍ନତି ପାଇଁ ବିଭିନ୍ନ ଆଲୋଚନାରେ ଅଂଶଗ୍ରହଣ କରି ଯାହାସବୁ କହିଛନ୍ତି ତାହା ତାଙ୍କର ରାଜ୍ୟବାସୀଙ୍କ ପ୍ରତି ଥିବା ପ୍ରୀତିର ଜ୍ୱଳନ୍ତ ଉଦାହରଣ।

୧୪ ମାର୍ଚ୍ଚ ୧୯୯୬ରେ ବିଜୁବାବୁ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ କଂଗ୍ରେସ ସରକାର ତାଙ୍କ ବିରୁଦ୍ଧରେ ଆଗତ କରିଥିବା ଅଭିସନ୍ଧିମୂଳକ ଦୁର୍ନୀତି ମାମଲାର କଠୋର ସମାଲୋଚନା କରିଥିଲେ। ସେହିଦିନ ବିଧାନସଭାରେ ସେ ତାଙ୍କ ଶେଷ ଭାଷଣରେ କହିଥିଲେ, "ଦୁର୍ନୀତି ଆରୋପ ବିଜୁ ପଟ୍ଟନାୟକ ପାଇଁ କୌଣସି ନୂଆ କଥା ନୁହେଁ। ପୂର୍ବରୁ ଖାନ୍ନା କମିଶନ, ସି.ବି.ଆଇ. ତଦନ୍ତ ଆଦି ଅନେକ କମିଶନଙ୍କୁ ମୁଁ ସାମ୍ନା କରିଛି। ଏପରିକି ଇନ୍ଦିରା ଗାନ୍ଧୀଙ୍କ ଉପରେ ଆକ୍ରମଣ ଘଟଣାରେ ମୋ ବିରୁଦ୍ଧରେ ୬୦ଟି ଫୌଜଦାରୀ ମୋକଦ୍ଦମା ସହିତ ୮୪ଟି କେଶ୍ ରୁଜୁ ହୋଇଥିଲା। ତେଣୁ ଏସବୁ ଦୁର୍ନୀତି ଅଭିଯୋଗ କିଛି ନୂଆ ବିଷୟ ନୁହେଁ। ମୋର କେବଳ କହିବା କଥା, କେଶ୍‌ର ବିଚାର କରି କୋର୍ଟ ଯଦି ଶେଷରେ ନିଷ୍ପତ୍ତି କରିବ ବିଜୁ ପଟ୍ଟନାୟକ

Digitized by srujanika@gmail.com

ତା ସହିତ ଇଟା ଖଣ୍ଡିଏ କିମ୍ବା ଟଙ୍କାଟିଏ ଯୋଡ଼ିନାହିଁ ତେବେ ଯେଉଁ ମୁଖ୍ୟମନ୍ତ୍ରୀ ଓ ଉପମୁଖ୍ୟମନ୍ତ୍ରୀ ମୋତେ ଜେଲ୍‌ରେ ପୂରାଇବେ ବୋଲି କହୁଛନ୍ତି ଲୋକମାନେ କଦାପି ସେମାନଙ୍କୁ ବରଦାସ୍ତ କରିବେ ନାହିଁ।

"ଦୁଇମାସ ଭିତରେ ପାର୍ଲାମେଣ୍ଟ ନିର୍ବାଚନ ହେବ। ସେହି ନିର୍ବାଚନ ପାଇଁ ଓଡ଼ିଶା ସରକାର ଓ ସରକାରଙ୍କର ଗୁରୁତ୍ୱପୂର୍ଣ୍ଣ ସଦସ୍ୟମାନେ ବିପୁଳ ପରିମାଣର ଅର୍ଥ ସଂଗ୍ରହ କାର୍ଯ୍ୟରେ ବ୍ୟସ୍ତ ଅଛନ୍ତି। ବିଶ୍ୱସ୍ତ ସୂତ୍ରରୁ ମୁଁ ଆହୁରି ଶୁଣିବାକୁ ପାଇଛି, ପ୍ରତି ଲୋକସଭା ଆସନ ପାଇଁ ସରକାର ଏକ କୋଟି ଟଙ୍କା ହିସାବରେ ଏକୋଇଶି କୋଟି ଟଙ୍କା ଏବଂ ହେଲିକପ୍ଟର, ପୋଷ୍ଟର ଏବଂ ଅନ୍ୟାନ୍ୟ ବାବଦ ଖର୍ଚ୍ଚ ପାଞ୍ଚରୁ ଛଅ କୋଟି ଟଙ୍କାକୁ ମିଶାଇ ସମୁଦାୟ ତିରିଶ କୋଟି ଟଙ୍କା ବ୍ୟୟର ପ୍ରସ୍ତାବ ରଖିଛନ୍ତି। ଏହା ଯଦି ରାଜ୍ୟ ସରକାରଙ୍କର ଲକ୍ଷ୍ୟ ହୋଇଥାଏ, ତେବେ ମୁଁ ଏଠାରେ ସତର୍କ କରାଇଦେବାକୁ ଚାହେଁ ଯେ ପଇସା ଦ୍ୱାରା ତୁମେ ଲୋକମାନଙ୍କୁ କିଣିପାରିବ ନାହିଁ। ଆଗାମୀ ଲୋକସଭା ନିର୍ବାଚନରେ ଆମ ଦଳର ବହୁସଂଖ୍ୟକ ପ୍ରାର୍ଥୀ ନିଶ୍ଚିତ ଭାବରେ ଜୟଯୁକ୍ତ ହେବେ।"

"ବହୁବର୍ଷ ଧରି ରାଜ୍ୟ ଶାସନ କରିବା ପରେ ତୁମମାନଙ୍କ ପାଖରେ ଅର୍ଥବଳ, ବାହୁବଳ ଓ କ୍ଷମତା ସବୁ କିଛି ଥିଲା। ଏହା ସତ୍ତ୍ୱେ ଓଡ଼ିଶାବାସୀ ତୁମମାନଙ୍କୁ କ୍ଷମତାରୁ ହଟାଇଦେଲେ। ଆସନ୍ତା ଦୁଇମାସ ପରେ ହେବାକୁ ଯାଉଥିବା ପାର୍ଲିଆମେଣ୍ଟ ନିର୍ବାଚନରେ ମଧ୍ୟ ପୂର୍ବ ଘଟଣାର ପୁନରାବୃତ୍ତି ଘଟିବ। ସେଥିପାଇଁ ଅବଶ୍ୟ ତୁମମାନଙ୍କୁ ଅପେକ୍ଷା କରିବାକୁ ପଡ଼ିବ। ମୋର ଲୋକମାନଙ୍କ ଉପରେ ଭରସା ରହିଛି। ମାତ୍ର, ତୁମମାନଙ୍କର ଟଙ୍କା ଉପରେ ବିଶ୍ୱାସ ଅଛି। ଏହା ମୁଁ ପ୍ରଚାର କରିବାକୁ ଚାହେଁ। ଗତ ରାଜ୍ୟସଭା ନିର୍ବାଚନ ବେଳେ ତୁମେମାନେ ଅନ୍ୟଦଳର ବିଧାୟକଙ୍କ ଭୋଟ୍ କିଣିଲ, କାରଣ ତୁମମାନଙ୍କର ପଇସା ଉପରେ ଅଖଣ୍ଡ ବିଶ୍ୱାସ ଅଛି। ଏକଥା ତୁମ ପାଇଁ କିଛି ନୂଆ ନୁହେଁ।"

"ତୁମେମାନେ ପାର୍ଲିଆମେଣ୍ଟରେ ପ୍ରତିଦିନ ଏଭଳି କାଣ୍ଡ ଘଟାଉଛ। ତୁମର ପ୍ରଧାନମନ୍ତ୍ରୀ ପ୍ରତିଦିନ ପାର୍ଲିଆମେଣ୍ଟର ସାଂସଦମାନଙ୍କୁ କିଣାବିକା କରୁଛନ୍ତି। ତୁମେମାନେ ମୋତେ କାହିଁକି ଏକଥା ପଚାରୁଛ? ବରଂ ଭଲ ହେବ, ଏକଥା ତୁମେମାନେ ନିଜକୁ ପଚାର। ମୁଁ କେବଳ ଏଠାରେ କିଛି ତଥ୍ୟ ଅବତାରଣା କରୁଛି। ଦଶବର୍ଷ ରାଜ୍ୟ ଶାସନ କରିବା ପରେ ବିଧାନସଭାରେ ତୁମମାନଙ୍କ ସଂଖ୍ୟା ମାତ୍ର ୧୦ରେ ପହଞ୍ଚିଥିଲା। ଖୁବ୍‌ଶୀଘ୍ର ଆଗାମୀ ନିର୍ବାଚନମାନଙ୍କରେ ସେହି

Digitized by srujanika@gmail.com

ପୂର୍ବ ଘଟଣାର ପୁନରାବୃତ୍ତି ହେବାକୁ ଯାଉଛି। କାରଣ ତୁମେମାନେ ସମସ୍ତ ନିର୍ବାଚିତ ପୌରସଂସ୍ଥା ଓ ପଞ୍ଚାୟତ ଭଳି ଗଣତାନ୍ତ୍ରିକ ଅନୁଷ୍ଠାନଗୁଡ଼ିକୁ ଭାଙ୍ଗିଦେଇଛ। ୨୦ ଲକ୍ଷ ବେକାରଙ୍କୁ ନିଯୁକ୍ତି ଦେବ ବୋଲି ପ୍ରତିଶ୍ରୁତି ଦେଇ ବିଭିନ୍ନ ନିଗମରେ କାର୍ଯ୍ୟରତ ୧୦ ହଜାର ଲୋକଙ୍କୁ ଛଟେଇ କରିଛ। ୧୯୯୫-୯୬ ମସିହାରେ କେ.ବି.କେ. (ଅବିଭକ୍ତ କଳାହାଣ୍ଡି, ବଲାଙ୍ଗୀର ଓ କୋରାପୁଟ) ଜିଲ୍ଲା ପାଇଁ ଆଦୌ ଅର୍ଥର ବ୍ୟବସ୍ଥା କରିନାହିଁ। ଦାରିଦ୍ର୍ୟ ବିରୋଧୀ ଯୋଜନା ଓ ଜବାହାର ରୋଜଗାର ଯୋଜନା ବାବଦ ଆସିଥିବା ତିନିଶହ କୋଟି ଟଙ୍କା ଖର୍ଚ୍ଚ ନ କରି ପକାଇ ରଖିଛ।" (କିମ୍ବଦନ୍ତୀ ଜନନାୟକ ବିଜୁ ପଟ୍ଟନାୟକ, ଗବେଷଣା ବିଭାଗ, ଓଡ଼ିଶା ବିଧାନସଭା ସଚିବାଳୟ, ପୃ.୬୩-୬୫)

୧୯୯୬ ମସିହା ମେ' ମାସ ଲୋକସଭା ନିର୍ବାଚନରେ କଟକ ଓ ଆସିକା ଦୁଇଟି ନିର୍ବାଚନମଣ୍ଡଳୀରୁ ବିଜୁବାବୁ ପ୍ରାର୍ଥୀ ହୋଇ ଉଭୟ ଆସନରୁ ବିଜୟୀ ହୋଇଥିଲେ। ୨୦ ମେ'ରେ ସେ ଭୁବନେଶ୍ୱର ବିଧାନସଭା ଆସନ ଓ ବିରୋଧୀ ଦଳ ନେତା ପଦରୁ ଇସ୍ତଫା ପ୍ରଦାନ କରିଥିଲେ। ପରେ ସେ କଟକ ଲୋକସଭା ଆସନରୁ ଇସ୍ତଫା ଦେଇଥିଲେ। ଏକଦା ଜନତା ଦଳର କେନ୍ଦ୍ରବିନ୍ଦୁ ଥିବା ବିଜୁ ପଟ୍ଟନାୟକ ୧୯୯୭ରେ ରାଜନୀତିରେ ଅଲୋଡ଼ା ହୋଇପଡ଼ିଥିଲେ। ଯଦି ସେ କେନ୍ଦ୍ରମନ୍ତ୍ରୀ ହୋଇପାରିଥାନ୍ତେ ତେବେ ବୋଧହୁଏ ଆଉ କିଛିଦିନ ବଞ୍ଚିଯାଇପାରିଥାନ୍ତେ। ଏ ସମ୍ପର୍କରେ ଗୌରମୋହନ ଷଡ଼ଙ୍ଗୀ ତାଙ୍କ ପୁସ୍ତକ 'ମହାନାୟକ : ବିଜୁ ପଟ୍ଟନାୟକ ଏକ ଆଲେଖ୍ୟ'ରେ ଉଲ୍ଲେଖ କରିଛନ୍ତି, "୧୯୯୫ରେ କ୍ଷମତାଚ୍ୟୁତ ବିଜୁବାବୁଙ୍କ ପାଇଁ କ୍ଷମତାବଳୟରେ ରହିବା ଅନ୍ୟ ଏକ ସୁଯୋଗ ଆସିଥିଲା ୧୯୯୬ ଲୋକସଭା ନିର୍ବାଚନରେ। ଦୁଇଟି ଆସନରେ ବିଜୟୀ ବିଜୁବାବୁଙ୍କ ପାଇଁ ପ୍ରଧାନମନ୍ତ୍ରୀ ନ ହେଲେ ମଧ୍ୟ କେନ୍ଦ୍ରମନ୍ତ୍ରୀ ହେବାରେ ବାଧା ସୃଷ୍ଟି କରିଥିଲା ତାଙ୍କ ବିରୁଦ୍ଧରେ ହୋଇଥିବା ୧୮ କୋଟି ପାଣ୍ଠି ସମ୍ପର୍କୀୟ ଦୁର୍ନୀତି ମୋକଦ୍ଦମା।"

ଲୋକମୁଖରେ ଶୁଣାଯାଏ ଯେ ଶ୍ରୀକାନ୍ତ ଜେନା ବିଜୁବାବୁଙ୍କୁ ବାରମ୍ବାର ଅପମାନିତ ଓ ଅପଦସ୍ତ କରୁଥିଲେ ମଧ୍ୟ ନିର୍ବାଚନ ସମୟରେ ଟିକେଟ୍ ପାଇବାକୁ ବିଜୁବାବୁଙ୍କ ଦ୍ୱାରସ୍ଥ ହୁଅନ୍ତି। ବିଜୁବାବୁ ତାଙ୍କୁ ଅବୁଝା ପୁଅ ବୋଲି ବିବେଚନା କରି କ୍ଷମା ଦିଅନ୍ତି ଓ ପୁଣି ନିର୍ବାଚନରେ ଜିତାଇ ତାଙ୍କୁ ରାଜନୀତିରେ ବଞ୍ଚି ରହିବାର ସୁଯୋଗ ଦିଅନ୍ତି। କିନ୍ତୁ ଜାତିଆଣ ଓ ନିଜ ସ୍ୱାର୍ଥକୁ ସର୍ବସ୍ୱ ମଣୁଥିବା ଶ୍ରୀକାନ୍ତ ଜେନା

Digitized by srujanika@gmail.com

ପ୍ରଭୃତିଙ୍କ ଚକ୍ରାନ୍ତରେ ବିଜୁବାବୁ ଛନ୍ଦି ହୋଇ କେନ୍ଦ୍ର ରାଜନୀତିରେ ଅଲୋଡ଼ା ହୋଇପଡ଼ିଥିଲେ। ଏ ସମ୍ପର୍କରେ ଗୌରମୋହନ ଷଡ଼ଙ୍ଗୀ 'ମହାନାୟକ ବିଜୁ ପଟ୍ଟନାୟକ: ଏକ ଆଲେଖ୍ୟ'ରେ ଉଲ୍ଲେଖ କରିଛନ୍ତି ଯେ, "ବିଜୁବାବୁଙ୍କଦ୍ୱାରା ସୃଷ୍ଟି ହୋଇଥିବା କିଛି ନେତା ଯଦି ଜାନକୀବାବୁଙ୍କ ସହିତ ହାତ ମିଳାଇ ମିଛ ଭିଜିଲାନ୍ସ ମୋକଦ୍ଦମା କରାଇ ନଥାନ୍ତେ ତା'ହେଲେ ହୁଏତ ବିଜୁବାବୁ ପ୍ରଧାନମନ୍ତ୍ରୀ ହୋଇଥାନ୍ତେ। ଓଡ଼ିଶାର ଇତିହାସ ଭିନ୍ନ ରୂପ ନେଇଥାନ୍ତା।" ପଶ୍ଚିମବଙ୍ଗର ପୂର୍ବତନ ମୁଖ୍ୟମନ୍ତ୍ରୀ ସିଦ୍ଧାର୍ଥ ଶଙ୍କର ରାୟ ମଧ୍ୟ ଉପରୋକ୍ତ ମନ୍ତବ୍ୟକୁ ସମର୍ଥନ କରିଛନ୍ତି।

ବିଜୁବାବୁ ଶେଷ ଜୀବନରେ ଆର୍ଥିକ ଦୁରବସ୍ଥା ଦେଇ ଗତି କରୁଥିଲେ। "ଏକଦା ୧୭୫ କୋଟି ଟଙ୍କାର ଶିଳ୍ପ ଗୋଷ୍ଠୀର ମାଲିକ ଥିଲେ ବିଜୁ ପଟ୍ଟନାୟକ। ଯାହାଙ୍କର ୧୨ଟି ଏରୋପ୍ଲେନ୍ ଥିଲା। ଯାହାଙ୍କ ପାଇଁ କଲିକତାର ସୌଖୀନ ଗ୍ରାଣ୍ଡ ହୋଟେଲରେ ଦୁଇଟି ସୁଟ୍ ବର୍ଷସାରା ରିଜର୍ଭ ହୋଇ ରହୁଥିଲା। ସେଇ ବିଜୁ ପଟ୍ଟନାୟକ ୧୯୮୭ରେ ନିଜର ଚିକିତ୍ସା ପାଇଁ ଆମେରିକା ଯିବାକୁ ୨ଲକ୍ଷ ଟଙ୍କା ଯୋଗାଡ଼ କରିପାରି ନଥିଲେ ଏବଂ ରାଜ୍ୟବାସୀ ତାହା ତାଙ୍କୁ ଦାନସୂତ୍ରରୂପେ ଦେଇଥିଲେ ଜୁନ୍ ୧୯ ତାରିଖରୁ ୩୦ ତାରିଖ ମଧ୍ୟରେ। ୧୮ କୋଟି ମାମଲାରେ ଜଡ଼ିତ ହୋଇ ବିଜୁବାବୁ ୧୯୯୬ ସେପ୍ଟେମ୍ବର ୧୯ ତାରିଖରେ ଭୁବନେଶ୍ୱର ଭିଜିଲାନ୍ସ ଜଜ୍‌ଙ୍କଠାରୁ ବିଦେଶ ଯିବାପାଇଁ ଅନୁମତି ପାଇଥିଲେ ମଧ୍ୟ ଆବଶ୍ୟକ ଅର୍ଥ ବ୍ୟବସ୍ଥା କରିପାରି ନ ଥିବାରୁ ଚିକିତ୍ସିତ ହୋଇପାରି ନ ଥିଲେ।" (ମହାନାୟକ ବିଜୁ ପଟ୍ଟନାୟକ : ଏକ ଆଲେଖ୍ୟ, ଗୌରମୋହନ ଷଡ଼ଙ୍ଗୀ, ପୃ.୪୫)

ଓଡ଼ିଶାର ଜନପ୍ରିୟ ନେତା ଦିଲ୍ଲୀପ ରାୟ ବିଜୁ ପଟ୍ଟନାୟକଙ୍କ ଶେଷ ଜୀବନରେ ପାଖେ ପାଖେ ରହି ତାଙ୍କର ସେବାଯତ୍ନ କରୁଥିଲେ। ବିଜୁବାବୁଙ୍କ ସ୍ମୃତିଚାରଣ କରିବା ଅବସରରେ ସେ କହିଥିଲେ, "ବିଜୁବାବୁ ୧୯୯୭ ମାର୍ଚ୍ଚ ୨୮ ତାରିଖ ଭୁବନେଶ୍ୱର ଛାଡ଼ିବା ବେଳକୁ ଛାତିରେ କଫ ଜନିତ ଯନ୍ତ୍ରଣା ଅନୁଭବ କରୁଥିଲେ। ଦିଲ୍ଲୀରେ ପହଞ୍ଚିବାପରେ ୨୯ ତାରିଖଦିନ ଶ୍ୱାସକ୍ରିୟାରେ କଷ୍ଟ ହେବାରୁ ତାଙ୍କୁ ରାମମନୋହର ଲୋହିଆ ହସପିଟାଲରେ ଭର୍ତ୍ତି କରାଯାଇଥିଲା, ମାତ୍ର ଅବସ୍ଥାରେ କୌଣସି ପରିବର୍ତ୍ତନ ନ ହେବାରୁ ତାଙ୍କୁ ୩୦ ତାରିଖଦିନ ଏସକର୍ଟ ହସପିଟାଲକୁ ସ୍ଥାନାନ୍ତରିତ କରାଯାଇଥିଲା। ଏପ୍ରିଲ ୧୫ ତାରିଖରେ ତାଙ୍କର ଅବସ୍ଥାରେ ସାମାନ୍ୟ ଉନ୍ନତି ପରିଲକ୍ଷିତ ହୋଇଥିଲେ ମଧ୍ୟ ୧୬ ତାରିଖରେ ଅବସ୍ଥାରେ ଆହୁରି ଅବନତି ହୋଇଥିଲା ଓ ଭୀଷଣ ଜ୍ୱର

Digitized by srujanika@gmail.com

କାରଣରୁ ସେ ଆଉ କଥାବାର୍ତ୍ତା କରିପାରୁ ନ ଥିଲେ। ଏପ୍ରିଲ ୧୭ ତାରିଖ ଦିନ ସକାଳେ ସେ ସବୁଦିନ ପାଇଁ ଆଖି ବୁଜିଲେ ଏବଂ ତାଙ୍କ ମରଶରୀର ଏପ୍ରିଲ ୧୮ ତାରିଖଦିନ ଦିଲ୍ଲୀରୁ ଭୁବନେଶ୍ୱର ବିମାନବନ୍ଦର ସ୍ଥିତ ତାଙ୍କ ପ୍ରିୟ ନବୀନ ନିବାସକୁ ଆସିଥିଲା। ବିଜୁବାବୁଙ୍କ ଶେଷକଥା ବିଜୟ ମହାପାତ୍ରଙ୍କୁ ଥିଲା, ଏପ୍ରିଲ ୪ ତାରିଖରେ ଭୁବନେଶ୍ୱର ଫେରିବି। ସେ ଫେରିଲେ ନାହିଁ।" (ମହାନାୟକ ବିଜୁ ପଟ୍ଟନାୟକ: ଏକ ଆଲେଖ୍ୟ, ଗୌରମୋହନ ଷଡ଼ଙ୍ଗୀ, ପୃ.୨୩-୨୪)

ଓଡ଼ିଶାର ଜଣେ ବରିଷ୍ଠ ସାମ୍ବାଦିକ ଜୀମୂତ ମଙ୍ଗରାଜ ବିଭିନ୍ନ ସମୟରେ ବିଜୁବାବୁଙ୍କର ସାକ୍ଷାତକାର ନେଇଥିଲେ। ସେହି ସାକ୍ଷାତକାରରେ ସେ ବିଜୁବାବୁଙ୍କୁ କେତୋଟି ପ୍ରଶ୍ନ ପଚାରିଥିଲେ ଏବଂ ବିଜୁବାବୁ ଦେଇଥିବା ଉତ୍ତରଗୁଡ଼ିକୁ ସେ 'ମୁହାଁମୁହିଁ' ନାମରେ ପ୍ରକାଶ କରିଛନ୍ତି। ୧୯୯୭ ମସିହା ମାର୍ଚ୍ଚ ୨୮ ତାରିଖ ସକାଳେ ସେ ବିଜୁବାବୁଙ୍କର ଶେଷ ସାକ୍ଷାତକାର ନେଇଥିଲେ। ସେତେବେଳେ ବିଜୁ ପଟ୍ଟନାୟକଙ୍କୁ ଜୀମୂତ ମଙ୍ଗରାଜ ପଚାରିଥିବା ୩୭ଟି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଓ ବିଜୁବାବୁ ଦେଇଥିବା ତା'ର ଉତ୍ତରକୁ ଏଠାରେ ଉଦ୍ଧାର କରିବା ସମୀଚୀନ ମଣୁଛି।

ପ୍ରଶ୍ନ- ବିଜୁ ପଟ୍ଟନାୟକଙ୍କୁ ବାଦ୍ ଦେଲେ ଓଡ଼ିଶାରେ ରାଜନୀତିର କଳ୍ପନା କରିହୁଏ ନାହିଁ। ତଥାପି ବି ବହୁସମୟରେ ଜନସାଧାରଣ ଆପଣଙ୍କୁ ପ୍ରତ୍ୟାଖ୍ୟାନ କରିଛନ୍ତି। ପରାଜୟର ତିକ୍ତତାକୁ କେମିତି ଗ୍ରହଣ କରନ୍ତି ଆପଣ ?

ବିଜୁ- ରାଜନୀତି କଲେ କେତେବେଳେ ଫୁଲମାଳ ତ କେତେବେଳେ ଜୋତାମାଳ ପିନ୍ଧିବାକୁ ହୁଏ। ବିଜୁ ପଟ୍ଟନାୟକ କେବେ ପଛକୁ ଫେରି ଚାହେଁ ନାହିଁ। ପିଲାଦିନରୁ ଏହି ପ୍ରବୃତ୍ତି ହିଁ ମୋ ଭିତରେ ରହିଆସିଛି। ଏହା ଭଲ ହୋଇପାରେ କି ଖରାପ ହୋଇପାରେ, କିନ୍ତୁ ତାକୁ ଛାଡ଼ିପାରିନାହିଁ। ଓଡ଼ିଶାର ଜନସାଧାରଣଙ୍କୁ ମୁଁ ବହୁ ନିକଟରୁ ଦେଖିଛି। ସେମାନେ ମୋତେ ବହୁତ ଭଲ ପାଆନ୍ତି।

ପ୍ରଶ୍ନ- ଅତୀତକୁ ଫେରିଯିବା। ୧୯୭୧ ମସିହାରେ ନିର୍ବାଚନରେ ଏକ ସମୟରେ ଆପଣ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ୫ଟି ସ୍ଥାନରୁ ପରାଜିତ ହୋଇଥିଲେ। ଅଥଚ ଆପଣ କହୁଛନ୍ତି ଓଡ଼ିଶାର ଜନସାଧାରଣ ଆପଣଙ୍କୁ ବହୁତ ଭଲ ପାଆନ୍ତି ?

ବିଜୁ- ଭଲ ପାଇବାଟାକୁ ରାଜନୀତି ସହ ମିଶାଇଦେବା ଉଚିତ୍ ନୁହେଁ। ୧୯୭୧ ମସିହା ନିର୍ବାଚନ ମୋ ପାଇଁ ଏକ ଶିକ୍ଷା ଥିଲା। ଖାଲି ପ୍ରାର୍ଥୀ ହୋଇଗଲେ ହେବ ନାହିଁ।

Digitized by srujanika@gmail.com

ସେଇ ନିର୍ବାଚନମଣ୍ଡଳୀର ଭୋଟରଙ୍କ ନିକଟକୁ ଯିବାକୁ ହେବ। ଭୋଟ ପ୍ରଚାର କରିବାକୁ ହେବ, ଲୋକଙ୍କ ସହିତ ମିଶିବାକୁ ପଡ଼ିବ। ନଚେତ୍ ଭୋଟରମାନେ ତମକୁ ହାୱା କରୁଛି ବୋଲି ଧରିନେବେ ଏବଂ ଭୋଟ ପରେ ତାଙ୍କ ସୁଖଦୁଃଖରେ ସାମିଲ ହେବ ବୋଲି ଭାବିବେ ନାହିଁ। ବିରୋଧୀ ପ୍ରାର୍ଥୀ ହିଁ ଏହାର ଫାଇଦା ଉଠାଇବେ। ଏହାହିଁ ମୋ ପାଇଁ ୧୯୭୧ରେ ପରାଜୟର କାରଣ ଥିଲା। ଏହି ନିର୍ବାଚନରୁ ମୁଁ ଶିକ୍ଷାଲାଭ କରିଥିଲି। ପୂର୍ବରୁ ହୁଣ୍ଡାପିଟାଭାବେ ରାଜନୀତି କରୁଥିବାବେଳେ ଏହା ପରଠାରୁ ନିର୍ବାଚନ ସମୟରେ ଅତ୍ୟନ୍ତ ସତର୍କତା ଅବଲମ୍ବନ କରୁଥିଲି। ଯେଉଁଥିପାଇଁ ଏହାପରଠାରୁ ଆଉ ପରାଜୟର ତିକ୍ତତା ମୋତେ ଚାଖିବାକୁ ପଡ଼ି ନ ଥିଲା।

ପ୍ରଶ୍ନ- ଆପଣ କହୁଛନ୍ତି ଓଡ଼ିଶାର ଜନସାଧାରଣ ଆପଣଙ୍କୁ ଅତିମାତ୍ରାରେ ଭଲ ପାଆନ୍ତି। ତେବେ ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀ ହେବାକୁ ଆପଣଙ୍କୁ ୨୭ ବର୍ଷ ଲାଗିଗଲା କାହିଁକି ?

ବିଜୁ- ଏହା ଏକ ଭୁଲଧାରଣା। ମୁଁ ଚାହିଁଥିଲେ ୧୯୭୭ ମସିହାରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇପାରିଥାନ୍ତି। ମୋରି ନେତୃତ୍ୱରେ ହିଁ ସେତେବେଳେ ଓଡ଼ିଶାରେ ଜନତା ଦଳର ବିଜୟ ଘଟିଥିଲା, କିନ୍ତୁ ସେତେବେଳେ ଓଡ଼ିଶାକୁ ଭାରତବର୍ଷର ଅନ୍ୟତମ ଶ୍ରେଷ୍ଠ ରାଜ୍ୟରେ ପରିଗଣିତ କରିବା ମୋର ସ୍ୱପ୍ନ ଥିବାରୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବା ଅପେକ୍ଷା କେନ୍ଦ୍ରରେ ମନ୍ତ୍ରୀ ହେବା ଅତ୍ୟନ୍ତ ଜରୁରୀ ଥିଲା।

ପ୍ରଶ୍ନ- ଟଙ୍କା ଫୋପାଡ଼ି ତମାସା ଦେଖିବା ହେଉଛି ରାଜନୀତିର ଅନ୍ୟ ନାମ ବୋଲି ଆପଣ ବିଭିନ୍ନ ସମୟରେ ମତ ଦେଇଛନ୍ତି ?

ବିଜୁ- ମୁଁ ଯେଉଁ ମତ ଦେଇଛି ତାହାର ସିଧାସଳଖ ଅର୍ଥ ଏଇଆ ନୁହେଁ। ବିନା ପଇସାରେ ଜନସାଧାରଣଙ୍କ ସେବା କରିହେବ ବୋଲି ଆପଣ ଯଦି ଭାବୁଥାନ୍ତି ତେବେ ତାହା କେବଳ କଳ୍ପନା ବ୍ୟତୀତ ଅନ୍ୟକିଛି ନୁହେଁ। ବାସ୍ତବ କ୍ଷେତ୍ର ହେଉଛି ପଇସା ଅଛି ତ ରାଜନୀତି କର। ଯଦି ତୁମ ପାଖରେ ପଇସା ନାହିଁ, ତେବେ ତୁମ ପାଖରେ ଲୋକ କି କର୍ମୀ କେହି ରହିବେ ନାହିଁ।

ପ୍ରଶ୍ନ- ତା'ମାନେ ସାଧାରଣ ଲୋକ ରାଜନୀତି କରିପାରିବ ନାହିଁ ?

ବିଜୁ- ଏବେ ମୋ ପ୍ରଶ୍ନର ଉତ୍ତର ଆପଣ ଦିଅନ୍ତୁ। ଆପଣ ଯେଉଁ ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇଛନ୍ତି ସେହି ଅଞ୍ଚଳର ଲୋକ ଆପଣଙ୍କ ଘରକୁ ଆସିଲେ ସେମାନଙ୍କୁ ଜଳଖିଆ ନ ହେଉ ପଛେ ଚା' କପେ ଦେବେ ନା ନାହିଁ ?

Digitized by srujanika@gmail.com

ଏବେ ତ ଆଉ ଏକ ପନ୍ଥା ବାହାରିଛି। ସେମାନଙ୍କୁ ବାଟଖର୍ଚ୍ଚ ମଧ୍ୟ ଦେବାକୁ ହେଉଛି। ଗାଁରେ ପାଳିତ ହେଉଥିବା ଯଜ୍ଞ, ସଂକୀର୍ତ୍ତନ ପର୍ବପର୍ବାଣୀ ପାଇଁ ଚାନ୍ଦା ମଧ୍ୟ ଦେବାକୁ ପଡୁଛି। ଶୋକ ସନ୍ତପ୍ତ ପରିବାରକୁ ସନ୍ତୋଳିବା ପାଇଁ ଆର୍ଥିକ ସାହାଯ୍ୟ ଦେବାକୁ ପଡୁଛି। ଗୁରୁତର ଅସୁସ୍ଥ ବ୍ୟକ୍ତିଙ୍କ ଚିକିତ୍ସା ପାଇଁ ଆର୍ଥିକ ସାହାଯ୍ୟ ମଧ୍ୟ ଦେବାକୁ ପଡୁଛି। ବିଭିନ୍ନ ସଭା ସମିତିର ଆୟୋଜନ ପାଇଁ ଆବଶ୍ୟକ ଅର୍ଥ ମଧ୍ୟ ଦେବାକୁ ହେବ। ମୋ ମତରେ ଯିଏ ରାଜନୀତି କରିବ, ଯିଏ ଲୋକଙ୍କ ନେତା ବା ପ୍ରତିନିଧି ହେବ, ଯିଏ ଲୋକଙ୍କ ସୁଖ ସହିତ ସାମିଲ ହୋଇ ରହିବ, ତାକୁ ଏମିତି ଖୋଲା ହେବାକୁ ହିଁ ପଡ଼ିବ। ମାନେ ନେତା ହେଲେ ବିଭିନ୍ନ କାର୍ଯ୍ୟ ପାଇଁ ଲୋକଙ୍କୁ ଟଙ୍କା ବାଣ୍ଟିବାକୁ ହେବ। ମୋ ମତରେ ପାଖରେ ନାହିଁ ଧନ ତ, ରାଜନୀତି କରିବାକୁ କିଆଁ ମନ?

ପ୍ରଶ୍ନ- ଗୋଟିଏ ସମୟରେ ଆପଣ ମଧ୍ୟ ମତ ଦେଇଥିଲେ ଯେ, ଆପଣଙ୍କ ପାଖରେ ଯଦି ୧୦କୋଟି ଟଙ୍କା ନଗଦ ଥା'ନ୍ତା ତେବେ ଆପଣ ଦେଶର ପ୍ରଧାନମନ୍ତ୍ରୀ ହୋଇପାରିଥାନ୍ତେ।

ବିଜୁ- ୧୦କୋଟି ନୁହଁ ତା'ଠାରୁ ଅଧିକ। ନେହେରୁଙ୍କ ମୃତ୍ୟୁପରେ ମୁଁ ତ କାହିଁକି ଭାବିପାରୁନଥିଲି ପ୍ରଧାନମନ୍ତ୍ରୀ ହେବାପାଇଁ ମୋଠାରୁ କିଏ ଅଧିକ ଯୋଗ୍ୟ ବ୍ୟକ୍ତି ଥିଲେ। ପାର୍ଲିଆମେଣ୍ଟରେ ଉତ୍ତର ପ୍ରଦେଶ ଓ ବିହାର ସବୁବେଳେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଆସିଛନ୍ତି। ଏହି ଦୁଇଟି ରାଜ୍ୟର ସାଂସଦ ସଂଖ୍ୟା ଯାହା ତାହା ସମୁଦାୟ ଆସନର ଏକ ଚତୁର୍ଥାଂଶ। ତେଣୁ ସଂଖ୍ୟା ଖେଳରେ ଏହି ଦୁଇ ଅନ୍ୟ ରାଜ୍ୟ ତୁଳନାରେ ସବୁବେଳେ ଆଗରେ। ମୋ ମତ କିନ୍ତୁ ଭିନ୍ନ। ପ୍ରଧାନମନ୍ତ୍ରୀ ହେବାପାଇଁ ଯୋଗ୍ୟତାର ମାପକାଠି ଦେଖାଯାଉ। ମୂଳରୁ କହିରଖୁଛି ମୋ ପାଖରେ ଟଙ୍କା ଥିଲେ ଓଡ଼ିଶାରୁ ପ୍ରତିନିଧିତ୍ୱ କରି ମଧ୍ୟ ମୁଁ ଦେଶର ପ୍ରଧାନମନ୍ତ୍ରୀ ହୋଇପାରିଥାନ୍ତି।

ପ୍ରଶ୍ନ- ଆପଣ କ'ଣ ଭାବୁଛନ୍ତି ଓଡ଼ିଶାରେ ଜନ୍ମଗ୍ରହଣ କରିବା ଆପଣଙ୍କ ପାଇଁ ଅଭିଶାପ?

ବିଜୁ- ତାହା ମୁଁ କେବେ ଭାବି ନାହିଁ। ବରଂ ଓଡ଼ିଶା ମୋ ପାଇଁ ଗର୍ବ ଓ ଗୌରବ। ଓଡ଼ିଶାକୁ ଆନ୍ତର୍ଜାତିକ ସ୍ତରରେ ପହଞ୍ଚାଇବା ପାଇଁ ମୁଁ ଅହରହ ସଂଗ୍ରାମରତ। କିନ୍ତୁ ଲୋକସଭାରେ ଓଡ଼ିଶାର ସ୍ଥାନ ମାତ୍ର ୨୧। ଏହି ଅଳ୍ପ ସଂଖ୍ୟାକୁ ନେଇ ପ୍ରଧାନମନ୍ତ୍ରୀ ଦୌଡ଼ରେ କ'ଣ କିଏ ସାମିଲ ହୋଇପାରିବ? ଯେଉଁଥିପାଇଁ ସବୁବେଳେ ମୁଁ ପ୍ରଧାନମନ୍ତ୍ରୀ ବାଛିବାକୁ ପସନ୍ଦ କରିଥାଏ। ପ୍ରଧାନମନ୍ତ୍ରୀ ହେବାକୁ ହେଲେ ତୁମ ପଛରେ ସଂଖ୍ୟା ଥିବା ଦରକାର।

Digitized by srujanika@gmail.com

ପ୍ରଶ୍ନ- ୧୯୯୬ ଲୋକସଭା ନିର୍ବାଚନରେ ବିଜୟୀ ହେବାପରେ ଆପଣ ପ୍ରଧାନମନ୍ତ୍ରୀ ହେବେ ବୋଲି ଓଡ଼ିଶାବାସୀଙ୍କ ଏକ ଧାରଣା ଥିଲା ?

ବିଜୁ- ସେତେବେଳେ ଯଦି ଓଡ଼ିଶାରେ ଜନତାଦଳ ପ୍ରାର୍ଥୀ ବହୁ ସଂଖ୍ୟାରେ ବିଜୟୀ ହୋଇଥାନ୍ତେ ତେବେ ପରିସ୍ଥିତି ଭିନ୍ନ ହୋଇଥାନ୍ତା । ନିଜ ରାଜ୍ୟରେ ଜନତାଦଳ ପ୍ରାର୍ଥୀଙ୍କ ଶୋଚନୀୟ ପରାଜୟ ଘଟିଛି ଅଥଚ ପ୍ରଧାନମନ୍ତ୍ରୀ ପାଇଁ ମୁଁ ଦାବିଦାର ହେବି । ଅନ୍ୟ କାହାପାଇଁ ହେଉକି ନ ହେଉ ଅନ୍ତତଃ ବିଜୁ ପଟ୍ଟନାୟକ ପାଇଁ ତାହା ଲୋକହସା ହେବ । ତେବେ ଯାହାକୁ ନେତା ଭାବରେ ନିଜ ହାତରେ ଗଢ଼ିଥିଲି ସେଇ ଦେବେଗୌଡ଼ା ଯଦି ପ୍ରଧାନମନ୍ତ୍ରୀ ହେଲେ ତା' ଅପେକ୍ଷା ଭଲ ଖବର ମୋ ପାଇଁ ଆଉ କିଛି ହୋଇନପାରେ ।

ପ୍ରଶ୍ନ- କୁଆଡ଼େ ଶ୍ରୀକାନ୍ତ ଜେନା ଆପଣଙ୍କୁ ପ୍ରଧାନମନ୍ତ୍ରୀ କରାଇ ନ ଦେବା ପାଇଁ ଚକ୍ରାନ୍ତ କରିଥିଲେ ?

ବିଜୁ- ଶ୍ରୀକାନ୍ତ ଯେଉଁ ସ୍ତରରେ ପହଞ୍ଚିଛି, ତାହା କେବଳ ବିଜୁ ପଟ୍ଟନାୟକ ଯୋଗୁଁ । ବିଜୁ ପଟ୍ଟନାୟକ ଏମିତି ଶହଶହ ନେତା ତିଆରି କରିଛି । ସେମାନଙ୍କର ଯେତେ ଉନ୍ନତି ହେବ ତାହା ବିଜୁ ପଟ୍ଟନାୟକର ଗର୍ବ । କାହିଁ ବିଜୁ ପଟ୍ଟନାୟକ ଆଉ କାହିଁ ଶ୍ରୀକାନ୍ତ । ବିଜୁ ପଟ୍ଟନାୟକ ମହାଦ୍ରୁମ ହେଲେ ଅନ୍ୟମାନେ ଗୋଟିଏ ଗୋଟିଏ ଟେକା ।

ପ୍ରଶ୍ନ- ଏଥର ଆସନ୍ତୁ ଫେରିଯିବା ଓଡ଼ିଶା ରାଜନୀତିକୁ । କଂଗ୍ରେସରୁ ଆପଣଙ୍କ ରାଜନୈତିକ ଜୀବନ ଆରମ୍ଭ । କିନ୍ତୁ ଯେତିକି ସମୟ ଆପଣ କଂଗ୍ରେସରେ ଅଛନ୍ତି ତା'ଠାରୁ ଅଧିକ ସମୟ ଅତିବାହିତ କରିଛନ୍ତି ଅଣକଂଗ୍ରେସୀ ନେତାଭାବେ....

ବିଜୁ- ରାଜନୀତି ମୋର ପେଶା ନ ଥିଲା । ମୁଁ ଜଣେ ଚାଲେଞ୍ଜ ପ୍ରିୟ ଯୁବକ ଥିଲି । ଜବାହରଲାଲ ନେହେରୁଙ୍କ ନିର୍ଦ୍ଦେଶ କ୍ରମେ ମୁଁ ମୋର ବିମାନ ଚାଳନାରେ ପାରଙ୍ଗମ ପ୍ରଦର୍ଶନ କରି ଗୃହବନ୍ଦୀ ଥିବା ସୁକର୍ଣ୍ଣଙ୍କୁ ବିମାନରେ ନେଇଆସିଥିଲି । ସେତେବେଳେ ଏହା ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ବିଜୁ ପଟ୍ଟନାୟକ ତା'ର ଅଦମ୍ୟ ସାହସ ପାଇଁ ସମଗ୍ର ବିଶ୍ୱରେ ଅନନ୍ୟ ଶ୍ରେଷ୍ଠ ପୁରୁଷ ପାଲଟି ଯାଇଥିଲା । ବିଜୁ ପଟ୍ଟନାୟକ ଖ୍ୟାତିରେ ସମଗ୍ର ଭାରତ ଚଳଚଞ୍ଚଳ ହୋଇଉଠିଥିଲା, ନେହେରୁ ମୋର ପ୍ରଶଂସକ ପାଲଟି ଯାଇଥଲେ । ଅନ୍ୟମାନଙ୍କୁ ସେ କହନ୍ତି- ଓଡ଼ିଶାର ବିଜୁ ପଟ୍ଟନାୟକଙ୍କୁ ଦେଖିଛ, ତାଙ୍କରି ପାଇଁ ଦେଶ ଗର୍ବିତ, ଇତ୍ୟାଦି ଇତ୍ୟାଦି ଅନେକ ପ୍ରଶଂସା ସେ କରୁଥିଲେ ।

Digitized by srujanika@gmail.com

ପାଇଲଟ୍ ଜୀବନରୁ ରାଜନୈତିକ ଜୀବନକୁ ମତେ ଆଣିବାରେ ନେହେରୁ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ। ନେହେରୁ ଚାହୁଁଥିଲେ ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଉ, ଏପରି କି ଦେଶର ପ୍ରତିରକ୍ଷା ମନ୍ତ୍ରୀ ମଧ୍ୟ। ନେହେରୁଙ୍କ ମୃତ୍ୟୁ ପରେ କଂଗ୍ରେସ ରାଜନୀତି ମୋତେ ଅଣନିଶ୍ୱାସୀ କରିଦେଲା ଏବଂ ବିଶେଷକରି ଇନ୍ଦିରାଗାନ୍ଧିଙ୍କ ସ୍ୱେଚ୍ଛାଚାରିତା ରାଜନୀତି। ଯେଉଁଥିପାଇଁ କଂଗ୍ରେସ ଦଳ ଛାଡ଼ିବାକୁ ବାଧ୍ୟ ହେଲି। ତା'ପରଠାରୁ ମୁଁ ଆଉ କଂଗ୍ରେସକୁ ଫେରିକି ପଛକୁ ଫେରିଚାହିଁ ନାହିଁ।

ପ୍ରଶ୍ନ- ନେହେରୁଙ୍କ ଇଚ୍ଛା ଅପୂର୍ଣ୍ଣ ରହିଗଲା, ଆପଣ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ କିନ୍ତୁ କେନ୍ଦ୍ରରେ ପ୍ରତିରକ୍ଷାମନ୍ତ୍ରୀ ହୋଇପାରିଲେ ନାହିଁ?

ବିଜୁ- ନେହେରୁ ଯାହା ଚାହିଁଥିଲେ ବିଜୁ ପଟ୍ଟନାୟକ ତାହା ଖୁବ୍ କମ୍ ଦିନରେ ହୋଇଥିଲା। ୬୦ ଦଶକର ପ୍ରଥମରୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲି। ପୁଣି ପ୍ରତିରକ୍ଷାମନ୍ତ୍ରୀ ନ ଥାଇ ମଧ୍ୟ ଚୀନ-ଭାରତ ଯୁଦ୍ଧ ସମୟରେ ପ୍ରଧାନମନ୍ତ୍ରୀଙ୍କ ପ୍ରତିରକ୍ଷା ପରାମର୍ଶଦାତା ହୋଇଥିଲି। ପ୍ରଧାନମନ୍ତ୍ରୀ ନେହେରୁଙ୍କ କାର୍ଯ୍ୟାଳୟ ଯେଉଁଠି ଥିଲା ତା'ର ଠିକ୍ ପାଖରେ ମୋ ପାଇଁ ଏକ କାର୍ଯ୍ୟାଳୟ ଖୋଲାଯାଇଥିଲା। ସେହି କାର୍ଯ୍ୟାଳୟରେ ରହି ଚୀନ ଉପରକୁ କେଉଁପଟୁ ଆକ୍ରମଣ ହେବ, ରଣନୀତି କ'ଣ ହେବ ସେ ସଂପର୍କରେ ମୁଁ ସ୍ଥିର କରୁଥିଲି। ଅନ୍ୟ ପକ୍ଷରେ ଏହା ପ୍ରତିରକ୍ଷା ମନ୍ତ୍ରୀଙ୍କ କାମ ଥିଲା।

ପ୍ରଶ୍ନ- ୫୦ରୁ ୬୦ ଦଶକରେ ଆପଣ କୁଆଡ଼େ ହୁଣ୍ଡା ପିଟା ରାଜନୀତି କରୁଥିଲେ। ମାନେ ଯିଏ କଥା ମାନିଲା ତାକୁ ପୁରସ୍କାର, ଯିଏ ନ ମାନିଲା ତାକୁ ଲାଞ୍ଛନା, ମାଡ଼...

ବିଜୁ- ସେତେବେଳେ ରାଜନୀତିକୁ ଆପଣ ନିକଟରୁ ଦେଖିବାର ସୁଯୋଗ ପାଇନଥିବେ ନିଶ୍ଚିତ। ମୋର ଚାଲେଞ୍ଜପ୍ରିୟ ମନୋବୃତ୍ତି, ଦୁଃସାହସିକତା ସଂପର୍କରେ ସମଗ୍ର ବିଶ୍ୱବାସୀ ଊଣା ଅଧିକେ ଅବଗତ ଥିଲେ। ଗୁଣ୍ଡାଗିରି କରିବାକୁ ହେଲେ ମୁଁ କାହାର ସାହାଯ୍ୟ ନେଇ ନ ଥାଏ। ମୋ ଦେହରେ ବଳ ଅଛି ତ ମୁଁ କାହାସହ ଲଢ଼ିବି। ନଚେତ୍ ଚୁପ୍ ହୋଇ ରହିବି। ଅନ୍ୟର ବଳରେ ନିଜେ ବଳୁଆ କହିବା ବିଜୁ ପଟ୍ଟନାୟକର ଧର୍ମ ନୁହେଁ। ସେଥିପାଇଁ ମୁଁ କାହାକୁ ପଛପଟୁ ଛୁରୀ ଭୁଷିନାହିଁ। ମୋର ଏହି ଚରିତ୍ର ସଂପର୍କରେ ସେତେବେଳର ନେତାମାନେ ବେଶ୍ ଅବଗତ ଥିଲେ। ପାଟିତୁଣ୍ଡ ବାଡ଼ିଆପିଟା ହେଲେ ମୁଁ ନିଜେ ସମ୍ମୁଖଭାଗକୁ ଚାଲିଆସେ। ମୋ ଆଗରେ ଯିଏ ପଡ଼ିଲା ତାକୁ

Digitized by srujanika@gmail.com

ଧରିନେଇ, ଘୋଷାରି ଟାଣି ଆଣେ । ଏଥିରୁ ସେତେବେଳର ପ୍ରତିଷ୍ଠିତ ନେତା ମହତାବ ମଧ୍ୟ ଛାଡ଼ ପାଇନାହାନ୍ତି ।

ପ୍ରଶ୍ନ- କ୍ଷମତାରେ ଥା'ନ୍ତୁ କି ନ ଥା'ନ୍ତୁ । କିନ୍ତୁ ଆପଣ ଜନସାଧାରଣଙ୍କୁ ଏପରି ପ୍ରତିଶ୍ରୁତି ଦିଅନ୍ତି ଯେ ଅନେକ ସମୟରେ ତାହା ସ୍ୱପ୍ନ ବୋଲି ସେମାନେ ଭାବନ୍ତି ?

ବିଜୁ- ବିଜୁ ପଟ୍ଟନାୟକର ଚିନ୍ତାଧାରା ସବୁବେଳେ ଆଗରେ । ମୋର ଭୁଲ ହେଉଛି ଯେ ଲୋକଙ୍କ ଚିନ୍ତାଧାରାରେ ନ ଥାଇ ମୁଁ ସେମାନଙ୍କ ପାଇଁ ଏମିତି କାମ କରିବାକୁ ଚାହେଁ ଯେ ତାହା ପାଇବାକୁ ସେମାନଙ୍କୁ ୨୦/୩୦ ବର୍ଷ ଲାଗିଯାଏ । ୧୯୬୨ରେ ଯେମିତି ମୁଁ ଘୋଷଣା କରିଥିଲି ସବୁ ଘରକୁ ପାଇପ୍ ଯୋଗେ ଜଳ ଯୋଗାଣ । ଏବେ ଦେଖନ୍ତୁ ତାହାହିଁ ହେଉଛି । ଭୂମିକଂପ କିମ୍ବା ପ୍ରାକୃତିକ ବିପର୍ଯ୍ୟୟରୁ ଜଗନ୍ନାଥ ମନ୍ଦିରକୁ ରକ୍ଷା କରିବା ପାଇଁ ୫ ବର୍ଷ ତଳେ ମୁଁ ପ୍ରସ୍ତାବ ଦେଇଥିଲି । ମାନେ ସ୍ୱାଭାବିକ ଅବସ୍ଥା ହେଲେ ପୂର୍ବପରି ହୋଇଯିବ । ଓଡ଼ିଶାରେ ବଡ଼ବଡ଼ ନେତାମାନେ ମଧ୍ୟ ମୋର ଏହି କଥାକୁ, ଆଉ ଜନସାଧାରଣଙ୍କ କଥା କହିବି କାହିଁକି, ସହଜରେ ଗ୍ରହଣ କରିନଥିଲେ । ଏବେ ତ ବିଦେଶରେ ବହୁ ସ୍ଥାନରେ ପ୍ରାଚୀନ କୀର୍ତ୍ତିରାଜିର ତଥା ବହୁ ବଡ଼ବଡ଼ କୋଠାର ରକ୍ଷଣାବେକ୍ଷଣ ପାଇଁ ଏହି ପଦକ୍ଷେପ ନିଆଗଲାଣି ।

ପ୍ରଶ୍ନ- ୧୯୯୦ରୁ ୧୯୯୫, ଆପଣ ଏକ ଲୋକପ୍ରିୟ ସରକାରର ନେତୃତ୍ୱ ନେଇଥିଲେ । ତଥାପି ବି ଆପଣ ସଚିବାଳୟରେ କର୍ମଚାରୀଙ୍କ ଆକ୍ରମଣର ଶିକାର ହେଲେ ?

ବିଜୁ- ବିଜୁ ପଟ୍ଟନାୟକ ଏକ ସ୍ୱତନ୍ତ୍ର ଚିନ୍ତାଧାରା ନେଇ କାମ କରେ । ମୁଁ ଓଡ଼ିଶାକୁ ଭଲ ପାଏ ଏବଂ ଓଡ଼ିଶା ମଧ୍ୟ ମତେ ଭଲପାଏ । ମୋ ପୂର୍ବରୁ ୧୦ ବର୍ଷ କଂଗ୍ରେସ ସରକାର ଥିଲା । ଏହି ସମୟରେ କର୍ମଚାରୀମାନେ ଅଳସୁଆ ହୋଇଗଲେ । କୌଣସି କାମ ନିର୍ଦ୍ଦିଷ୍ଟ ସମୟରେ ହେଲାନାହିଁ । କର୍ମଚାରୀମାନେ ଠିକ୍ ସମୟରେ ଆସିଲେ ନାହିଁ । ସଚିବାଳୟ ତ ଏକ ଆଖଡ଼ା ଘର ହୋଇଯାଇଥିଲା । ଯିଏ ଯେତେବେଳେ ଆସିଲେ ଚଳିଲା । ଶାସନ ବୋଲି କିଛି ନଥିଲା । ସମସ୍ତେ ବିଜୁ ପଟ୍ଟନାୟକଙ୍କୁ ଜାଣନ୍ତି । ସେ ନିର୍ଦ୍ଦିଷ୍ଟ ସମୟରେ ଅଫିସକୁ ଆସେ ଏବଂ ନିର୍ଦ୍ଦିଷ୍ଟ ସମୟରେ ଅଫିସରୁ ଯାଏ । ଅଫିସ୍ ସମୟ ହେଉଛି ୧୦ଟାରୁ ୫ଟା । ମୁଁ ନିୟମକୁ କଡ଼ାକଡ଼ି କରିବାକୁ ଚାହିଁଲି । ଯଦି ବିଜୁ ପଟ୍ଟନାୟକ ରାଜନୈତିକ ବ୍ୟକ୍ତି ହୋଇ ଠିକ୍ ସମୟରେ ଅଫିସ ଆସିପାରୁଛି ଏବଂ ଯେଉଁଦିନର ଫାଇଲ୍ କାମ ସେହିଦିନ ଶେଷ କରୁଛି ତେବେ କର୍ମଚାରୀମାନେ

Digitized by srujanika@gmail.com

ତାହା କରିବେ ନାହିଁ କାହିଁକି ? ଆଇନ୍ କଲି ସାଢ଼େଦଶଟା ପରେ ସଚିବାଳୟ ଗେଟ୍ ବନ୍ଦ ହୋଇଯିବ। ସେତିକିରେ ଠକ କର୍ମଚାରୀଙ୍କ ଅବସ୍ଥା ଢିଲା। ଏହାହିଁ କର୍ମଚାରୀଙ୍କ ଅସନ୍ତୋଷର ପ୍ରଥମ କାରଣ ଥିଲା। ତେବେ ବିଜୁ ପଟ୍ଟନାୟକ କାହାକୁ ଭୟ କରେନାହିଁ। ସେହି ଉଚ୍ଛୃଙ୍ଖଳିତ କର୍ମଚାରୀଙ୍କୁ ସାମନା କଲି। ସେମାନେ ମୋତେ ଠେଲାପେଲା କଲେ, ମୁଁ ସମସ୍ତଙ୍କୁ ଆଡ଼େଇ ଦେଇ ଗାଡ଼ି ନିକଟକୁ ଗଲି। ସେଠାରେ ସ୍ୱଭାବସୁଲଭ ଢଙ୍ଗରେ ଗାଡ଼ିରେ ବସି ମୁଁ ଘରକୁ ଯାଇଥିଲି। ମୁଁ ଯିବାପରେ କର୍ମଚାରୀମାନେ ସଚିବାଳୟରେ ଲଙ୍କାକାଣ୍ଡ ଘଟାଇଥିଲେ। କିନ୍ତୁ ସେଥିରେ ମୁଁ ବିଚଳିତ ହୋଇନଥିଲି। ସେଦିନ ମୁଁ ବାରଙ୍ଗ ନିକଟରେ ଆୟୋଜିତ ଏକ ଉତ୍ସବରେ ଯୋଗଦେଇ ଫେରିଥିଲି। ଶାସନକୁ ସଜାଡ଼ିବାକୁ ହେଲେ ଏମିତି ବହୁ ଅଗ୍ନିପରୀକ୍ଷାର ସମ୍ମୁଖୀନ ବିଜୁ ପଟ୍ଟନାୟକକୁ ହେବାକୁ ପଡ଼ିଛି। ସେଥିପାଇଁ ପରବାୟ ନାହିଁ।

ପ୍ରଶ୍ନ- ୯୦ ଦଶକରେ ମୁଖ୍ୟମନ୍ତ୍ରୀ ଥିବା ସମୟରେ ଆପଣ ମହିଳାଙ୍କ ପାଇଁ ସଂରକ୍ଷଣ ନୀତି ଲାଗୁ କଲେ, ଏପରିକି ତ୍ରିସ୍ତରୀୟ ପଞ୍ଚାୟତ ନିର୍ବାଚନରେ ମଧ୍ୟ। ମହିଳାଙ୍କ ହାତରେ କ୍ଷମତା ଦେବା ପାଇଁ ଆପଣ ଯେଉଁ ସ୍ୱପ୍ନ ଦେଖୁଥିଲେ ତାହା ସାକାର ହୋଇଛି କି ?

ବିଜୁ- ମୋ ମତରେ ମହିଳା ଆଉ ପୁରୁଷଙ୍କ ମଧ୍ୟରେ କିଛି ତଫାତ୍ ନାହିଁ। ମହିଳାଙ୍କ ସଂଖ୍ୟା ଯେତିକି ପୁରୁଷଙ୍କ ସଂଖ୍ୟା ମଧ୍ୟ ସେତିକି। କିନ୍ତୁ ପୁରୁଷ ଏକଛତ୍ରବାଦୀ ହୋଇଛି। ମହିଳାଙ୍କୁ ସେ ଭାବିନେଇଛି ଖାଲି ଛୁଆ ଜନମକାରୀ ମେସିନ୍ ଆଉ ରୋଷେଇ କରି ଖାଇବାକୁ ଦେବା। ପୁରୁଷ ଅପେକ୍ଷା ମହିଳାମାନେ ଅଧିକ ପରିଶ୍ରମୀ, ସଚେତନ ଓ ଦାୟିତ୍ୱବାନ। ଯିଏ ଘର ଚଳାଇ ପାରୁଛି ସିଏ ରାଜ୍ୟ ବା ଦେଶ କାହିଁକି ଚଳାଇ ପାରିବ ନାହିଁ? ମହିଳାଙ୍କ ହାତରେ କ୍ଷମତା ଦେବାପାଇଁ ଯେତେବେଳେ ସଂଗ୍ରାମ ଆରମ୍ଭ କଲି, ସେତେବେଳେ ପୁରୁଷମାନେ ମୋତେ ବହୁ ବାଧା ଦେଇଛନ୍ତି କିନ୍ତୁ ତାହାକୁ ଭ୍ରୂକ୍ଷେପ ନ କରି ମୁଁ ମୋ ସଂଗ୍ରାମ ଚଳାଇ ରଖିଲି। ଇନ୍ଦିରାଗାନ୍ଧି, ନନ୍ଦିନୀ ଶତପଥୀ ପରି ସବୁ ମହିଳା କାହିଁକି ହୋଇପାରିବେନି ? ଏହି ସଂଗ୍ରାମ ଶହେ ପ୍ରତିଶତ ସଫଳତା ଲାଭ କରି ନଥିଲେ ମଧ୍ୟ ମୋ ଆହ୍ୱାନରେ ଏବେ ସମଗ୍ର ଦେଶ ଅନୁପ୍ରାଣିତ। ମହିଳାମାନେ କ୍ଷମତାକୁ ପ୍ରାୟ ଆସୁନଥିଲେ। ପୁରୁଷ ପ୍ରଧାନ ସମାଜରେ ପ୍ରଥମେ ପ୍ରଥମେ ମହିଳାମାନେ କ୍ଷମତା ତୁଲାଇବାରେ ଅସୁବିଧା ହେଉଥିଲା। ମୁଁ

Digitized by srujanika@gmail.com

ଭାବୁଛି ଏହା କ୍ରମେ ଧାରାରେ ପଡ଼ିଯିବ ଏବଂ ମୋ ସଂଗ୍ରାମ, ମୋ ସ୍ୱପ୍ନ ହିଁ ସଂପୂର୍ଣ୍ଣ ହେବ। ଅବଶ୍ୟ ଏହାକୁ ଦେଖିବା ପାଇଁ ମୁଁ ବଞ୍ଚିଥାଇ ନପାରେ।

ପ୍ରଶ୍ନ- ୧୯୯୫ ବିଧାନସଭା ନିର୍ବାଚନରେ ୩ ମାସ ପୂର୍ବରୁ ଆପଣ ଭୁବନେଶ୍ୱରଠାରେ ଏକ ବିଶାଳ ରାଲିର ଆୟୋଜନ କରିଥିଲେ। ଏହା ଏକ ଜନସମୁଦ୍ର ଥିଲା। ଏହାସତ୍ତ୍ୱେ ବି ଆପଣଙ୍କ ଦଳ କ୍ଷମତାକୁ ଆସିଲାନି ?

ବିଜୁ- ଭୋଟ ଗୋଟିଏ ପଟେ ତ ସଭା, ରାଲି ଅନ୍ୟ ପଟେ। ଯେଉଁ ରାଲି ଚନ୍ଦ୍ରଶେଖରପୁରର ଜନତା ମଇଦାନ*ରେ କରିଥିଲି ତାହା ସବୁଦିନ ପାଇଁ ରେକର୍ଡ ହୋଇ ରହିବ। ସେ ସମୟରେ ତାହାକୁ ରଥଯାତ୍ରା ବୋଲି ବର୍ଣ୍ଣନା କରାଯାଇଥିଲା। ସେଥିରେ ଦେଶର ଅଣକଂଗ୍ରେସୀ ବରିଷ୍ଠନେତାମାନେ** ଯୋଗ ଦେଇଥିଲେ। କିନ୍ତୁ ଯେଉଁ ସମୟରେ ନିର୍ବାଚନ ହେବ ବୋଲି ଠିକ୍ ହୋଇଥିଲା ତାହାକୁ ଘୁଞ୍ଚାଇ ଦେବା ପାଇଁ ମୁଁ ସ୍ଥିର କରିଥିଲି। ଯଦି ନିର୍ବାଚନ ଦୁଇମାସ ଘୁଞ୍ଚି ନଥାନ୍ତା ତେବେ ଜନତାଦଳ ସଂଖ୍ୟା ଗରିଷ୍ଠତା ପାଇଥାନ୍ତା। ଏବର ନିର୍ବାଚନ ୫୦/୬୦ ଦଶକ ପରି ନୁହେଁ। ୧୫ ଦିନ ମଧ୍ୟରେ ନିର୍ବାଚନ ଶେଷ। ସେହି ଅନୁଯାୟୀ ମଧ୍ୟ ଭୋଟରଙ୍କ ମାନସପଟ। ମାସକ ତଳର ଭାଷଣ ଆଉ ତାଙ୍କର ମନେ ରହୁନାହିଁ।

ପ୍ରଶ୍ନ- ଗୋଟିଏ ସମୟରେ ଆପଣ ବହୁ ସଂପତ୍ତିର ଅଧିକାରୀ ଥିଲେ, କିନ୍ତୁ ପରବର୍ତ୍ତୀ ପର୍ଯ୍ୟାୟରେ ତାହାକୁ ବିକ୍ରିକରି ଦେବାର କାରଣ କ'ଣ ?

ବିଜୁ- ମୁଁ ପ୍ରଥମରୁ କହିରଖିଛି ରାଜନୀତିର ଅନ୍ୟ ନାମ ହେଉଛି ସମାଜସେବା। ସମାଜସେବା ପାଇଁ ସବୁବେଳେ ଅର୍ଥର ଆବଶ୍ୟକତା ରହିଛି। ବିଜୁ ପଟ୍ଟନାୟକ ପାଖକୁ ଯିଏ ଯେତେବେଳେ ଆସିଛି ସେତେବେଳେ ସେ ଖାଲି ହାତରେ ଫେରିନାହିଁ। ବିଭିନ୍ନ ସମୟରେ ବିଜୁ ପଟ୍ଟନାୟକ ଦଳ ଗଢ଼ିଛି। ନୂଆନୂଆ ନେତା ସୃଷ୍ଟି କରିଛି। ନିର୍ବାଚନ ଲଢ଼ିବା ପାଇଁ ପ୍ରାର୍ଥୀମାନଙ୍କୁ ଟିକେଟ୍ ଦେଇଛି। ଏସବୁ ପାଇଁ ଦରକାର ଟଙ୍କା। ବିଜୁ ପଟ୍ଟନାୟକ କେଉଁଠୁ କେତେ ପାଣ୍ଠି ଯୋଗାଡ଼ କରିବ ? ସେଥିପାଇଁ ତାକୁ ବିକିବାକୁ ପଡ଼ିଛି ତାର ଅତି ଆପଣାର କଳିଙ୍ଗ ଟ୍ୟୁବ୍‌ସ, କଳିଙ୍ଗ ଏୟାରଲାଇନ୍ସ,

---

* ୧୯୯୪ ମସିହା ଡିସେମ୍ବର ୩୧ ତାରିଖରେ ଜନତା ମଇଦାନଠାରେ ଏକ ମହାସମାବେଶ ହୋଇଥିଲା।

** ଏନ୍.ଟି. ରାମାରାଓ, ଏଚ.ଡ଼ି. ଦେବଗୌଡ଼ା, ରାମକୃଷ୍ଣ ହେଗେଡ଼େ, ଲାଲୁପ୍ରସାଦ ଯାଦବ, ମଧୁ ଦଣ୍ଡବତେ ପ୍ରମୁଖ ଯୋଗ ଦେଇଥିଲେ।

Digitized by srujanika@gmail.com

କଲିକତା ଓ ଦିଲ୍ଲୀ ବାସଭବନ ଇତ୍ୟାଦି ଇତ୍ୟାଦି ଅନେକ କିଛି। ତଥାପି ବି ବିଜୁ ପଟ୍ଟନାୟକର ଅଭାବ ପୂରଣ ହୁଏ ନାହିଁ, ବେଳେବେଳେ ତ ସୁଧରେ ଧାର ସୂତ୍ରରେ ଟଙ୍କା ଆଣିବାକୁ ପଡ଼ିଥାଏ। ଏମିତି ବି ସମୟ ଆସିଛି ବିଜୁ ପଟ୍ଟନାୟକ ପାଖରେ ଟଙ୍କା ନ ଥାଏ। ତା' ହାତ ଖାଲି। ଏପରିକି ଖାଇବାକୁ ନଥାଏ। ରାତିରେ ରୁଟି, ଗୁଡ଼ ଖାଇକି ଚଳିଛି। କିନ୍ତୁ ଜଗନ୍ନାଥଙ୍କ ଆଶୀର୍ବାଦ ମୋ ଉପରେ ରହିଛି। ସେହି ଅଭାବ ବେଶି ଦିନ ଲାଗି ରହେନାହିଁ। ଘର, ଜାଗା ବିକ୍ରି ହୋଇଗଲେ ବି ବିଜୁ ପଟ୍ଟନାୟକ ଯେଉଁ ସ୍ୱଚ୍ଛକୁ ସେଇ ସ୍ୱଚ୍ଛ। ତେବେ ବିଜୁ ପଟ୍ଟନାୟକର ଏକ ସ୍ୱାଭିମାନ ଥାଏ। ତାକୁ ସମସ୍ତେ କଳିଙ୍ଗର ଷଣ୍ଢ ବୋଲି କହନ୍ତି। ନିଜକୁ କଳିଙ୍ଗର ଖାରବେଳ କହିଲେ ବିଜୁକୁ ଆତ୍ମସନ୍ତୋଷ ମିଳିଥାଏ। ମୋର ଅଭାବ ଯେପରି କଳିଙ୍ଗବାସୀ ନ ଜାଣନ୍ତୁ ସେଥିପାଇଁ ସବୁବେଳେ ମୁଁ ଜଗ୍ନନାଥଙ୍କ ନିକଟରେ ପ୍ରାର୍ଥନା କରିଥାଏ। ଜଗନ୍ନାଥ ହିଁ ମୋ କଥା ଶୁଣନ୍ତି।

ପ୍ରଶ୍ନ- ୪୫ ବର୍ଷ ଧରି ଆପଣ ରାଜନୀତି ସହ ସଂପୃକ୍ତ ଅଛନ୍ତି। ଅନ୍ୟ ନେତାଙ୍କ ପରି ଆପଣ ପାରିବାରିକ ରାଜନୀତିରେ ବିଶ୍ୱାସ କରନ୍ତି କି ?

ବିଜୁ- ବିଜୁ ପଟ୍ଟନାୟକର ପରିବାର ହେଉଛନ୍ତି କଳିଙ୍ଗବାସୀ। ପାଠ ପଢ଼ିବା ବେଳେ ବିଜୟାନନ୍ଦ ପଟ୍ଟନାୟକ ଥିଲି। କେବେ ଭାବିନଥିଲି ଯେ, ଏମିତି ମଣିଷ ହେବି ଯିଏ ଅନ୍ୟମାନଙ୍କ ପାଇଁ ଆଦର୍ଶ ହୋଇଯିବ। ରାଜ୍ୟ ତଥା ଦେଶର ନେତୃତ୍ୱ ନେବ। ଆନ୍ତର୍ଜାତିକ ସ୍ତରରେ ତା'ର କୀର୍ତ୍ତି କିମ୍ବଦନ୍ତୀ ହୋଇ ରହିଯିବ। କ୍ରମେ ମୁଁ ବିଜୟାନନ୍ଦରୁ ବିଜୁ ହୋଇଗଲି। ଓଡ଼ିଶାର ଜନସାଧାରଣଙ୍କ ସୁଖଦୁଃଖର ସାଥୀ ବନିଗଲି, ଏକାକୀ ନେତା ଥିବା ବିଜୁ ପଟ୍ଟନାୟକ ଗଣନେତା ପାଲଟିଗଲା। ଅନ୍ୟର ଆଶୀର୍ବାଦ ନେଇ ନେତା ହୋଇଥିବା ବିଜୁ ତା'ର ଆଶୀର୍ବାଦ ଦେଇ ଶହ ଶହ ନେତା ସୃଷ୍ଟି କଲା। ଏହାଠାରୁ ଅଧିକ ଆତ୍ମସନ୍ତୋଷ କ'ଣ ବିଜୁ ପଟ୍ଟନାୟକକୁ ମିଳିଥାନ୍ତା ? ପୁଅ, ପତ୍ନୀ କିମ୍ବା ପରିବାରରୁ ଯଦି କାହାକୁ ରାଜନୀତିକୁ ଆଣିଥାନ୍ତା ତା'ର ଲୋଭ ମଧ୍ୟ ସୃଷ୍ଟି ହୋଇଥାନ୍ତା। ସେ ଚାହିଁବ ତା'ପରେ ସେମାନେ ଯେମିତି କ୍ଷମତାରେ ରହିବେ। ଏଭଳି ଚିନ୍ତାଧାରା ସହିତ ବିଜୁ ପଟ୍ଟନାୟକ ସାରାଜୀବନ ସାଲିସ କରିନାହିଁ। ମୁଁ ଚାହେଁ ଓଡ଼ିଶାବାସୀ ବିଜୁକୁ ତା'ର ବର୍ତ୍ତମାନରେ ଯେପରି ଭଲ ପାଉଛନ୍ତି ସେଇ ଭଲ ପାଇବା ତା'ର ଅବର୍ତ୍ତମାନରେ ମଧ୍ୟ ରହୁ। ପାରିବାରିକ ରାଜନୀତି ହେଲେ ବିଜୁ ଆଉ ଜନସାଧାରଣଙ୍କ ଶ୍ରଦ୍ଧାଭାଜନ ହୋଇପାରିବ ନାହିଁ। ବିଜୁ ପଟ୍ଟନାୟକକୁ ଓଡ଼ିଶାବାସୀ

Digitized by srujanika@gmail.com

ନିଜର ବୋଲି ଭାବିପାରିବନାହିଁ। ସେ ହୋଇଯିବ ଏକ ନିର୍ଦ୍ଦିଷ୍ଟ ଦଳର ଓ ପରିବାରର ନେତା।

ପ୍ରଶ୍ନ- ଗୋଟିଏ ସମୟରେ ଆପଣଙ୍କ ବିରୋଧୀମାନେ ଆପଣଙ୍କ ଚରିତ୍ର ସଂହାର କରି ଅପପ୍ରଚାର କରୁଥିବାର ଦେଖା ଯାଇଥିଲା....

ବିଜୁ- ଏହା ଷାଠିଏ ଦଶକର ଘଟଣା। ମୋତେ ବଦନାମ କରିବାପାଇଁ ମୋ ରାଜନୈତିକ ପ୍ରତିପକ୍ଷମାନେ ବହୁ ଉଦ୍ୟମ କରିଥିଲେ। ବିଜୁ ମଦୁଆ। ବିଜୁ ଦୁର୍ନୀତିଗ୍ରସ୍ତ, ବିଜୁ ହତ୍ୟାକାରୀ, ବିଜୁ ଲମ୍ପଟ, ବିଜୁ ଅମୁକ... ଅମୁକ... ଏମିତି ଅନେକ କିଛି। ବିଜୁ ପଟ୍ଟନାୟକ କୌଣସି ଅଭିଯୋଗକୁ ଖାତିର କରେନାହିଁ। ବିଜୁ ଯଦି ଦୁର୍ନୀତିଗ୍ରସ୍ତ ତା'ହେଲେ ତଦନ୍ତ ହେଉ। ତା' ମଧ୍ୟ ହୋଇଛି। ବିଜୁ ପଟ୍ଟନାୟକ ହେଉଛି ଏକମାତ୍ର ନେତା ଯେକି ନିଜ ବିରୋଧରେ ତଦନ୍ତ ପାଇଁ ନିଜେ ଆଦେଶ ଦେଇପାରେ ଏବଂ ତାହାହିଁ ହୋଇଥିଲା। ସେମିତି ଯଦି କହିବି ତେବେ ରାଜନୀତିରେ ବିଜୁ ପଟ୍ଟନାୟକ ହେଉଛି ଗୋଟିଏ ମରଦ। ତେବେ ରାଜନୀତି ହେଉ, କି କାର୍ଯ୍ୟକ୍ଷେତ୍ର ହେଉ, ସମସ୍ତଙ୍କର ଗୋଟିଏ କଥା ମନେ ରଖିବା ଉଚିତ୍ ଯାହା ବିରୋଧରେ ପ୍ରତିପକ୍ଷ ଅଭିଯୋଗ ଆଣନ୍ତି ସେହି ବ୍ୟକ୍ତିହିଁ କିଛି ଭଲକାମ କରୁଛି ଯାହା ଅନ୍ୟମାନଙ୍କ ପାଇଁ ଈର୍ଷାର କାରଣ ହୁଏ।

ପ୍ରଶ୍ନ- ଯୁବକ ଅବସ୍ଥାରେ ରାଜନୀତିରେ ପ୍ରବେଶ କରିଥିବା ବିଜୁ ପଟ୍ଟନାୟକଙ୍କ ବୟସ ଆଜି ୮୦ ପାଖାପାଖି। ଦୀର୍ଘଦିନର ରାଜନୈତିକ ଜୀବନ ମଧ୍ୟରେ ଆପଣଙ୍କ ରାଜନୈତିକ ଶତ୍ରୁଙ୍କ ସମ୍ପର୍କରେ....

ବିଜ- ରାଜନୀତିରେ ଆଜି ଯେ ଶତ୍ରୁ କାଲି ସେ ମିତ୍ର। ଏମିତି ଦେଖିଲେ ତ ବେଳେବେଳେ ବିଜୁ ପଟ୍ଟନାୟକ ବହୁ ନେତାଙ୍କର ଶତ୍ରୁ ହୋଇଯାଏ। ପୁଣି ସମୟ ଆସିଛି ସେଇମାନେ ହିଁ ବିଜୁ ପଟ୍ଟନାୟକଙ୍କୁ ବଂଧୁତାର ହାତ ବଢ଼ାଇ ଦେଇଛନ୍ତି। ମୋତେ ନିର୍ବାଚନରେ ହରାଇବାପାଇଁ ୧୯୭୧ରେ ନନ୍ଦିନୀ ଶତପଥି ଆପ୍ରାଣ ଉଦ୍ୟମ କରିଥିଲେ। ମୋ ବିରୋଧରେ ଏମିତି ପ୍ରଚାର କରୁଥିଲେ ଯେ, ଶତ୍ରୁ ମଧ୍ୟ ସେମିତି କହିବ ନାହିଁ। କିନ୍ତୁ ସମୟ ଆସିଲା ୧୯୭୭ରେ ମୋ ପାଖରେ ସେ ଶରଣାପନ୍ନ ହେଲେ। ମୁଁ ହିଁ ତାଙ୍କୁ ଟିକେଟ ଦେଲି। ଇଏ ହେଉଛି ରାଜନୀତିର ଦୁନିଆ। ସେହିପରି ହରେକୃଷ୍ଣ ମହତାବଙ୍କ ପ୍ରସଙ୍ଗ। ସିଏ ମୁଖ୍ୟମନ୍ତ୍ରୀ ହେଲେ ଆଉ ମୁଁ ତାଙ୍କୁ ସମର୍ଥନ କରୁଥାଏ। ଦିଲ୍ଲୀରୁ ନେତା ଆସିଲେ ସେମାନଙ୍କ ଦେଖାଶୁଣା ପୁରୀ ବି.ଏନ.ଆର

Digitized by srujanika@gmail.com

ହୋଟେଲରେ ମୁଁ କରେ। ସମୟ ଆସିଲା ମହତାବ - ବିଜୁ ପଟ୍ଟନାୟକଙ୍କ ସମ୍ପର୍କ ଅହି-ନକୁଳ ହୋଇଗଲା। ରାଜନୀତି ହେଉକି ସାଧାରଣ ଜୀବନ ହେଉ ବିଜୁ ପଟ୍ଟନାୟକ ଯେଉଁ ସ୍ତରରେ ପହଞ୍ଚିଛି ସେଠାରେ ସେ କାହାକୁ ଶତ୍ରୁ ମନେକରେ ନାହିଁ। ବିଜୁ ପଟ୍ଟନାୟକ ହେଉଛି ସମସ୍ତଙ୍କର ବନ୍ଧୁ। ରାଜ୍ୟ ଓ ଦେଶର ହିତ ପାଇଁ ସେ କାମ କରେ। ତାକୁ ଯିଏ ଶତ୍ରୁ ଭାବେ ସେଥିରେ ବିଜୁ ପଟ୍ଟନାୟକର କିଛି ଯାଏ, ଆସେ ନାହିଁ।

ପ୍ରଶ୍ନ- ନିର୍ବାଚନ ପ୍ରଚାର ସମୟରେ ଗୋଟିଏ ଗୋଟିଏ ଚରିତ୍ର ଆପଣଙ୍କୁ କୁଆଡ଼େ ପ୍ରଭାବିତ କରିଥାନ୍ତି....

ବିଜୁ- ହଁ ସେଭଳି ଚରିତ୍ର ହିଁ ବେଳେବେଳେ ମୋ ଆଖି ଫିଟାଇ ଦିଅନ୍ତି। ୧୯୯୦ ବିଧାନସଭା ନିର୍ବାଚନ ପ୍ରଚାର ସମୟରେ ପଶ୍ଚିମ ଓଡ଼ିଶାରେ ଏକ ବୃଦ୍ଧାଙ୍କ ସହିତ ମୋର ଭେଟ ହେଲା। ବୃଦ୍ଧା ଜଣକ କହିଲେ ବିଜୁ ଜିତିଲେ କେତେ ନ ଜିତିଲେ କେତେ। ଆମପରି ଗରିବ ମୂଲିଆଙ୍କ ପାଇଁ ସବୁ ସରକାର ସମାନ। କେହି ଆମ କଥା ବୁଝନ୍ତିନି। ବିଜୁର ଯଦି ସାହସ ଅଛି ତେବେ ସରକାର ଗଢ଼ିଲେ ଆମ ମୂଲ ବଢ଼ାଇ ଦେଉ। ଆମେ କେତେ ହିନସ୍ତା ହେଉଛୁ ସେ କ'ଣ ଜାଣୁଛି। ସେଇ ବୃଦ୍ଧାଙ୍କ କଥା ମୋ ଆଖି ଆଗରେ ନାଚି ଉଠୁଥାଏ। ମୁଖ୍ୟମନ୍ତ୍ରୀ ଭାବେ ଶପଥ ନେବାପରେ ପ୍ରଥମେ ଶ୍ରମିକଙ୍କ ମଜୁରୀ ଏଗାରଟଙ୍କାରୁ ପଚିଶଟଙ୍କାକୁ ବଢ଼ାଇଥିଲି। ଯଦିଓ ଏହାକୁ ମନ୍ତ୍ରିମଣ୍ଡଳର ବହୁ ମନ୍ତ୍ରୀଙ୍କ ସମେତ ଦଳର ବହୁ ନେତା ବିରୋଧ କରିଥିଲେ।

ପ୍ରଶ୍ନ- ମୁଖ୍ୟମନ୍ତ୍ରୀ ଥିବା ସମୟରେ ଆପଣ ଅଫିସରଙ୍କୁ ମାଡ଼ମାରିବା ପାଇଁ ଜନସାଧାରଣଙ୍କୁ ଆହ୍ୱାନ ଦେଇ ବେଆଇନ୍ କାମ କରି ନ ଥିଲେ କି ?

ବିଜୁ- ସେଇ ପ୍ରସଙ୍ଗକୁ ଯାଉଛି। ପଶ୍ଚିମ ଓଡ଼ିଶାର ଏକ ଆଦିବାସୀ ଅଞ୍ଚଳକୁ ଯାଇଥିଲି। ସେଠାରେ ମହିଳାମାନେ ଅଭିଯୋଗ କଲେ ଯେ, ତାଙ୍କ ସ୍ୱାମୀମାନେ ମଦପିଇ ମାତାଲ ହେଉଛନ୍ତି। ମୁଁ କହିଲି ଦୁର୍ଗତୀନାଶିନୀ ଦୁର୍ଗା। ମୋର ସାଙ୍କେତିକ ଭାଷାକୁ ସେମାନେ ଗ୍ରହଣ କରିନେଲେ। ପରଦିନ ଜାଣିବାକୁ ପାଇଲି ଉକ୍ତ ମହିଳାମାନେ ମଦ୍ୟପ ସ୍ୱାମୀଙ୍କୁ ନିସ୍ତୁକ ବାଡ଼େଇଛନ୍ତି ଏବଂ ସେମାନେ ଆଉ ମଦ୍ୟପାନ କଲେ ନାହିଁ। ଏହି ଘଟଣା ମୋ ଉପରେ ବେଶ୍ ପ୍ରଭାବ ପକାଇଥିଲା। ଦଳୀୟକର୍ମୀ ଏବଂ ନେତା ତଥା ସାଧାରଣ ସଭାରେ ଲୋକମାନେ ବିଭିନ୍ନ ସମୟରେ ଅଭିଯୋଗ କଲେ ଯେ, ଲାଞ୍ଚ ନ ଦେଲେ କାମ ହେଉନାହିଁ। ସରକାରଙ୍କ ନିର୍ଦ୍ଦେଶକୁ ଅଫିସରମାନେ

Digitized by srujanika@gmail.com

ଖାତିର କରୁନାହାନ୍ତି । ଏହାର ପ୍ରତିକାର ମୁଁ କରିଛି । ସାଧାରଣରେ ମୁଁ ଘୋଷଣା କଲି ଯେ ଯେଉଁ ଅଫିସର ଅମାନିଆ ହେଉଛି ତାକୁ ମାଡ଼ ମାର । ମୋର ଏହି ଘୋଷଣାକୁ ଅଫିସରମାନେ ବିରୋଧ କଲେ । ଶାସନର ମୁଖ୍ୟ ହୋଇ ସରକାରୀ କର୍ମଚାରୀଙ୍କୁ ମାଡ଼ ମାରିବା ପାଇଁ ଆହ୍ୱାନ ଦେଇ ମୁଁ ଆଇନ ବିରୋଧୀ କାମ କରୁଛି ବୋଲି ଅମଲା ସଂଘଗୁଡ଼ିକ ଫେରାଦ ହେଲେ । ମୁଁ ସେମାନଙ୍କୁ ଆଶ୍ୱାସନା ଦେଲି ଭଲ କାମ କରୁଥିବା ଅଫିସରଙ୍କୁ ଏହା ଫଳରେ ଅସୁବିଧା ହେବନାହିଁ । ଅନେକ କ୍ଷେତ୍ରରେ ଅଫିସରମାନେ ମାଡ଼ ଖାଇଲେ । କିନ୍ତୁ ଏହା ଫଳରେ ଢିଲା ହୋଇଯାଇଥିବା ଶାସନ ତଥା ବେଆଇନରେ ଯାଉଥିବା ଅଫିସରମାନେ ବାଟକୁ ଆସିଯାଇଥିଲେ । କଥାରେ ଅଛି – ମାଡ଼କୁ ମହାଦେବ ଡରନ୍ତି । ତେଣୁ ଅମଲାତନ୍ତ୍ରକୁ ବାଟକୁ ଆଣିବା ପାଇଁ ମାଡ଼ ଘୋଷଣା କରି ଆଦୌ ଭୁଲ କାମ କରିନଥିଲି ବୋଲି ଏବେ ଜନସାଧାରଣ ବୁଝି ପାରିଥିବେ ନିଶ୍ଚିତ ।

ପ୍ରଶ୍ନ- ଆପଣ ମୁଖ୍ୟମନ୍ତ୍ରୀ ଥିବା ସମୟରେ କର୍ମଚାରୀ ବିରୋଧୀ ହୋଇଯାଇଥିଲେ ବୋଲି ଅଭିଯୋଗ ହୋଇଥିଲା । ଛୁଟିଦିନରେ କର୍ମଚାରୀମାନେ ସରକାରୀ ଗାଡ଼ି ବ୍ୟବହାର କରିପାରିବେ ନାହିଁ, ଯାହାର ଘର ଥିବ ସେ ସରକାରୀ କ୍ୱାର୍ଟର୍ସରେ ରହିପାରିବେ ନାହିଁ ପ୍ରଭୃତି ନିଷ୍ପତ୍ତି ନେଇ ଆପଣ ବେଶ୍ ଚର୍ଚ୍ଚିତ ହୋଇଯାଇଥିଲେ...

ବିଜୁ- ମୁଁ ଯେଉଁ ନିଷ୍ପତ୍ତି ନେଇଥିଲି ତାହା ଜନସାଧାରଣଙ୍କ ହିତପାଇଁ । ରାଜ୍ୟରେ ସରକାରୀ କର୍ମଚାରୀଙ୍କ ସଂଖ୍ୟା ହେଉଛି ସମୁଦାୟ ଲୋକ ସଂଖ୍ୟାର ୪ ପ୍ରତିଶତ ମଧ୍ୟରେ । ଅଥଚ ସେମାନଙ୍କ ପାଇଁ ସବୁ ସୁବିଧା ସୁଯୋଗ । ଛୁଟିଦିନରେ କର୍ମଚାରୀ ଫାଇଲ କାମ କରିବ ନାହିଁ, ତା' ହେଲେ ସରକାରୀ ଯାନକୁ ଛୁଟିଦିନରେ କାହିଁକି ବ୍ୟବହାର କରିବ ? ନିଜ ନିଜ ସ୍ୱାର୍ଥ ପାଇଁ କର୍ମଚାରୀମାନେ ଛୁଟିଦିନରେ କାମ କରିଥାନ୍ତି । ସେହିପରି ଯାହାର ଘରଅଛି ତାକୁ ସରକାରୀ କ୍ୱାର୍ଟର କାହିଁକି ମିଳିବ ? ଘର ନ ଥିବା ଅନ୍ୟଜଣେ କର୍ମଚାରୀଙ୍କୁ କ୍ୱାର୍ଟର ମିଳିବା ଉଚିତ୍ । ବିଲେଇ ବେକରେ ଘଣ୍ଟି ବାନ୍ଧିବାକୁ କେହି ସାହସ କରୁ ନ ଥିଲେ । ଦୁଃସାହସିକ ବିଜୁ ପଟ୍ଟନାୟକ ଘଣ୍ଟି ବାନ୍ଧିଲା, କୌଣସି ସମାଲୋଚନାକୁ ତାର ଖାତିର ନଥାଏ ।

ପ୍ରଶ୍ନ- ପଚାଶ ବର୍ଷ ରାଜନୀତି ଅଭିଜ୍ଞତାକୁ ନେଇ ଆପଣ ଆଗେଇ ଚାଲିଛନ୍ତି । ସେତେବେଳର ରାଜନୀତି ଏବଂ ବର୍ତ୍ତମାନର ରାଜନୀତି ଭିତରେ କିଛି ତଫାତ୍ ଦେଖୁଛନ୍ତି କି ?

Digitized by srujanika@gmail.com

ବିଜୁ- ହଁ ଆକାଶ ପାତାଳ ପ୍ରଭେଦ। ସେତେବେଳେ ପ୍ରାର୍ଥୀ ହୋଇ ଗାଁର ମୁଖିଆମାନଙ୍କୁ ହାତେଇଲେ ଆଉ ନିର୍ବାଚନ ପ୍ରଚାରର ଆବଶ୍ୟକତା ନଥାଏ। ଗାଁର ମୁଖିଆଙ୍କ ହାତରେ ଭୋଟ ଥାଏ। ମୁଖିଆ ଯାହାକୁ ଚାହାନ୍ତି ଗାଁର ଭୋଟ ସେଇଆଡ଼େ। ବୟସ୍କ ଓ ମୁରବୀ ଶ୍ରେଣୀ ଲୋକଙ୍କ କଥା ଗ୍ରାମବାସୀ ମାନନ୍ତି। ଏବେ ପରିସ୍ଥିତି ସଂପୂର୍ଣ୍ଣ ବଦଳି ଯାଇଛି। ଯୁବକମାନେ ହେଉଛନ୍ତି ଭୋଟର ପ୍ରାଣକର୍ତ୍ତା। ପୁଣି ଗାଁ ଗାଁ ବୁଲି ଭୋଟ ଭିକ୍ଷା କରିବାକୁ ପଡୁଛି। ୧୯୯୫ ବିଧାନସଭା ନିର୍ବାଚନରେ ନିଜପାଇଁ ପ୍ରଚାର କରିବାକୁ ମୋତେ ନାକେଦମ ହେବାକୁ ପଡ଼ିଥିଲା। ସେତେବେଳେ ମୋ ବିରୁଦ୍ଧରେ ବି.ଜେ.ପିର ଯୁବନେତା ସୌମ୍ୟରଞ୍ଜନ ପଟ୍ଟନାୟକ ଭୁବନେଶ୍ୱରରେ ପ୍ରାର୍ଥୀ ଥିଲେ। ପ୍ରଥମେ ମୁଁ ତାଙ୍କ ପ୍ରାର୍ଥିତ୍ୱ ପ୍ରତି ଗୁରୁତ୍ୱ ଦେଉନଥିଲି, ସେ ସାରା ନିର୍ବାଚନ ମଣ୍ଡଳୀ ଚାଲିଚାଲି ପ୍ରଚାର କଲେ, ଏହାର ପ୍ରଭାବ ଲୋକଙ୍କ ଉପରେ ପଡ଼ିଲା। ମୋ ଦଳର କର୍ମୀମାନେ ମୋତେ ଜଣାଇଲେ ବିଜୁ ପଟ୍ଟନାୟକ ନିଜ ନିର୍ବାଚନମଣ୍ଡଳୀ ଭୁବନେଶ୍ୱରରେ ଅଧିକ ସମୟ ନ ଦେଲେ ହାରିଯାଇପାରନ୍ତି। ନିର୍ବାଚନ ପ୍ରଚାର କାଟଛାଣ୍ଟ କରି ଭୁବନେଶ୍ୱରରେ ମୋତେ ଅଧିକ ସମୟ ଦେବାକୁ ପଡ଼ିଲା। ସୌମ୍ୟ ପରି ମୋତେ ମଧ୍ୟ ବୁଥ୍ ପରେ ବୁଥ୍ ବୁଲିବାକୁ ପଡ଼ିଲା। ଯଦି ଭୁବନେଶ୍ୱରରେ ବାନ୍ଧି ନ ହୋଇ ଅନ୍ୟକିଛି ନିର୍ବାଚନମଣ୍ଡଳୀରେ ଦଳୀୟ ପ୍ରାର୍ଥୀଙ୍କ ନିର୍ବାଚନ ପ୍ରଚାର ପ୍ରତି ଅଧିକ ଗୁରୁତ୍ୱ ଦେଇଥାନ୍ତି, ତେବେ ୫୦୦ରୁ ୧୦୦୦ ବ୍ୟବଧାନରେ ହାରିଯାଇଥିବା ଦଳୀୟ ପ୍ରାର୍ଥୀଙ୍କ ଭାଗ୍ୟ ପରିବର୍ତ୍ତନ ହୋଇଥାନ୍ତା ଏବଂ ସେତେବେଳେ ପୁଣିଥରେ ଜନତା ଦଳ କ୍ଷମତାକୁ ଆସିଥାନ୍ତା। ଅବଶ୍ୟ ଟାଲେଣ୍ଟେଡ୍ ଯୁବକମାନେ ଅଧିକ ସଂଖ୍ୟାରେ ରାଜନୀତିକୁ ଆସିଲେ ଦେଶର ଭାଗ୍ୟ ବଦଳିଯିବ।

ପ୍ରଶ୍ନ- ଏମିତି ୫୦୦ରୁ ୧୦୦୦ ଭୋଟ ବ୍ୟବଧାନରେ ହାରିଥିବା ଦଳୀୟ ପ୍ରାର୍ଥୀଙ୍କ ସଂଖ୍ୟା କେତେ ଥିଲା ?

ବିଜୁ- ନିର୍ବାଚନ ପରେ ପରେ ସମୀକ୍ଷା କରିଥିଲୁ, ଏବେ ସଠିକ୍ ମନେ ପଡୁନାହିଁ। ତେବେ ସଂଖ୍ୟା ପ୍ରାୟ ୩୦ରୁ ୪୦ ପାଖାପାଖି ଥିଲା।

ପ୍ରଶ୍ନ- ବିଜୟାନନ୍ଦରୁ ବିଜୁ ହେବା ପଛରେ ରହସ୍ୟ କ'ଣ ଥିଲା ?

ବିଜୁ- ବାପା ଦେଇଥିଲେ ମୋ ନାଁ ବିଜୟାନନ୍ଦ। ଆଉ କଳିଙ୍ଗବାସୀ ତାର ନାମ ଦେଲେ ବିଜୁ। ତେବେ ବିଜୁ ନାମକରଣ ପଛରେ ଏକ ରହସ୍ୟ ଅଛି। ବହୁଦିନ ତଳେ ଭୋଟ ପ୍ରଚାର ସାରି ଭୁବନେଶ୍ୱର ଫେରୁଥାଏ। ସେଇଟା ବୋଧହୁଏ ସାଲେପୁର

Digitized by srujanika@gmail.com

ହେବ ମନେପଡୁନାହିଁ। ପରିସ୍ରା ଲାଗିଲା। ଡ୍ରାଇଭରକୁ କହିଲି ଗାଡ଼ି ରଖ। ରାସ୍ତାପାଖରେ ଅନ୍ଧାରିଆ ସ୍ଥାନ ଦେଖି ପରିସ୍ରା କଲି। ଏହି ସମୟରେ ରାସ୍ତାରେ ଯାଉଥିବା ଲୋକ କଥାବାର୍ତ୍ତା ହେଉଥାନ୍ତି। ବିଜୁ ନିର୍ବାଚନ ପ୍ରଚାର କରିବାକୁ ଯାଇଛି। ଏହି ରାସ୍ତା ଦେଇ ଫେରିବ। ଗାଡ଼ି ନିକଟକୁ ଫେରିବା ସମୟରେ କେତେଜଣ ବ୍ୟକ୍ତି ମୋ ନିକଟକୁ ଚାଲିଆସି ମୋତେ ବଲବଲ କରି ଅନେଇଲେ, ସେମାନେ ଡ୍ରାଇଭରକୁ ପଚାରିଲେ ଇଏ ବିଜୁ କି ? ଡ୍ରାଇଭର ମୁଣ୍ଡ ଟୁଙ୍ଗାରି ଦେବାରୁ ବିଜୁ ଆସିଛି ବିଜୁ ଆସିଛି ବୋଲି ପ୍ରଚାର ହୋଇଗଲା। ନିକଟ ବଜାରରୁ ଲୋକମାନେ ମୋ ଆଡ଼କୁ ମାଡ଼ି ଆସିଲେ, ସ୍ଲୋଗାନ ପରେ ସ୍ଲୋଗାନ - ବିଜୁ ଜିନ୍ଦାବାଦ। ସେଇ ଦୃଶ୍ୟକୁ ମୁଁ ଭୁଲିପାରୁ ନଥାଏ। ଓଡ଼ିଶାର ଜନସାଧାରଣ ବିଜୟାନନ୍ଦକୁ ବିଜୁରେ ପରିଣତ କଲେଣି, ପୁଣି ଅତିଆପଣାର ତୁ ଡାକରେ, ମୁଁ ଆଉ ବିଜୟାନନ୍ଦ ହେବାକୁ ପସନ୍ଦ କଲିନି। କ୍ରମେ ଓଡ଼ିଶାର ଜନସାଧାରଣ ମଧ୍ୟ ବିଜୁ ନାମକୁ ଆଦରି ନେଲେ। ତୁ ତା ଡାକରେ ବିଜୁବାବୁ ହୋଇଗଲା ଓଡ଼ିଶାବାସୀର ଅତିଆପଣାର।

ପ୍ରଶ୍ନ- ମୁଖ୍ୟମନ୍ତ୍ରୀ ହୋଇ ମଧ୍ୟ ଆପଣ ରାସ୍ତାକଡ଼ ଦୋକାନରୁ ଚକୁଳି ଖାଉଥିଲେ, ଅଣ୍ଡା କିଣୁଥିଲେ, ରିକ୍ସାରେ ଯାଉଥିଲେ...

ବିଜୁ- ରାଜାରାଜୁଡ଼ା ଶାସନ ସମୟରେ ଅନ୍ଧାରିବିଜେ ସଂପର୍କରେ ଆପଣ ଶୁଣିଥିବେ। ମୋ ମତରେ ଏଭଳି ବିଜୟର ଯଥାର୍ଥତା ରହିଛି। ରାଜା ହୁଅନ୍ତୁ କି ମୁଖ୍ୟମନ୍ତ୍ରୀ ହୁଅନ୍ତୁ କି ନେତା ହୁଅନ୍ତୁ ସବୁଠି କାନକୁହା ଲୋକ ଥାନ୍ତି। ସେମାନେ କେବଳ ପ୍ରଶଂସା ଗାନ କରନ୍ତି, ବହୁ ସମୟରେ ରାଜ୍ୟର ପ୍ରକୃତ ଚିତ୍ର ତାଙ୍କ ଦୃଷ୍ଟିକୁ ଅଣାଯାଇନଥାଏ। ସେଥିପାଇଁ ତ ମୁଁ ହଠାତ୍ ଗାଡ଼ି ରଖି ରାସ୍ତାକଡ଼ରେ ଥିବା ଦୋକାନରୁ ଚକୁଳି ଖାଇଛି। ଅଣ୍ଡା କିଣିଛି, ସେମାନଙ୍କ ଅବସ୍ଥା ପଚାରି ବୁଝିଛି, ମୋ ପ୍ରତି ଲୋକଙ୍କର କି ଧାରଣା ରହିଛି ତା ମଧ୍ୟ ସେମାନଙ୍କୁ ପଚାରେ। ଅବଶ୍ୟ ତା ପ୍ରତିବଦଳରେ ସେମାନଙ୍କୁ ଆର୍ଥିକ ପୁରସ୍କାର ଦେଇଥାଏ। ସେହିପରି ରିକ୍ସାରେ ସଚିବାଳୟ ଯିବା ଯୋଗୁଁ ରିକ୍ସାଚାଳକ ସହିତ ମନଖୋଲା ଦୁଇପଦ ଗପିପାରେ। ସବୁବେଳେ ଚାରିକାନ୍ଥ ମଧ୍ୟରେ ବାନ୍ଧି ନ ହୋଇ ଏହା କରିବାଦ୍ୱାରା ରାଜ୍ୟର ପ୍ରକୃତ ଚିତ୍ର ମୋତେ ମିଳିଥାଏ।

ପ୍ରଶ୍ନ- ଗୋଟିଏ ସମୟରେ ଆପଣ କହିଥିଲେ ଯେ ପାରାଦ୍ୱୀପ୍ ଏକ୍ସପ୍ରେସ୍ ହାଇଓ୍ୱେ ନିର୍ମାଣରେ ବହୁ ବ୍ୟକ୍ତିଙ୍କର ଦୁର୍ଘଟଣାରେ ମୃତ୍ୟୁ ଘଟିଥିଲେ ମଧ୍ୟ ଆପଣଙ୍କର

Digitized by srujanika@gmail.com

ସେଥିପ୍ରତି ଅନୁଶୋଚନା ନଥିଲା। ଏଥିପାଇଁ ଆପଣଙ୍କୁ ନରହନ୍ତା ବିଜୁ ବୋଲି ପ୍ରତିପକ୍ଷ ଦଳ ଅଭିଯୋଗ କରିବାକୁ ପଛାଉ ନ ଥିଲେ ?

ବିଜୁ- ମୋ ବକ୍ତବ୍ୟକୁ ଆପଣ ଠିକ୍ ଭାବେ ବୁଝି ପାରିନାହାନ୍ତି। ପ୍ରଚୁର ପରିମାଣରେ ଲୁହାପଥର ରପ୍ତାନି ହେବାର ଦର୍ଶାଇ ପାରାଦ୍ୱୀପ ବନ୍ଦର ନିର୍ମାଣ ହେଲା। ଅଥଚ ଲୁହାପଥର ଖଣି ଦୈତାରୀଠାରୁ ପାରାଦ୍ୱୀପ ପର୍ଯ୍ୟନ୍ତ ରାସ୍ତାନାହିଁ। ତାହାହେଲେ ପାରାଦ୍ୱୀପ ବନ୍ଦରର ଆବଶ୍ୟକତା ରହିବ କି ? ରାସ୍ତା କେଉଁପଟେ ଯିବ ବୋଲି ସର୍ଭେ ହେଉ ହେଉ ସମୟ ଗଡ଼ିଗଲା। ଦିନେ ସକାଳୁ ମୁଁ ଜଳଖିଆ ଖାଇସାରି ମ୍ୟାପ୍ ଧରିଲି। ଦେଖିଲି ବହୁତ ସହଜ। ମ୍ୟାପ୍ ଉପରେ ଦୈତାରୀରୁ ପାରାଦ୍ୱୀପକୁ ଏକ ନାଲିଗାର ଯୋଡ଼ିଦେଲି। ନିର୍ଦ୍ଦେଶ ଦେଲି ସର୍ଭେ ନୁହେଁ, ନାଲିଗାର ଅନୁଯାୟୀ ରାସ୍ତା ହେବ। ମୁଁ ଚାହିଁଥିଲି ଯଥାଶୀଘ୍ର ପାରାଦ୍ୱୀପ ଏକ୍ସପ୍ରେସ୍ ହାଇୱେ ନିର୍ମାଣ ପାଇଁ। ମୁଁ ମୁଖ୍ୟମନ୍ତ୍ରୀ ପଦରୁ ଚାଲିଗଲେ କାଳେ ଏଇ ହାଇୱେ ନିର୍ମାଣ ହୋଇପାରିବ ନାହିଁ। ତାହା ମଧ୍ୟ ମୋର ଆଶଙ୍କା ଥିଲା। ମୋ ନାଲିଗାର ଅନୁଯାୟୀ ଏକ୍ସପ୍ରେସ୍ ହାଇୱେ ନିର୍ମାଣ ହେଲେ ସେହି ବାଟରେ କେତେକ ଗ୍ରାମ ପଡ଼ିବ ସେଠାକାର ଗ୍ରାମବାସୀମାନେ ବିଭିନ୍ନ ସମୟରେ ଦୁର୍ଘଟଣା ଗସ୍ତ ହେବାର ସଂଭାବନାକୁ ଏଡ଼ାଇ ଦିଆଯାଇ ନପାରେ ବୋଲି ଅଫିସର ମହଲ ଦର୍ଶାଇ ଥିଲେ। ମୋର ନିର୍ଦ୍ଦେଶ ଥିଲା- ରାସ୍ତା ନିର୍ମାଣ କାର୍ଯ୍ୟ ତୁରନ୍ତ କର, ତେଣିକି ଯାହା ହେବ ମୁଁ ବୁଝିବି। ସେତେବେଳେ ମୋର ଏକମାତ୍ର ନିଶା ଥିଲା ପାରାଦ୍ୱୀପ ବନ୍ଦର। ଯେନତେନ ପ୍ରକାରେଣ ପାରାଦ୍ୱୀପ ବନ୍ଦର ନିର୍ମାଣ କାର୍ଯ୍ୟ ଶେଷ ହେବା ପାଇଁ ମୁଁ ଚାହୁଁଥିଲି। ଏକ ପ୍ରବାଦ ଅଛି କିଛି ପାଇବାକୁ ହେଲେ କିଛି ହରାଇବାକୁ ପଡ଼େ। ପାରାଦ୍ୱୀପ ବନ୍ଦର ପାଇଁ କିଛି ଲୋକଙ୍କ ଦୁର୍ଘଟଣାରେ ମୃତ୍ୟୁ ହୋଇଥିଲା ତାହା ସତ୍ୟ, ତେବେ ଏହାକୁ ମୁଁ ସହଜ ଭାବରେ ଧରିନେଇଥିଲି। କାରଣ ତା ବଦଳରେ ଏକ ବୃହତ ବନ୍ଦର ମିଳିବ। ଅବଶ୍ୟ ହାଇୱେ ନିର୍ମାଣରେ ବହୁ ଦୁର୍ଘଟଣା ଘଟିଥିଲା। ଏହି ଦୁର୍ଘଟଣାକୁ ବିଶେଷ ଗୁରୁତ୍ୱ ନଦେବାକୁ ମୁଁ ପୁଲିସ୍‌କୁ ନିର୍ଦ୍ଦେଶ ଦେଇଥିଲି। ମୋ ତୁରନ୍ତ ନିଷ୍ପତ୍ତି ହିଁ ପାରାଦ୍ୱୀପ ବନ୍ଦର ସମେତ ଏକ୍ସପ୍ରେସ୍ ହାଇୱେ ନିର୍ମାଣ କାର୍ଯ୍ୟ ବହୁ ଶୀଘ୍ର ଶେଷ ହେବାରେ ସହାୟକ ହୋଇଥିଲା। ସଂପୃକ୍ତ ଅଞ୍ଚଳର ବାସିନ୍ଦା ଏବେ କହିପାରିବେ ପାରାଦ୍ୱୀପ ବନ୍ଦର ସେମାନଙ୍କ ଚଳଣିରେ ପରିବର୍ତ୍ତନ ଆଣିଛି ନା ନାହିଁ। ବିଜୁ ତାଙ୍କ ମଙ୍ଗଳ ଚାହୁଁଥିଲା ନା ଅମଙ୍ଗଳ ?

Digitized by srujanika@gmail.com

ପ୍ରଶ୍ନ- କେଉଁ କାମ ପାଇଁ ଆପଣ ଅନୁତପ୍ତ ହୁଅନ୍ତି ?

ବିଜୁ- ମୋର ଗୋଟିଏ ଖରାପ ଗୁଣ ଅଛି। ତା'ହେଲା ହଠାତ୍ ରାଗିଯାଏ, ଏବଂ ଚାପୁଡ଼ା ମାରେ। ପରେ ସେଥିପାଇଁ ଅନୁତାପ କରେ। ସେଥିପାଇଁ ମତେ ବହୁ ଟଙ୍କା ଶ୍ରାଦ୍ଧ କରିବାକୁ ପଡ଼େ।

ପ୍ରଶ୍ନ- ଆପଣ ଜଣେ ଖାଦ୍ୟ ରସିକ। କେଉଁ ଖାଦ୍ୟ ଆପଣଙ୍କର ପ୍ରିୟ ?

ବିଜୁ- ପୃଥିବୀର ପ୍ରାୟ ସବୁଦେଶର ଖାଦ୍ୟ ମୁଁ ଖାଇଛି। ଓଡ଼ିଆ ଖାଦ୍ୟ ହେଉଛି ସବୁଠୁ ଶ୍ରେଷ୍ଠ। ଆଉ ଜଗନ୍ନାଥଙ୍କ ଚଉଷଠି ଭୋଗ ତ ସର୍ବଶ୍ରେଷ୍ଠ। ତାର ତୁଳନା ନାହିଁ। ଯେଉଁଥିପାଇଁ ଜଗନ୍ନାଥଙ୍କ ଭକ୍ତ ଏବଂ ସ୍ୱୟଂ ଜଗନ୍ନାଥ ପେଟୁ।

ପ୍ରଶ୍ନ- ଆପଣ ନିଜକୁ ନିଜେ କେବେ ଦୁର୍ଦ୍ଧର୍ଷ ବୋଲି ଭାବିଛନ୍ତି ?

ବିଜୁ- ପିଲାଦିନର ଗୋଟିଏ ଘଟଣା କହିଦେଲେ ଆପଣ ମୁଁ ଦୁର୍ଦ୍ଧର୍ଷ କି ନୁହେଁ ଜାଣିପାରିବେ। ଘଟଣାଟି ହେଲା- ୧୯୨୩ ମସିହାରେ। ସେତେବେଳେ ମୋତେ ମାତ୍ର ସାତବର୍ଷ। ଦିନେ ହଠାତ୍ ମୁଁ ପେଟରେ କଷ୍ଟ ଅନୁଭବ କଲି। କଷ୍ଟ ସମ୍ପର୍କରେ ବାପା କି ମା'ଙ୍କୁ ଜଣାଇଲି ନାହିଁ। ଭାବିଲି ଭଲ ହୋଇଯିବି। କିନ୍ତୁ ଅସହ୍ୟ ବେଦନା, 'ଆପେଣ୍ଡି ସାଇଟସ୍' ତୁରନ୍ତ ପେଟ ଅପରେସନ କରିବାକୁ ପଡ଼ିବ। ସବୁ ଠିକ୍‌ଠାକ୍ ହୋଇଗଲା। ଡାକ୍ତର କହିଲେ, ଆପେଣ୍ଡିସାଇଟସ୍ ଫାଟି ଯାଇଛି ଅପରେସନ କରିବା କଷ୍ଟକର। ଅପରେସନ୍ ନହେଲେ ବଞ୍ଚିବା ସମ୍ଭବ ନୁହେଁ। ବିନା ନିଶ୍ଚେତକରେ ଅପରେସନ ହେବ। ପୁଅକୁ ପଚାରନ୍ତୁ, ସେ କଷ୍ଟ ସମ୍ଭାଳି ପାରିବତ ? ଡାକ୍ତରଙ୍କ କଥା ମୁଁ ଶୁଣୁଥିଲି। ସାଙ୍ଗେ ସାଙ୍ଗେ କହିଲି, ମୁଁ ପ୍ରସ୍ତୁତ। ଅପରେସନ କର। ବିନା ନିଶ୍ଚେତକରେ ମୋର ଅପରେସନ ହୋଇଥିଲା ଏବଂ ଯେଉଁ ଡାକ୍ତର ମ୍ୟାଦର ଓନିଲ ମୋର ଅପରେସନ କରିଥିଲେ ସେ ମୋତେ ସମ୍ବୋଧନ କରିଥିଲେ ସାହସୀ ଓ ଦୁର୍ଦ୍ଧର୍ଷ ବାଳକ।

ପ୍ରଶ୍ନ- ଆପଣ ହେଉଛନ୍ତି ଦୁର୍ଦ୍ଧର୍ଷ ପୁରୁଷ। ପତ୍ନୀଙ୍କୁ କେବେ ଆପଣଙ୍କ ପରି ଦୁର୍ଦ୍ଧର୍ଷ ହେବା ନିମନ୍ତେ ପ୍ରୋତ୍ସାହିତ କରିଛନ୍ତି ?

ବିଜୁ- ମୋ ପତ୍ନୀ ଜ୍ଞାନ ଠିକ୍ ମୋର ଓଲଟା। ସେ ଭାରି ଲଜ୍ଜାଶୀଳା। ମୁଁ ପାଇଲଟ ଥିଲି କିନ୍ତୁ ମୋ ପତ୍ନୀ ସାଇକେଲଟିଏ ବି ଚଳାଇ ଜାଣିନଥିଲେ। ମୁଁ ତାଙ୍କୁ ଆଧୁନିକ ମହିଳାରେ ପରିଣତ କରିବାକୁ ଚାହୁଁଥିଲି। ତାଙ୍କୁ ସାଇକେଲ ଶିଖାଇଥିଲି। କାର୍ ଶିଖାଇବାପାଇଁ ଉଦ୍ୟମ କରିଥିଲି। ବ୍ରିଜଖେଳ, ବଲଡ୍ୟାନସ ମଧ୍ୟ ଶିଖାଇଥିଲି। ତଥାପିବି ସେ ବହୁ ଲାଜକୁଳା ଥିଲେ। ମହିଳା ଶିକ୍ଷକଙ୍କଠାରୁ ତାଲିମ ନେଇ ସେ ଚିତ୍ର

Digitized by srujanika@gmail.com

ଆଙ୍କିବା ଶିଖିଥିଲେ। ସୀତାର ବାଦନ, ଶାସ୍ତ୍ରୀୟ ସଂଗୀତ, ପାର୍ସି କହିବା ସେ ବିବାହ ପୂର୍ବରୁ ଜାଣିଥିଲେ। ମାତ୍ର ଆଧୁନିକ ଆଦବକାଇଦା ତାଙ୍କୁ ଆଦୌ ମାଲୁମ ନଥିଲା। ତାଙ୍କ ପାଇଁ ସବୁଠାରୁ ଲଜ୍ଜାଜନକ ଥିଲା, ମୋ ସହିତ ଯିବା। ମୋର ଉଚ୍ଚତା ବହୁ ଅଧିକ ଓ ତାଙ୍କର ଉଚ୍ଚତା କମ୍ ଥିବାରୁ ଆମେ ଦୁଇଜଣ ବାହାରକୁ ଗଲେ ସମସ୍ତେ ଆମକୁ ଅନାନ୍ତି। ତେଣୁ ଜ୍ଞାନଙ୍କ ପରି ଜଣେ ପତ୍ନୀଙ୍କୁ ମୁଁ ମୋର ପରି ଦୁର୍ଦ୍ଧର୍ଷ କରିବା ପାଇଁ ଯେତେ ଉଦ୍ୟମ କରିଥିଲେ ମଧ୍ୟ ପାରିନଥିଲି।

ପ୍ରଶ୍ନ- ଜେଲ ଭିତରେ ଆପଣ କୁଆଡ଼େ ଚୌଦ୍ୱାର ଟେକ୍ସଟାଇଲ ମିଲ କଥା ଚିନ୍ତା କରିଥିଲେ ?

ବିଜୁ- ତା' ଠିକ୍। ୧୯୪୩ ମସିହାରେ ଇଣ୍ଡିଆନ ନ୍ୟାସନାଲ ଏୟାରୱେଜ୍‌ର ପାଇଲଟ ଏବଂ ଭାରତର ତତ୍କାଳୀନ ବଡଲାଟ ୱାଭେଲଙ୍କର ପାଇଲଟ ହେବାର ସୁଯୋଗ ପାଇଥିଲି। ଏହାର ସୁବିଧା ନେଇ ଭାରତୀୟ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଯୋଗାଇଥିଲି। ଏହା ବ୍ରିଟିଶ ସରକାରଙ୍କ ନଜରକୁ ଆସିଲାପରେ ମୋତେ ଗିରଫ କରାଗଲା। ଜେଲ୍‌ରେ ଥିବାବେଳେ ଭାରତ କିପରି ସ୍ୱାଧୀନ ହେବ ସେଥିପାଇଁ ମୁଁ ଚିନ୍ତା କରିଥିଲି। ମୁଁ ଜାଣିପାରିଥିଲି- ଟଙ୍କା ନ ଥିଲେ କିଛି କାମ କରି ହେବନି। କୋଟି କୋଟି ଟଙ୍କା ଆସିବ କେଉଁଠୁ ? ତା' ମଧ୍ୟ ମୁଁ କଳନା କରିଥିଲି। ଏହା କେବଳ ଜାଲନୋଟ ଛାପିଲେ ହିଁ ସମ୍ଭବ ହେବ। ଏହି ଗବେଷଣା କରୁକରୁ ଟେକ୍ସଟାଇଲ ମିଲ ଚିନ୍ତା ଆସିଲା। କୁଆଡ଼େ ଟେକ୍ସଟାଇଲ ମିଲରେ ଯେଉଁ ରଙ୍ଗ ବ୍ୟବହାର ହୁଏ ସେହି ରଙ୍ଗରେ ଟଙ୍କା ଛପାଯାଏ। ଟଙ୍କା ଛାପି ଭାରତକୁ ସ୍ୱାଧୀନ କରିବାର ଆଶା ଆକାଂକ୍ଷା ନେଇ ମୁଁ ଟେକ୍ସଟାଇଲ ମିଲର ମାଲିକ ହେବାର ନିଷ୍ପତ୍ତି ନେଇଥିଲି।

ପ୍ରଶ୍ନ- ପରିଣତ ବୟସରେ ୧୯୯୦ରୁ ୧୯୯୫ରେ ଆପଣ ମୁଖ୍ୟମନ୍ତ୍ରୀ ଥିଲାବେଳେ ଓଡ଼ିଶା ପାଇଁ ଆପଣ ସ୍ୱପ୍ନ ଦେଖୁଛନ୍ତି ବୋଲି ବହୁ ସଭାସମିତିରେ ପ୍ରକାଶ କରିଥିଲେ ?

ବିଜୁ- ମୂଳରୁ କହିଛି ସ୍ୱପ୍ନ ନ ଦେଖିଲେ ସଫଳତା ନାହିଁ। ସ୍ୱପ୍ନ ତରୁଣମାନେ ହିଁ ଦେଖିବା ଉଚିତ, କାରଣ ସେମାନେ ହିଁ ଦେଶର ଭବିଷ୍ୟତ। ସେମାନେ ନିଜ ଉପରେ ଆସ୍ଥା ରଖିଲେ କାହାର ଅନୁକଂପା ଚାହିଁବେ ନାହିଁ। ମୋର ଏକବିଂଶ ଶତାବ୍ଦୀର ସ୍ୱପ୍ନ ହେଲା ସୁଯୋଗ୍ୟ ଶିଳ୍ପୀ, ସୁନାମଧନ୍ୟ କାରିଗର, ସୁମହାନ ସଂଗୀତଜ୍ଞ ଓ କବି ଓଡ଼ିଶାରେ ସୃଷ୍ଟି ହୁଅନ୍ତୁ। ଏହି ସ୍ୱପ୍ନ ମୁଁ ଏଇଥିପାଇଁ ଦେଖୁଛି ଯେ, ଆମେ ହିଁ

Digitized by srujanika@gmail.com

ଥିଲୁ କୋଣାର୍କର ସ୍ରଷ୍ଟା । ଓଡ଼ିଶା, ମୋ ଭାଷାରେ କଳିଙ୍ଗ ମାଟିରେ ଦିନେ ଗୀତଗୋବିନ୍ଦ ରଚିତ ହୋଇଥିଲା । ଏହି ମାଟିରେ ଜ୍ୟୋତିର୍ବିଦ୍ ପଠାଣି ସାମନ୍ତ ଭୂମିଷ୍ଠ ହୋଇ ତାଙ୍କ ଗଣନା ମାଧ୍ୟମରେ ଆକାଶକୁ ଚାହିଁ ଜ୍ୟୋତିର୍ବିଦ୍ୟାର ରହସ୍ୟ ଉଦ୍‌ଘାଟନ କରି ବିଶ୍ୱକୁ ବିସ୍ମିତ କରି ଦେଇଥିଲେ । କିନ୍ତୁ ମୋ ସ୍ୱପ୍ନ କେତେଦୂର ସାକାର ହେବ ତାହା ମୁଁ କହିପାରିବି ନାହିଁ । ଆମେ ସମସ୍ତେ ମୃତ୍ୟୁ ପଥରେ ଯିବାପାଇଁ ଜନ୍ମ ଲାଭ କରିଛୁ । ଆଜି ନାରୀ ପୁରୁଷ ଦାୟିତ୍ୱ ବହନ କରିବାକୁ ପଛଘୁଞ୍ଚା ଦେଉଛନ୍ତି । ଏହାର ଏକମାତ୍ର କାରଣ ହେଲା ଆମ୍ଭମାନଙ୍କ ମନରେ ମହାନ ସ୍ୱପ୍ନ ନାହିଁ ।

ପ୍ରଶ୍ନ- ସ୍ୱପ୍ନ ସାକାର ହେବ ବୋଲି ଆପଣ ଭାବୁଛନ୍ତି କି ?

ବିଜୁ- ମୁଁ ସ୍ୱପ୍ନ ଦେଖୁଛି ଆଗାମୀ ପିଢ଼ିପାଇଁ । ମୋର ସ୍ୱପ୍ନର କଳିଙ୍ଗରେ ଯେପରି କୌଣସି କୃଷକର କ୍ଷେତ ଶୁଖିଲା ଓ ଶ୍ରୀହୀନ ହୋଇଯିବ ନାହିଁ । ନାରୀ ପୁରୁଷ ସହିତ ସମାନ ଭୂମିକାରେ ଅବତୀର୍ଣ୍ଣ ହେବାର ସୁଦିନ ଯେ ଶୀଘ୍ର ଆସିବ ଏହାକୁ ମଧ୍ୟ ସ୍ୱପ୍ନ ଦେଖୁଛି । ନାରୀ ପୁରୁଷ ସହିତ ସମାନ ଅଧିକାର ଲାଭ କରିବ । ନାରୀ ନିର୍ଯ୍ୟାତନା ସମ୍ପର୍କରେ ଯେପରି କେହି ଶୁଣିବେ ନାହିଁ । ଖାଦ୍ୟାଭାବ ଯୋଗୁଁ ଶିଶୁଟିଏ କ୍ଷୁଧିତ ରହିବ ନାହିଁ । ନିରକ୍ଷରତା ଓ ଅଜ୍ଞତା ମୋ କଳିଙ୍ଗର ସୀମା ମାଡ଼ିବ ନାହିଁ ।

ପ୍ରଶ୍ନ- କେଉଁ ସ୍ୱପ୍ନ ଆପଣଙ୍କର ସଫଳ ହୋଇଛି ?

ବିଜୁ- ଯେଉଁ ସ୍ୱପ୍ନ ମୁଁ ଯେତେବେଳେ ଦେଖିଛି ପରବର୍ତ୍ତୀ ସମୟରେ ତାହା ସଫଳ ହୋଇଛି । ୧୯୨୬ ମସିହାରେ ମୁଁ ସ୍ୱପ୍ନ ଦେଖିଥିଲି ଯେଉଁ ଗୋରା ପୁଲିସ ମୋତେ ଲାଠିରେ ବାଡ଼େଇଛି ସେହି ପୁଲିସ ମୋତେ ସଲାମ ଦେବ । ତା' ନ ହୋଇଥିଲେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ମୁଁ ସହଯୋଗ କରୁଥିଲି ଅଥଚ ଗୋରା ସରକାର ମୋତେ ସମ୍ମାନିତ କରିଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜାପାନୀମାନଙ୍କ ଦ୍ୱାରା ବନ୍ଦୀ ହୋଇଥିବା ବ୍ରିଟିଶ ଗୋରା ପରିବାରମାନଙ୍କୁ ମୁଁ ମୁକୁଳାଇ ଆଣିଥିଲି । ମୁଁ ପାଇଲଟ ଚାକିରି କରିଥିବାରୁ ତାହା ମୋର କର୍ତ୍ତବ୍ୟ ଥିଲା, ସେଥିରେ ଦେଶପ୍ରେମ ନ ଥିଲା କି ବ୍ରିଟିଶ ପ୍ରେମ ନ ଥିଲା । ତାହା ମୁଁ ସ୍ୱାଭାବିକ ଭାବେ କରିଥିଲି । କିନ୍ତୁ ଗୋରା ସାହେବ ମୋର ଏ କାମକୁ ଦୁର୍ଦ୍ଧର୍ଷ ବୋଲି ବର୍ଣ୍ଣନା କରିଥିଲେ । ଖୋଦ ଭାଇସ ରାୟଙ୍କ ପତ୍ନୀ ମୋତେ ମେଡାଲ ପିନ୍ଧାଇ ସମ୍ମାନିତ କରିଥିଲେ । ଏଥିରେ ମୋର ସ୍ୱପ୍ନ ସଫଳ ହେଲା ବୋଲି ମୁଁ ଦୃଢ଼ ଭାବେ କହିପାରିବି ।

Digitized by srujanika@gmail.com

ପ୍ରଶ୍ନ- କେଉଁ ମୃତ୍ୟୁ ଆପଣଙ୍କ ପସନ୍ଦ ?

ବିଜୁ- ଜନ୍ମ ହେଲେ ମୃତ୍ୟୁ ନିଶ୍ଚିତ। ଏହା ହିଁ ଧ୍ରୁବସତ୍ୟ। ଭଗବାନ ଜନ୍ମ ଦେଇ ଏକ ନିର୍ଦ୍ଦିଷ୍ଟ ସମୟରେ ମରଣ ଦିଅନ୍ତୁ। ତା'ହେଲେ ସମସ୍ୟା ନାହିଁ। ସେମିତି ହେଲେ ମଣିଷର ଲୋଭ ରହିବ ନାହିଁ। ମୁଁ ସବୁବେଳେ ଭଗବାନଙ୍କୁ ଡାକେ ମୋତେ ଯେମିତି ସେ ବିମାନ ଦୁର୍ଘଟଣାରେ ନ ମାରନ୍ତୁ। ରାସ୍ତା ଦୁର୍ଘଟଣା କିମ୍ବା ଅନ୍ୟ କିଛି ହେଲେ ଚଳିବ। ତେବେ ମୋର ପ୍ରିୟ ମରଣ ହେଉଛି ତୁରନ୍ତ ମରଣ। ମୋ ପାଇଁ କେହି କଷ୍ଟ ସହିବେ ନାହିଁ। ମୋର କେହି ସେବା ଶୁଶ୍ରୂଷା କରିବେ ନାହିଁ। ଜଷ୍ଟ ଫଲ୍ ଏଣ୍ଡ ଡାଏ, ଆଖି ବୁଜିଲି, ମଲି। ଏଭଳି ମରଣ ମୁଁ ଚାହେଁ କିନ୍ତୁ ଭଗବାନ କ'ଣ ବିଜୁକୁ ତା' ପସନ୍ଦ ମରଣ ଦେବେ ?

- ୦ -

Digitized by srujanika@gmail.com

## ଦୈନିକ ସମ୍ବାଦପତ୍ର 'କଳିଙ୍ଗ'ର ପ୍ରତିଷ୍ଠାତା

ବିଭିନ୍ନ ଦେଶରେ ରାଜନୈତିକ ବ୍ୟକ୍ତିଙ୍କ ପୃଷ୍ଠପୋଷକତାରେ ଏକାଧିକ ସମ୍ବାଦପତ୍ର ପ୍ରକାଶିତ ହୋଇଛି। ଓଡ଼ିଶା ମଧ୍ୟ ସେଥିରୁ ବାଦ ପଡ଼ିନାହିଁ। ଉତ୍କଳମଣି ଗୋପବନ୍ଧୁ ଦାଶ ଦୈନିକ ସମ୍ବାଦପତ୍ର 'ସମାଜ', ଡକ୍ଟର ହରେକୃଷ୍ଣ ମହତାବ ଦୈନିକ ସମ୍ବାଦପତ୍ର 'ପ୍ରଜାତନ୍ତ୍ର' ଓ ରାଜେନ୍ଦ୍ର ନାରାୟଣ ସିଂହଦେଓ 'ଗଣତନ୍ତ୍ର' ସମ୍ବାଦପତ୍ର ପ୍ରକାଶ କରିଥିଲେ। ଓଡ଼ିଶାକୁ ଭଲ ପାଉଥିବା ବିଜୁବାବୁଙ୍କର ଓଡ଼ିଆ ଭାଷା ପ୍ରତି ଥିଲା ଆନ୍ତରିକ ଅନୁରାଗ। କାରଣ, ଏହା ଥିଲା ସାଧାରଣ ଲୋକଙ୍କର ଭାଷା। ଏହି ମାଟିର ଭାଷା। ଏଠାକାର ୯୫ ପ୍ରତିଶତ ଲୋକ ଓଡ଼ିଆ ଭାଷା ବ୍ୟବହାର କରୁଥିଲେ। ବିଜୁବାବୁଙ୍କର ଇଂରାଜୀ ଭାଷାରେ ଗଭୀର ପ୍ରବେଶ ଥିଲେ ମଧ୍ୟ ଓଡ଼ିଆ ଭାଷାର ଉନ୍ନତି ନ ହେଲେ ରାଜ୍ୟର ଉନ୍ନତି ହୋଇପାରିବ ନାହିଁ ବୋଲି ସେ ଉପଲବ୍ଧି କରିଥିଲେ। ସବୁ ଶ୍ରେଣୀର ଲୋକ କେମିତି ନିଜ ଭାଷାରେ କିଛି ପଢ଼ିବେ ତାହା ଚିନ୍ତା କରି ସେ ଏକ ଦୈନିକ ଖବର କାଗଜ ପ୍ରକାଶ କରିବାକୁ ନିଷ୍ପତ୍ତି ନେଲେ। ଥରେ ସେ ଯାହା ନିର୍ଣ୍ଣୟ ନେଉଥିଲେ ତାକୁ ନିଶ୍ଚୟ ପୂର୍ଣ୍ଣାଙ୍ଗ କରୁଥିଲେ। କଳିଙ୍ଗ ସମ୍ରାଟ ଖାରବେଳଙ୍କୁ ସେ ନିଜର ଆଦର୍ଶ ବୋଲି ମାନୁଥିଲେ। ଓଡ଼ିଶାକୁ ସେ 'କଳିଙ୍ଗ' ବୋଲି ସମ୍ବୋଧନ କରୁଥାନ୍ତି। ସେଥିପାଇଁ କଳିଙ୍ଗବାସୀଙ୍କ ନିମନ୍ତେ ପ୍ରକାଶ କରିବାକୁ ଯାଉଥିବା ଖବରକାଗଜଟିର ନାଁ ସେ ରଖିଲେ 'କଳିଙ୍ଗ'। ୧୯୬୧ ମସିହା ଅକ୍ଟୋବର ୨ ତାରିଖ ଗାନ୍ଧୀ ଜୟନ୍ତୀ ଅବସରେ ବିଜୁବାବୁଙ୍କ ଦ୍ୱାରା ଦୈନିକ ସମ୍ବାଦପତ୍ର 'କଳିଙ୍ଗ' କଟକରୁ ପ୍ରକାଶ ପାଇଲା। ଓଡ଼ିଶା ସମ୍ବାଦପତ୍ର ଇତିହାସରେ ଆଉ ଏକ ନୂଆ ଅଧ୍ୟାୟ ସୃଷ୍ଟି ହେଲା। ବିଜୁପଟ୍ଟନାୟକଙ୍କ ପ୍ରତିଷ୍ଠିତ 'କଳିଙ୍ଗ ଫାଉଣ୍ଡେସନ ଟ୍ରଷ୍ଟ' ଦ୍ୱାରା 'କଳିଙ୍ଗ' ଫ୍ଲାଟବେଡ୍ ମେସିନ୍‌ରୁ ମୁଦ୍ରଣ କରାଯାଉଥିଲା। ସେତେବେଳେ ଓଡ଼ିଆରେ 'ସମାଜ', 'ପ୍ରଜାତନ୍ତ୍ର', 'ମାତୃଭୂମି', 'ଜନଶକ୍ତି', 'ଗଣତନ୍ତ୍ର' ଆଦି ଦୈନିକ ଓଡ଼ିଆ ଖବରକାଗଜ ସନ୍ଧ୍ୟାରେ ପ୍ରକାଶ ପାଉଥାଏ ଏବଂ ତା'ପରଦିନ ପ୍ରାତଃକାଳରେ ପାଠକମାନଙ୍କୁ ଉପଲବ୍ଧ ହୁଏ। ସବୁଠାରୁ ଅଧିକ ସଂଖ୍ୟାରେ 'ସମାଜ' ମୁଦ୍ରିତ ହୁଏ। 'ପ୍ରଜାତନ୍ତ୍ର'ର ଗୋଟିଏ କ୍ଷୁଦ୍ର ରୋଟାରୀ ମେସିନ୍ ଥାଏ ଯେଉଁଥିରେ ଘଣ୍ଟାକୁ ଏକ

Digitized by srujanika@gmail.com

ହଜାର ଖବର କାଗଜ ମୁଦ୍ରିତ ହୋଇପାରୁଥାଏ। କିନ୍ତୁ ଦୈନିକ ଅନ୍ୟୂନ ୫୦ହଜାର ସମ୍ବାଦପତ୍ର ମୁଦ୍ରଣ କରିବା ବିଜୁବାବୁଙ୍କର ଲକ୍ଷ୍ୟ ଥାଏ। ତେଣୁ ସେ ପରବର୍ତ୍ତୀ କାଳରେ 'ଅମୃତବଜାର ପତ୍ରିକା' ସୌଜନ୍ୟରୁ ଏକ ବୃହତ ରୋଟାରୀ ପ୍ରିଣ୍ଟିଂ ମେସିନ୍ କିଣିଲେ ଏବଂ ସେଥିରେ 'ଅମୃତବଜାର ପତ୍ରିକା'ର କଟକ ସଂସ୍କରଣ ସହିତ ଦୈନିକ 'କଳିଙ୍ଗ' ମଧ୍ୟ ମୁଦ୍ରିତ ହେଲା।

'କଳିଙ୍ଗ'ର ପ୍ରଥମ ସପ୍ତାହର ଗୋଟିଏ ସଂଖ୍ୟାରେ ବିଜୁ ପଟ୍ଟନାୟକଙ୍କର ଏକ ଲେଖା ପ୍ରକାଶିତ ହୋଇଥିଲା। ଏହି ଲେଖାଟିର ଶୀର୍ଷକ ଥିଲା 'ଓଡ଼ିଶାର ଭବିତବ୍ୟ'। ଏହା ସେ ସମୟରେ ପାଠକୀୟ ଆଦୃତି ଲାଭ କରିଥିଲା। ଲୋକମାନେ ତାଙ୍କର ଲେଖା ପଢ଼ି ଚମତ୍କୃତ ହୋଇଥିଲେ।

ବିଜୁବାବୁ 'କଳିଙ୍ଗ' ଦୈନିକ ଖବରକାଗଜ ପ୍ରତିଷ୍ଠା କରି ସାମ୍ବାଦିକତା କ୍ଷେତ୍ରରେ ଏକ ନୂତନ ଆଶାର ସଂଚାର କରିଥିଲେ। ବହୁ ଓଡ଼ିଆ ଯୁବକଯୁବତୀ ତାଙ୍କ ଦ୍ୱାରା ଉତ୍ସାହିତ ହୋଇ ସାମ୍ବାଦିକତାକୁ ପେଶା ଭାବରେ ଗ୍ରହଣ କରିଥିଲେ। ସାମ୍ବାଦିକମାନେ ସମ୍ବାଦପତ୍ରର ମାଲିକଙ୍କଠାରୁ ବହୁତ ଅଳ୍ପ ମାସିକ ବେତନରେ କାର୍ଯ୍ୟ କରୁଥିଲେ। କିନ୍ତୁ ବିଜୁବାବୁ ଅଧିକ ବେତନ ଦେଇ ସାମ୍ବାଦିକମାନଙ୍କୁ ତାଙ୍କ ସମ୍ବାଦପତ୍ରରେ ଯୋଗଦେବାକୁ ଉତ୍ସାହିତ କରିଥିଲେ। ବିଶିଷ୍ଟ କ୍ରାନ୍ତିକାରୀ ସାହିତ୍ୟିକ ମନମୋହନ ମିଶ୍ର ଏହାର ପ୍ରଥମ ସଂପାଦକ ଥିଲେ। ତାଙ୍କ ପରେ ପରେ ଓଡ଼ିଆ ଭାଷାର ସୁପ୍ରତିଷ୍ଠିତ କଥାଶିଳ୍ପୀ ସୁରେନ୍ଦ୍ର ମହାନ୍ତି ଏହି ଦାୟିତ୍ୱ ନିର୍ବାହ କରିଥିଲେ। ସେ ୧୯୬୨ ମସିହାରୁ ୧୯୭୧ ପର୍ଯ୍ୟନ୍ତ ଏହାର ସମ୍ପାଦକ ଦାୟିତ୍ୱରେ ଥିଲେ। ଏହି ଦାୟିତ୍ୱ ନିର୍ବାହ କରୁଥିବା ସମୟର ଅନୁଭୂତିର ସ୍ମୃତିଚାରଣ କରି ସେ ଲେଖିଛନ୍ତି, "ଓଡିଶାର ଖବରକାଗଜର ମାଲିକମାନେ ଅନେକ ସମୟରେ, ନିଜ ସ୍ୱାର୍ଥ ଦୃଷ୍ଟିରୁ ସଂପାଦକମାନଙ୍କୁ ପ୍ରଚ୍ଛନ୍ନ ଭାବରେ ଅଥବା ଅପ୍ରକାଶ୍ୟରେ କେତେକ ଇଙ୍ଗିତ ବା ପରାମର୍ଶ ଦେଇଥାଆନ୍ତି। କିନ୍ତୁ ଏହି ନଅ ବର୍ଷ ମଧ୍ୟରେ ବିଜୁବାବୁଙ୍କ ରାଜନୈତିକ ସ୍ୱାର୍ଥ ଉପରେ ଆଞ୍ଚ ଆଣିବା ପରି କେତେକ ବିଷୟ 'କଳିଙ୍ଗ'ରେ ପ୍ରକାଶ ପାଇଥିଲେ ହେଁ, ଦିନକ ପାଇଁ ସେ ପ୍ରକାଶ୍ୟରେ ଅଥବା ପ୍ରଚ୍ଛନ୍ନରେ ଏ ସମ୍ପର୍କରେ ଅସନ୍ତୋଷ ପ୍ରକାଶ କରିନଥିଲେ।"

"୧୯୬୪ ମସିହାରେ ପ୍ରବଳ ଛାତ୍ର ଆନ୍ଦୋଳନ ରେଭେନ୍‌ସା କଲେଜରୁ ଆରମ୍ଭ ହୋଇ ଦାବାଗ୍ନି ପରି ସବୁଆଡ଼େ ବ୍ୟାପିଗଲା। ଅନ୍ୟ ଦୈନିକ ସମ୍ବାଦପତ୍ରମାନେ ଅତିରଞ୍ଜିତ ସମ୍ବାଦ ଛାପି, ଛାତ୍ରମାନଙ୍କୁ ବେଶ୍ ଉସ୍‌କାଉ ଥାଆନ୍ତି। ମୁଁ ଅନୁସନ୍ଧାନ କରି

Digitized by srujanika@gmail.com

ବୁଝିଲି, ଷ୍ଟେସନ ବଜାର ଅଞ୍ଚଳରେ ଜଣେ ଛାତ୍ରର ଗୋଟିଏ ଟ୍ରାନ୍‌ଜିଷ୍ଟାର୍ ରେଡ଼ିଓର ମରାମତି ଚାର୍ଜ ମାତ୍ର ଚାରିଅଣା ପଇସା ପାଇଁ ଦୋକାନୀ ଓ ଛାତ୍ରଙ୍କ ମଧ୍ୟରେ ବଚସା ଭିତରୁ ଏ ଆନ୍ଦୋଳନର ସୂତ୍ରପାତ ହୋଇଛି । ଏହା ମୁଁ ବୁଝିଲା ପରେ, ଛାତ୍ର ଆନ୍ଦୋଳନ ବିରୁଦ୍ଧରେ 'କଳିଙ୍ଗ'ରେ ଲେଖାଲେଖି ଆରମ୍ଭ କରିଦେଲି । କଟକର ଛାତ୍ରନେତାମାନେ ମୋତେ ଟେଲିଫୋନ୍‌ରେ ଗାଳିଗୁଲଜ ଦେଲେ, ଧମକ୍ ବି ଦେଲେ । ମାତ୍ର ଫଳ କିଛି ହେଲା ନାହିଁ । ମୋତେ ନୀରବ କରି ନପାରିବାରୁ ଅବଶେଷରେ ଖବାରକାଗଜକୁ ନୀରବ କରିଦେବା ପାଇଁ ସେମାନେ ଚେଷ୍ଟିତ ହେଲେ । ପ୍ରତି ସନ୍ଧ୍ୟାରେ ହକରମାନେ ବଣ୍ଡଲ ବଣ୍ଡଲ କାଗଜ ଧରି ରାସ୍ତାକୁ ବାହାରିବା ମାତ୍ରେ ଛାତ୍ରମାନେ ସେ ବଣ୍ଡଲସବୁ ସେମାନଙ୍କଠାରୁ ଛଡ଼ାଇ ନେଇ ବିଚ୍ ରାସ୍ତା ଉପରେ ପୋଡ଼ିଲେ । ଇଏ ମାସାଧିକ କାଳ ଚାଲିଲା । ଛାତ୍ର ଆନ୍ଦୋଳନ ବିରୁଦ୍ଧରେ ଲେଖା ପ୍ରକାଶ ପାଇବା ଦ୍ୱାରା କଂଗ୍ରେସ ସରକାର ପରୋକ୍ଷରେ ଉପକୃତ ହେଉଥିଲେ ହେଁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିରେନ୍ ମିତ୍ର ମୋତେ କୌଣସି ପ୍ରକାର ଅଭୟ ଦେଇ ପାରିଲେ ନାହିଁ । ମୋତେ କୁହାଗଲା, ତମେ ଚୁପ୍‌ଚାପ୍ ରହିଯାଅ । ହଲିଲା ପାଣିରେ ଗୋଡ଼ ଦେବା ପାଇଁ କିଏ ବା ପ୍ରସ୍ତୁତ ଅଛି ? ଦିନେ ବିଜୁବାବୁଙ୍କ ପାଖରେ ମୋର କେତେକ ଶୁଭାକାଂକ୍ଷୀ ବନ୍ଧୁ ଅଭିଯୋଗ କଲେ ଯେ, ମୋ ଯୋଗୁଁ 'କଳିଙ୍ଗ' ଧ୍ୱଂସ ପାଇଗଲା ! ପ୍ରକୃତରେ 'କଳିଙ୍ଗ'ର ପ୍ରସାର ସେତେବେଳକୁ ପ୍ରାୟ ସାତ ହଜାରରୁ ଅଧେ ଖସି ଆସିଥିଲା । ବିଜୁବାବୁ ମୋତେ ଡ଼କାଇ ପଠାଇଲେ । ମୁଁ ତାଙ୍କୁ କହିଲି, ସମ୍ପାଦକ ଭାବରେ ମୁଁ ଆପଣଙ୍କୁ କୈଫିୟତ୍ ଦେଲେ ବୃତ୍ତିଗତ ଆଚରଣବିଧିର ଅବମାନନା କରିବି । ତଥାପି କହୁଚି – 'ମୁଁ ଅନୁସନ୍ଧାନ କରି ବୁଝିଛି, ସାମାନ୍ୟ ଚାରିଅଣା ପଇସା ପାଇଁ ଝଗଡ଼ାରୁ ଏ ଆନ୍ଦୋଳନ ଆରମ୍ଭ ହୋଇଛି ଓ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିମାନେ ଏଥିରୁ ବେଶ୍ ଫାଇଦା ଉଠାଉଛନ୍ତି । ତେଣୁ ସତ୍ୟ ଓ ନ୍ୟାୟ ଦୃଷ୍ଟିରୁ ମୋତେ ଏହାର ପ୍ରତିରୋଧ କରିବା ପାଇଁ ପଡ଼ିବ ।' ବିଜୁବାବୁ ସବୁ କଥା ନୀରବରେ ଶୁଣିବା ପରେ, ମୋତେ କହିଲେ, 'ତୁମେ ଯାହା ଉଚିତ୍ ଭାବୁଛ କର' ।"

"ସ୍ୱତନ୍ତ୍ର ଜନ କଂଗ୍ରେସ ମନ୍ତ୍ରିମଣ୍ଡଳ ବେଳେ 'କଳିଙ୍ଗ'କୁ ସରକାରୀ ବିଜ୍ଞାପନ ପୂରାପୂରି ବନ୍ଦ କରି ଦିଆଗଲା । ମୋର ବନ୍ଧୁମାନେ ମୋତେ ତାଗିଦ କରିବା ପାଇଁ ବିଜୁବାବୁଙ୍କୁ ପ୍ରବର୍ତ୍ତାଇଲେ । ମାତ୍ର ବିଜୁବାବୁ ଦିନକ ପାଇଁ ହେଲେ ମୋତେ ତାଗିଦ କରି ନଥିଲେ । ଜଣେ ସମ୍ପାଦକର ମର୍ଯ୍ୟାଦା ଓ ସ୍ୱାଧିକାର ପ୍ରତି ବିଜୁବାବୁଙ୍କର ଯେତେଟା

Digitized by srujanika@gmail.com

ସମ୍ମାନ ଥିଲା, ତାହା ମୋତେ ଚିରଦିନ ଅନୁପ୍ରାଣିତ କରିଥିଲା । ଏବେ ଅଧିକାଂଶ ସମ୍ବାଦପତ୍ରର ମାଲିକମାନେ ସେମାନଙ୍କର ସମ୍ପାଦକ, ସାମ୍ବାଦିକ, ସ୍ତମ୍ଭକାରମାନଙ୍କୁ ସେଭଳି ସତ୍‌ସମ୍ବାଦ ପ୍ରକାଶ କରିବା ପାଇଁ ଉତ୍ସାହିତ କରିବା କ୍ୱଚିତ୍ ଦେଖାଯାଏ ।"

ବୃତ୍ତିଗତ ଦୃଷ୍ଟି କୋଣରୁ 'କଳିଙ୍ଗ' ଏକ ସଫଳ ସମ୍ବାଦପତ୍ର ହୋଇଥିଲେ ମଧ୍ୟ ପ୍ରାୟ ୧୦ ବର୍ଷ ଚାଲିବା ପରେ ରାଜନୈତିକ ମତଭେଦ ଯୋଗୁଁ ଏହା ବନ୍ଦ ହୋଇଯାଇଥିଲା । ଏହି ସମ୍ବାଦପତ୍ରଟିର ପ୍ରକାଶ ଯଦି ଅବ୍ୟାହତ ରହିଥାଆନ୍ତା ତାହା ଆଜି ଓଡ଼ିଶାର ଅନ୍ୟତମ ବୃହତ ସମ୍ବାଦପତ୍ରର ମାନ୍ୟତା ଲାଭ କରିଥାଆନ୍ତା । ବିଜୁ ପଟ୍ଟନାୟକ ନିଜେ ଏହି ଖବରକାଗଜର ଉନ୍ନତି ପାଇଁ ଆବଶ୍ୟକୀୟ ଖର୍ଚ୍ଚ ବହନ କରୁଥିଲେ । କିନ୍ତୁ କେତକ ସ୍ୱାର୍ଥପର କର୍ମଚାରୀ ଇଚ୍ଛାକୃତ ପରିଚାଳନାଗତ ତ୍ରୁଟି କରି ପ୍ରକାଶନ ଓ ପ୍ରସାରଣର ଖର୍ଚ୍ଚ ବହୁ ପରିମାଣରେ ବଢ଼ାଇ ଦେଲେ । ରାଜନୈତିକ ଅଭିସନ୍ଧି ଓ କର୍ମଚାରୀମାନଙ୍କ ଅସାଧୁ କାର୍ଯ୍ୟକଳାପ ପାଇଁ ଏହା ବନ୍ଦ ହୋଇଗଲା । ଦୁଃଖର କଥା, ଶେଷରେ ଏହାର ମୁଦ୍ରଣ ଯନ୍ତ୍ରଟି ମଧ୍ୟ ବିକ୍ରି ହୋଇଗଲା । କଳିଙ୍ଗ ଫାଉଣ୍ଡେସନ ଟ୍ରଷ୍ଟ ଆଜି କାର୍ଯ୍ୟଶୀଳ ଥିଲେ ମଧ୍ୟ ଏହି 'କଳିଙ୍ଗ' ସମ୍ବାଦପତ୍ରଟିର ପ୍ରକାଶ ଆଜି ପର୍ଯ୍ୟନ୍ତ ପୁର୍ନବାର ଆରମ୍ଭ ହେଇପାରୁନାହିଁ । କିନ୍ତୁ ଏହି ଖବରକାଗଜ ଯଦି ପୁନଃ ପ୍ରକାଶିତ ହୁଅନ୍ତା, ତେବେ ନବୀନ ସରକାରଙ୍କ ଦ୍ୱାରା ହେଉଥିବା ବହୁ ଗଠନମୂଳକ କାର୍ଯ୍ୟ ଲୋକଲୋଚନକୁ ଆସି ପାରନ୍ତା । ଦୁର୍ଭାଗ୍ୟର କଥା ଯେ, ବହୁବର୍ଷ ଧରି ନବୀନବାବୁଙ୍କ ପରାମର୍ଶଦାତା ଭାବେ ନିଜକୁ ଚାଣକ୍ୟ ବୋଲି ଅଭିହିତ କରିଥିବା ଜଣେ ବ୍ୟକ୍ତି 'କଳିଙ୍ଗ'ର ପୁନଃ ପ୍ରକାଶ ଦିଗରେ ଉଦ୍ୟମ ନ କରି ନିଜ ମାଲିକାନାରେ 'ଖବର' ନାମକ ଏକ ଖବରକାଗଜ ପ୍ରକାଶ କଲେ; ତେବେ ତାହା ସାଧାରଣରେ ଆଦୃତ ନ ହେବା ଯୋଗୁଁ ସ୍ୱଳ୍ପକାଳ ମଧ୍ୟରେ ବନ୍ଦ ହୋଇଗଲା । ତେବେ ସେ ନିଜେ ଗୋଟିଏ ଖବରକାଗଜ ଆରମ୍ଭ ନ କରି ଯଦି ଏହି 'କଳିଙ୍ଗ' ଖବରକାଗଜର ପୁନରୁଦ୍ଧାର ପାଇଁ ପ୍ରୟାସ କରିଥାନ୍ତେ ତେବେ ସମଗ୍ର ରାଜ୍ୟବାସୀଙ୍କର ପ୍ରଶଂସାଭାଜନ ହୋଇପାରିଥାନ୍ତେ ଓ ରାଜ୍ୟର ହିତ ସାଧନ କରିପାରିଥାନ୍ତେ ।

– ୦ –

Digitized by srujanika@gmail.com

# ଆଜୀବନ କ୍ରୀଡ଼ାପ୍ରେମୀ ବିଜୁ

କ୍ରୀଡ଼ା ପ୍ରତି ବିଜୁବାବୁଙ୍କର ଥିଲା ଦୁର୍ବାର ଆକର୍ଷଣ। ଛ'ଫୁଟ ତିନିଇଞ୍ଚ ଉଚ୍ଚତା ଏବଂ ସୁଗଠିତ ଓ ସୌମ୍ୟ ଚେହେରାର ବିଜୁବାବୁ ତାଙ୍କ ବାଲ୍ୟାବସ୍ଥାରୁ ଜଣେ ସୁଦକ୍ଷ କ୍ରୀଡ଼ାବିତ୍ ଭାବରେ ନିଜକୁ ପରିଚିତ କରିପାରିଥିଲେ। ତାଙ୍କର ଅନ୍ୟ ଦୁଇ ଭାଇ ଜର୍ଜ ପଟ୍ଟନାୟକ ଓ ସିଜୁ ପଟ୍ଟନାୟକ ମଧ୍ୟ କ୍ରୀଡ଼ାରେ ନିପୁଣ ଥିଲେ। ଏହି ତିନି ଭାଇଙ୍କର ପାଠ ପଢ଼ିବା ବ୍ୟତୀତ ଦୈନିକ ଶାରୀରିକ ଶ୍ରମ ଓ ବିଭିନ୍ନ କ୍ରୀଡ଼ାରେ ଭାଗ ନେବା ପାଇଁ ଆଗ୍ରହ ଥିଲା। ତିନି ଭାଇଙ୍କ ଏକମାତ୍ର ଭଉଣୀ ସ୍ୱୀକୃତି ମଧ୍ୟ ଜଣେ ଭଲ ଖେଳାଳି ଥିଲେ। ବିଜୁ ଓ ସିଜୁ ମହାନଦୀରେ ଗୋଟିଏ କୂଳରୁ ଅନ୍ୟକୂଳ ଯାଏ ପହଁରୁ ଥିଲାବେଳେ ଭଉଣୀ ମଧ୍ୟ ତାଙ୍କ ସାଙ୍ଗରେ ଯୋଗଦେଇ ମାଛ ଭଳିଆ ପହଁରୁଥିଲେ। ଆଜି ମଧ୍ୟ କଟକର ଲୋକମାନେ ଝିଅମାନଙ୍କ ଖେଳର ଉଦାହରଣ ଦେଲାବେଳେ ବିଜୁବାବୁଙ୍କ ଭଉଣୀଙ୍କ ଉଦାହରଣ ଦିଅନ୍ତି। ତାଙ୍କର ପିତାମାତା ସେମାନଙ୍କୁ ଖେଳକୁଦରେ ଭାଗ ନେବା ପାଇଁ ଓ ଜିତିବା ପାଇଁ ଉତ୍ସାହିତ କରୁଥିଲେ। କୌଣସି ଖେଳରେ ଜିତି ପଡ଼ିଆରୁ ଫେରି ବାପାଙ୍କୁ କହିଲେ ତାଙ୍କ ବାପା ତାଙ୍କୁ ଖୁସିରେ ଆଲିଙ୍ଗନ କରୁଥିଲେ।

ଫୁଟବଲ୍, ହକି ବା କ୍ରିକେଟ ଖେଳିବାକୁ ସେ ପଡ଼ିଆକୁ ଓହ୍ଲାଇଲେ ପ୍ରତିପକ୍ଷ ଆତଙ୍କିତ ହେଉଥିଲେ। ଦଳକୁ ଜିତାଇବା ପାଇଁ  ସେ ସବୁବେଳେ ପ୍ରାଣପାତ ଉଦ୍ୟମ କରୁଥିଲେ। ଏହି ତିନି ଖେଳ ବ୍ୟତୀତ ଭଲିବଲ୍, ଆଥ୍‌ଲେଟିକ୍‌ସରେ ତାଙ୍କର ଅସାଧାରଣ ଦକ୍ଷତା ଥିଲା। ତାଙ୍କ ସମୟର ଅନ୍ୟ ବିଶିଷ୍ଟ ଖେଳାଳୀମାନେ ହେଲେ ମନିନ୍ଦ୍ର ନାଥ ଗୁହ, ଫେଲୁ ମହାପାତ୍ର, ବସନ୍ତ ସାଠିଆ, ଡଗଲସ୍ ବର୍ଣ୍ଣେଟ, କ୍ଲାରା ବର୍ଣ୍ଣେଟ ଏବଂ ସୁରେନ୍ କାନୁନ୍‌ଗୋ। କଷ୍ଟସାଧ୍ୟ ଟେକ୍‌ନିକ୍‌ରେ ନିପୁଣ ବିଜୁ ପଟ୍ଟନାୟକ ପୋଲଭଲ୍ଟ ଇଭେଣ୍ଟରେ ରାଜ୍ୟର ସର୍ବଶ୍ରେଷ୍ଠ କ୍ରୀଡ଼ାବିତ୍ ଭାବେ ରେକର୍ଡ଼ କରିପାରିଥିଲେ। ପରବର୍ତ୍ତୀ ସମୟରେ ଓଡ଼ିଶାର ଅନ୍ୟଜଣେ ସୁନାମଧନ୍ୟ କ୍ରୀଡ଼ାବିତ୍ ନନ୍ଦକୃଷ୍ଣ ଦାସ ପୋଲଭଲ୍ଟରେ ତାଙ୍କର ରେକର୍ଡ଼ ଅତିକ୍ରମ କରିଥିବାରୁ ଅତିଥିଭାବରେ ଖେଳ ଦେଖୁଥିବା ବିଜୁବାବୁ ତାଙ୍କୁ ସର୍ବସମ୍ମୁଖରେ ଅତି ଆନନ୍ଦିତ ହୋଇ ଶହେ ଟଙ୍କା ପୁରସ୍କୃତ କରିଥିଲେ।

Digitized by srujanika@gmail.com

ଅକ୍ସଫୋର୍ଡ ଓ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର କ୍ରୀଡ଼ା ପରମ୍ପରାରେ ପ୍ରଭାବିତ ହୋଇ ରେଭେନ୍ସା କଲେଜର ଶ୍ରେଷ୍ଠ ଖେଳାଳିଙ୍କୁ 'ରେଭେନ୍ସା ବ୍ଲୁ' ପ୍ରଦାନ କରାଯାଏ। ବିଜୁବାବୁ ରେଭେନ୍ସା କଲେଜରେ ପଢୁଥିବାବେଳେ କ୍ରମାଗତ ତିନିବର୍ଷ ଆଥ୍ଲେଟିକ ଚମ୍ପିୟନ୍ ହୋଇ ଏହି ଗୌରବଜନକ 'ରେଭେନ୍ସା ବ୍ଲୁ' ପାଇବାରେ ସକ୍ଷମ ହୋଇଥିଲେ। ଆଜି ପର୍ଯ୍ୟନ୍ତ କେବଳ ନନ୍ଦନନ୍ଦନ ମହାପାତ୍ର, ନନ୍ଦକୃଷ୍ଣ ଦାସ ଓ କାଳୀପ୍ରସନ୍ନ ଦାସ ତାଙ୍କ ରେକର୍ଡ଼ର ସମକକ୍ଷ ହୋଇପାରିଛନ୍ତି।

ବିଜୁବାବୁଙ୍କର ରେଭେନ୍ସାରେ ପଢ଼ା ଶେଷ ହେବା ପରେ ମଧ୍ୟ କ୍ରୀଡ଼ା ପ୍ରତି ତାଙ୍କର ଥିବା ଦୁର୍ବଳତା କମିନଥିଲା। ଏପରିକି ପରବର୍ତ୍ତୀ ସମୟରେ ରାଜନୀତିରେ ଯୋଗଦେବା ପରେ ଓ ଶିଳ୍ପ କାରଖାନା ପ୍ରତିଷ୍ଠା ଭଳି ବ୍ୟସ୍ତବହୁଳ ସମୟରେ ମଧ୍ୟ ତାଙ୍କର କ୍ରୀଡ଼ା ପ୍ରତି ମୋହ ଓ ଆନ୍ତରିକତା କେବେବି କମିଯାଇନଥିଲା। ଉତ୍କଳ ଗୌରବ ମଧୁସୂଦନ ଦାସ ୧୯୦୯ ମସିହାରେ କଟକରେ ପ୍ରଥମେ ରାଜ୍ୟସ୍ତରୀୟ 'ଆର୍ଟ ଓୟାର୍ସ ସିଲ୍ଡ ଫୁଟବଲ ଟୁର୍ଣ୍ଣାମେଣ୍ଟ' ଆରମ୍ଭ କରିଥିଲେ ଏବଂ କଟକର ଫୁଟବଲ୍ ଖେଳାଳିମାନଙ୍କୁ ପ୍ରୋତ୍ସାହନ ଯୋଗାଇଥିଲେ। ତାଙ୍କର ପଦାଙ୍କ ଅନୁସରଣ କରି ବିଜୁବାବୁ ଫୁଟବଲ୍ ଖେଳର ପ୍ରସାର ଏବଂ ଜାତୀୟ ସ୍ତରରେ ଖେଳାଳିମାନଙ୍କ ପାଇଁ ଏକ ସୁଯୋଗ ତିଆରି କରିବା ନିମନ୍ତେ ୧୯୬୨ ମସିହାରେ ଓଡ଼ିଶାରେ ପ୍ରଥମଥର ପାଇଁ କଟକଠାରେ ସର୍ବଭାରତୀୟ 'କଳିଙ୍ଗ କପ୍ ଫୁଟବଲ୍ ଟୁର୍ଣ୍ଣାମେଣ୍ଟ'ର ଶୁଭାରମ୍ଭ କରିଥିଲେ। ଏଥିରେ ଭାରତର ବିଭିନ୍ନ ଶ୍ରେଷ୍ଠ ଫୁଟବଲ୍ ଦଳ ଭାଗ ନେବାକୁ ଆସିଥିଲେ। ବିଜେତା ଦଳକୁ ଇଂଲଣ୍ଡର ବିଖ୍ୟାତ 'ହାମିଲଟନ୍ କମ୍ପାନୀ' ଦ୍ୱାରା ପ୍ରସ୍ତୁତ 'କଳିଙ୍ଗ କପ୍' ପ୍ରଦାନ କରାଯାଇଥିଲା। ସେହି ସମୟରେ ଏହି କପ୍‌ଟିର ଦାମ୍ ପ୍ରାୟ ଦଶଲକ୍ଷ ଟଙ୍କା ଥିଲା। ଏହାର ସମସ୍ତ ଖର୍ଚ୍ଚ 'କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ' ବହନ କରିଥିଲା। ଏହି ଟୁର୍ଣ୍ଣାମେଣ୍ଟରେ ଅରୁନ୍ ଘୋଷ, ଭରାହ୍ଲୁ, ଅପ୍ପାଲାରାଜୁ, ପି.କେ. ବାନାର୍ଜି, ସୁନିଲ ନନ୍ଦୀଙ୍କ ପରି ବିଖ୍ୟାତ ଖେଳାଳି ସେମାନଙ୍କର କ୍ରୀଡ଼ା କୌଶଳ ପ୍ରଦର୍ଶନ କରି ଦେଖଣାହାରୀଙ୍କୁ ଚମତ୍କୃତ କରୁଥିଲେ। ଏହି ଟୁର୍ଣ୍ଣାମେଣ୍ଟ ସେ ସମୟର ଦେଶର ଅନ୍ୟତମ ଶ୍ରେଷ୍ଠ ଏବଂ ଗୁରୁତ୍ୱପୂର୍ଣ୍ଣ ଟୁର୍ଣ୍ଣାମେଣ୍ଟ ଥିଲା। କଟକ ବାରବାଟୀ ଷ୍ଟାଡିୟମର ପ୍ରତିଷ୍ଠାତା ଭୈରବ ଚନ୍ଦ୍ର ମହାନ୍ତିଙ୍କର ସେ ଜଣେ ଉଚ୍ଚ ପ୍ରଶଂସକ ଥିଲେ। ବେସରକାରୀ ସ୍ତରରେ କ୍ରୀଡ଼ାର ଉନ୍ନତି ପାଇଁ ଓଡ଼ିଶା ଅଲମ୍ପିକ୍ ଆସୋସିଏସନ୍‌ର କାର୍ଯ୍ୟକୁ ସେ ସବୁବେଳେ ପ୍ରଶଂସା କରୁଥିଲେ।

Digitized by srujanika@gmail.com

ଓଡ଼ିଶା କ୍ରୀଡ଼ା ନିର୍ଦ୍ଦେଶାଳୟର ଅବସରପ୍ରାପ୍ତ ସହକାରୀ ନିର୍ଦ୍ଦେଶକ ଅଶୋକ ମହାନ୍ତି ତାଙ୍କର 'ଦକ୍ଷ କ୍ରୀଡ଼ାବିତ୍: ବିଜୁ ପଟ୍ଟନାୟକ' ଆଲେଖ୍ୟରେ ବର୍ଣ୍ଣନା କରିଛନ୍ତି, "୧୯୬୧-୬୨ ମସିହାରେ ବିଜୁବାବୁ କଟକରେ ପ୍ରଥମ ସର୍ବଭାରତୀୟ 'କଳିଙ୍ଗ କପ୍ ଫୁଟବଲ ଟୁର୍ଣ୍ଣାମେଣ୍ଟ' ଆରମ୍ଭ କରିଥିଲେ ଯାହାକି ସେ ସମୟର ଭାରତର ଅନ୍ୟତମ ଶ୍ରେଷ୍ଠ ର୍ୟାଙ୍କିଙ୍ଗ୍ ଟୁର୍ଣ୍ଣାମେଣ୍ଟ ଭାବେ ପରିଚିତ ହୋଇଥିଲା ଏବଂ ଦେଶର ସବୁ ପ୍ରମୁଖ ଦଳଗୁଡ଼ିକ ସେଥିରେ ଭାଗ ନେଇଥିଲେ। ବିଜେତା ଦଳକୁ ପ୍ରସ୍ତୁତ 'କଳିଙ୍ଗ କପ୍' ଟ୍ରଫି ପ୍ରଦାନ କରାଯାଉଥିଲା। ବିଜୁବାବୁଙ୍କର ଫୁଟବଲ ଖେଳ ପ୍ରତି ଥିବା ମୋହର ଆଉ ଗୋଟିଏ ଉଦାହରଣ ହେଲା, ତାଙ୍କ ଦ୍ୱାରା ପ୍ରତିଷ୍ଠିତ 'କଳିଙ୍ଗ ଟିଉବ୍‌ସ' କାରଖାନାରେ ୬୦ ଦଶକର ବହୁ ଖ୍ୟାତାନାମା ଖେଳାଳି ଯଥା ସେଖ୍ ବାବୁ (ବାବୁମିଆଁ), ମାଧବନ, ଥମାସ୍ ବ୍ରଦରର୍ସ ଏବଂ ଆହୁରି ଅନେକଙ୍କୁ ଚାକିରି ସୁବିଧା ଯୋଗାଇ ଦେଇ ଏକ ଉଚ୍ଚକୋଟୀର 'ଫୁଟବଲ ଟିମ୍' ଗଠନ କରାଯାଇଥିଲା ଏବଂ ଏହି ଖେଳାଳିମାନେ ବହୁବର୍ଷ ଧରି ରାଜ୍ୟକୁ ପ୍ରତିନିଧିତ୍ୱ କରିଥିଲେ।"

ଓଡିଶାରୁ ପ୍ରଥମ ବ୍ୟକ୍ତି ଭାବେ ୧୯୬୪ ମସିହାରେ ବିଜୁବାବୁ ସର୍ବଭାରତୀୟ ବାସ୍କେଟ ବଲ୍ ସଂଘର ସଭାପତି ଭାବେ ମନୋନୀତ ହୋଇଥିଲେ। ତାଙ୍କରି ପ୍ରେରଣା ଓ ଆଶୀର୍ବାଦରେ ଓଡିଶାର ଖ୍ୟାତନାମା ଖେଳାଳି ଅରୂପାନନ୍ଦ ରାଉତରାୟ ପ୍ରଥମ ଓଡିଆ ଭାବେ ଭାରତୀୟ ବାସ୍କେଟ ବଲ୍ ଦଳରେ ସ୍ଥାନ ପାଇ ରାଜ୍ୟକୁ ଗୌରବାନ୍ୱିତ କରିଥିଲେ।

ପରିଣତ ବୟସରେ ମଧ୍ୟ ବିଜୁବାବୁଙ୍କ କ୍ରୀଡ଼ା ଓ କ୍ରୀଡ଼ାବିତ୍‌ମାନଙ୍କ ପ୍ରତି ଆନ୍ତରିକତା ଅତୁଟ ରହିଥିଲା। ୧୯୯୪ ମସିହାରେ ଓଡିଶାର ଉଦୀୟମାନ କ୍ରିକେଟର ଶିବସୁନ୍ଦର ଦାସ ଭାରତୀୟ ୧୭ ବର୍ଷରୁ କମ୍ ଦଳର ଅଧିନାୟକ ଭାବେ ମନୋନୀତ ହୋଇ ଇଂଲଣ୍ଡ ଗସ୍ତରେ ଯିବା ପୂର୍ବରୁ ତାଙ୍କ କୋଚ କିଶୋର ମାଣିଆଙ୍କ ସହିତ ମୁଖ୍ୟମନ୍ତ୍ରୀଙ୍କୁ ସୌଜନ୍ୟମୂଳକ ସାକ୍ଷାତ କରିବା ସମୟରେ ପ୍ରଥମେ ବିଜୁବାବୁ ଶିବସୁନ୍ଦରଙ୍କୁ ଅଭିନନ୍ଦନ ଜଣାଇ ଇଂରାଜୀରେ କହିଥିଲେ, "I am extremely delighted that one of my oriya boy has been chosen to lead the Indian team. I am proud of you.' ପରେ ପରେ ପଚାରିଲେ- Do you have a left arm spinner in your team ? How many left handed batsman, medium pace bowlers constitute your

Digitized by srujanika@gmail.com

team?" ସମସ୍ତ ପ୍ରଶ୍ନର ଉତ୍ତର ଦେଇସାରିଲା ପରେ ଶିବସୁନ୍ଦର ଓ ଶ୍ରୀ ମାଣିଆ ଜଣେ ବ୍ୟସ୍ତବହୁଳ ମୁଖ୍ୟମନ୍ତ୍ରୀଙ୍କର କ୍ରିକେଟ ଖେଳ ଏବଂ ବିଶେଷ ଭାବେ ଏକ ସନ୍ତୁଳିତ ଦଳ ଗଠନ ଉପରେ ଏପରି ସୂକ୍ଷ୍ମ ଓ ମୌଳିକ ଜ୍ଞାନ ଥିବା ଜାଣି ଆଶ୍ଚର୍ଯ୍ୟ ହୋଇଥିଲେ। ବିଦାୟ ନେବା ସମୟରେ ଆଶୀର୍ବାଦ ଦେଇ ବିଜୁବାବୁ କହିଥିଲେ, "Best of luck youngman, Keep the name of state and country high. My best wishes are with you."

୧୯୬୩ ମସିହାରେ 'କଳିଙ୍ଗ ଟ୍ୟୁବ୍‌ସ ଫୁଟବଲ ଟିମ୍' କଳିଙ୍ଗ କପ୍ ଫୁଟବଲ୍ ଟୁର୍ଣ୍ଣାମେଣ୍ଟରେ ବିଜୟଲାଭ କରି ମର୍ଯ୍ୟାଦାଜନକ 'କଳିଙ୍ଗ କପ୍'ଟିକୁ ଜିତିଥିଲେ। 'କଳିଙ୍ଗ ଫାଉଣ୍ଡେସନ ଟ୍ରଷ୍ଟ' ଓ 'ଓଡ଼ିଶା ଫୁଟବଲ ଆସୋସିଏସନ୍'ର ମିଳିତ ଉଦ୍ୟମରେ ଏହି ଟୁର୍ଣ୍ଣାମେଣ୍ଟ କିଛି ବର୍ଷ ସଫଳତାର ସହ ଅନୁଷ୍ଠିତ ହେବାପରେ ବନ୍ଦ ହୋଇଯାଇଥିଲା।

ଦ୍ୱିତୀୟଥର ବିଜୁବାବୁ ମୁଖ୍ୟମନ୍ତ୍ରୀ ହେବା ସମୟରେ ୧୯୯୧ ମସିହାରେ 'କଳିଙ୍ଗ କପ୍ ଫୁଟବଲ୍ ଟୁର୍ଣ୍ଣାମେଣ୍ଟ' କ୍ରୀଡ଼ା ବିଭାଗ, ଓଡ଼ିଶା ଅଲମ୍ପିକ ଆସୋସିଏସନ୍‌ର ସଂପାଦକ ଆଶୀର୍ବାଦ ବେହେରା ଓ ଓଡ଼ିଶା ଫୁଟବଲ୍ ଆସୋସିଏସନ୍‌ର ସଂପାଦକ ସୁବ୍ରତ ସାହୁଙ୍କ ମିଳିତ ଉଦ୍ୟମରେ ଆରମ୍ଭ ହୋଇଥିଲା। ମାତ୍ର ଏହା କିଛି ବର୍ଷ ଅନୁଷ୍ଠିତ ହେବା ପରେ ପୁଣି ବନ୍ଦ ହୋଇଗଲା। ତେବେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଉଦ୍ୟମରୁ ଏହି କପ୍ ପୁଣି ଥରେ ୨୦୦୫ ମସହାରୁ ଆରମ୍ଭ ହୋଇଛି।

ଓଡ଼ିଶା ସରକାର ୨୦୦୧ ମସିହାରୁ ବିଜୁବାବୁଙ୍କ ପରି ରାଷ୍ଟ୍ରନୀତିଜ୍ଞ, କ୍ରୀଡ଼ାବିତ୍ ତଥା କ୍ରୀଡ଼ାପ୍ରେମୀଙ୍କ ସ୍ମୃତିକୁ ଉଦ୍‌ଜୀବିତ ରଖିବା ପାଇଁ ତାଙ୍କ ସମ୍ମାନାର୍ଥେ 'ବିଜୁ ପଟ୍ଟନାୟକ କ୍ରୀଡ଼ା ଓ ସାହସିକତା ପୁରସ୍କାର' ରାଜ୍ୟ ସରକାରଙ୍କ କ୍ରୀଡ଼ା ଓ ଯୁବସେବା ବିଭାଗ ତରଫରୁ ପ୍ରତିବର୍ଷ କ୍ରୀଡ଼ାବିତ୍‌ଙ୍କୁ ପ୍ରଦାନ କରୁଛନ୍ତି। ଏହି ପୁରସ୍କାର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଭୁବନେଶ୍ୱରର ଜୟଦେବ ଭବନରେ ବିଜୁବାବୁଙ୍କ ଜନ୍ମତିଥି ମାର୍ଚ୍ଚ ୫ ତାରିଖରେ ପ୍ରଦାନ କରାଯାଉଥିଲା। କିଛିବର୍ଷ ହେଲା ଏହି ସମ୍ମାନଜନକ ପୁରସ୍କାର 'ଜାତୀୟ କ୍ରୀଡ଼ା ଦିବସ' (ହକି ଯାଦୁକର ଧ୍ୟାନଚାନ୍ଦଙ୍କ ଜନ୍ମଦିବସ) ମାର୍ଚ୍ଚ ୨୯ ତାରିଖରେ ପ୍ରଦାନ କରାଯାଉଛି।

କ୍ରୀଡ଼ାର ଉନ୍ନତି ପାଇଁ ବିଜୁବାବୁ ସଦାସର୍ବଦା ଚେଷ୍ଟା କରୁଥିଲେ। ସେ ନିଜେ ଜଣେ ସଫଳ କ୍ରୀଡ଼ାବିତ୍ ହୋଇଥିବାରୁ କ୍ରୀଡ଼ାବିତ୍‌ମାନଙ୍କର ସୁବିଧା ଅସୁବିଧା ଭଲ

Digitized by srujanika@gmail.com

ଭାବରେ ବୁଝି ତା'ର ପ୍ରତିକାର କରୁଥିଲେ। ପ୍ରତିଭାବାନ କ୍ରୀଡ଼ାବିତ୍‌ଙ୍କୁ ଦେଶ ଓ ରାଜ୍ୟ ପାଇଁ ସୁନାମ ଆଣିବାକୁ ଉତ୍ସାହିତ କରୁଥିଲେ। ସେ ମହାନଦୀରେ ସନ୍ତରଣ କରିବା ପାଇଁ ଭଲପାଉଥିଲେ। ତେଣୁ ଭୁବନେଶ୍ୱରର କଳିଙ୍ଗ ଷ୍ଟାଡ଼ିୟମରେ ଅବସ୍ଥିତ ସୁଇମିଙ୍ଗପୁଲକୁ ବିଜୁ ପଟ୍ଟନାୟକଙ୍କ ନାମରେ ନାମିତ କରାଯାଇଛି।

ପ୍ରଖ୍ୟାତ ଗ୍ରୀକ୍ କବି ହୋମର୍‌ଙ୍କ ଭାଷାରେ, "There is no greater glory for man than to show the brightness of his feet and strength of his arms". କବି ଗ୍ରୀସ୍‌ର ବୀରପୁରୁଷ (ଗ୍ଲାଡିଏଟର୍)ମାନଙ୍କ ଉପରେ ଏପରି ଟିପ୍ପଣୀ ଦେଇଥିବାର ବିଶ୍ୱାସ କରାଯାଏ। ବିଜୁବାବୁଙ୍କ ବିଶାଳ ଛଅଫୁଟ୍ ତିନିଇଞ୍ଚର ଶରୀର ଥିଲା ଏହିପରି ଜଣେ ଗ୍ଲାଡିଏଟର୍‌ଙ୍କ ଭଳି ନିଖୁଣ।

ନବେ ଦଶକର ପ୍ରଥମଭାଗରେ ବିଜୁବାବୁ ମୁଖ୍ୟମନ୍ତ୍ରୀ ଭାବେ ଅନେକ ପ୍ରତିଭାବାନ କ୍ରୀଡ଼ାବିତ୍‌ଙ୍କୁ ପ୍ରୋତ୍ସାହନ ପ୍ରଦାନ କରିଥିଲେ। ଏମାନଙ୍କ ଭିତରେ ଥିଲେ ବର୍ତ୍ତମାନର ଅନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ମାର୍ଶାଲ୍ ଆର୍ଟ ଗୁରୁ ଡକ୍ଟର ହରିପ୍ରସାଦ ପଟ୍ଟନାୟକ (କାଟ), ଅନ୍ୟତମ ମାର୍ଶାଲ୍ ଆର୍ଟ ପ୍ରବର୍ତ୍ତକ ଇଂ ସୁଧାଂଶୁ ଶେଖର ହରିଚନ୍ଦନ, ତାଇକୋଣ୍ଡୋର ଉପେନ୍ଦ୍ର କୁମାର ମହାନ୍ତି (ଡୁଡା), ବଡିବିଲ୍ଡର ବାବୁଲି ସ୍ୱାଇଁ, ଜୁଡୋ ଗୁରୁ ସ୍ୱର୍ଗତ ବିରଞ୍ଚି ଦାସ, ଅଲମ୍ପିଆନ୍ ଆଥଲେଟ୍ ଅନୁରାଧା ବିଶ୍ୱାଳ, ଦୁଃସାହସିକ କ୍ରୀଡ଼ାବିତ୍ ରବୀନ୍ଦ୍ର କୁମାର ଭୂୟାଁ, ନିବେଦିତା ଆଚାର୍ଯ୍ୟ ଓ ଅଶ୍ୱଚାଳନାରେ ପାରଦର୍ଶିତା ଲାଭ କରିଥିବା ଡକ୍ଟର ସୌର୍ଯ୍ୟରଂଜନ ପରିଜା ଓ ଆହୁରି ଅନେକ।

୧୯୯୨ ମସିହା ରାଜ୍ୟ କରାଟେ ପ୍ରତିଯୋଗିତା ଅବସରରେ କରାଟେକା ହରି ପଟ୍ଟନାୟକଙ୍କ ଅବିଶ୍ୱାସନୀୟ ଷ୍ଟଣ୍ଟ ପ୍ରଦର୍ଶନ ଦ୍ୱାରା ବିଜୁବାବୁ ବହୁଳ ଭାବେ ଉଦ୍‌ବୁଦ୍ଧ ହୋଇ ପୁରସ୍କାର ସ୍ୱରୂପ ଏକଲକ୍ଷ ଟଙ୍କା ପ୍ରଦାନ କରିଥିଲେ।

ଓଡ଼ିଶାର ମହିଳା ଫୁଟ୍‌ବଲ୍ ଖେଳାଳିମାନେ ଆଜି ଜାତୀୟ ଓ ଅନ୍ତର୍ଜାତୀୟ କ୍ଷେତ୍ରରେ ସୁନାମ ଓ ପ୍ରତିଷ୍ଠା ଅର୍ଜନ କରିପାରିଛନ୍ତି ଏବଂ ଏହା ସମ୍ଭବ ହୋଇଛି ବିଜୁବାବୁଙ୍କ ପ୍ରୋତ୍ସହନ ପାଇଁ। ୧୯୯୨ ମସିହାରେ ଏହି ଲେଖକ କ୍ରୀଡ଼ା ନିର୍ଦ୍ଦେଶକ ରୂପେ କାର୍ଯ୍ୟରତ ଥିବା ସମୟରେ ହଠାତ୍ ନିର୍ଦ୍ଦେଶ ଆସିଲା ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କଠାରୁ "ମୋ ରାଜ୍ୟର ମହିଳା ଫୁଟବଲ୍ ଦଳକୁ ପ୍ରସ୍ତୁତ କର, ସେମାନେ ଆସାମର ହାପଲଙ୍ଗ୍‌ଠାରେ ହେଉଥିବା ଜାତୀୟ ମହିଳା ଫୁଟବଲ୍ ପ୍ରତିଯୋଗିତାରେ ଭାଗ ନେବେ।" ଫୁଟବଲ୍ କୋଚ ଚନ୍ଦନଚନ୍ଦା, ଆର.କେ. ମଣ୍ଡଳ ଓ ଗଙ୍ଗାଧର

Digitized by srujanika@gmail.com

ବେହେରାଙ୍କୁ ଡାକି ଓଡ଼ିଶା ଦଳ ପ୍ରସ୍ତୁତ କରିବାକୁ ପ୍ରସ୍ତାବ ଦେଇଥିଲି। କିଛି ଆଥଲେଟ୍ ଓ ଖୋ ଖୋ ଖେଳାଳିଙ୍କୁ ନେଇ ଅଳ୍ପଦିନର ତାମିଲ ପରେ ଗୀତାଞ୍ଜଳି ସାମନ୍ତରାୟଙ୍କ ଅଧିନାୟକତ୍ୱରେ ଓଡ଼ିଶା ଦଳ ବିମାନରେ ହାପଲଙ୍ଗ୍ ଯାଇ ଜାତୀୟ ପ୍ରତିଯୋଗିତାରେ ଭାଗ ନେଇଥିଲେ। ପରବର୍ତ୍ତୀ ସମୟରେ ଓଡ଼ିଶା ମହିଳା ଫୁଟବଲ୍ ଦଳ ଦେଶର ସର୍ବଶ୍ରେଷ୍ଠ ଦଳର ମାନ୍ୟତା ପାଇବା ସହିତ ସର୍ବାଧିକ ଅନ୍ତର୍ଜାତୀୟ ଖେଳାଳି ପ୍ରସ୍ତୁତ କରି ଇତିହାସ ସୃଷ୍ଟି କରିଛନ୍ତି। ବିଜୁବାବୁଙ୍କ ସେହି ନିଷ୍ପତ୍ତି ଓଡ଼ିଶା କ୍ରୀଡ଼ା ଇତିହାସରେ ମହିଳାମାନଙ୍କର ସଫଳତା ଓ ଅଗ୍ରଗତି ପାଇଁ ଉଲ୍ଲେଖନୀୟ ପଦକ୍ଷେପ ଥିଲା।

ରାଜ୍ୟର ଉଭୟ ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ କ୍ରୀଡ଼ା ଭିତ୍ତିଭୂମିର ବିକାଶ, ଆନୁଷଙ୍ଗିକ ସୁବିଧା ସୁଯୋଗ ଯଥା- କ୍ରୀଡ଼ାବିତ୍‌ମାନଙ୍କୁ ବୃତ୍ତି, ପେନ୍‌ସନ୍, ଆର୍ଥିକ ପୁରସ୍କାରର ବ୍ୟବସ୍ଥା ଏବଂ ସର୍ବୋପରି କ୍ରୀଡ଼ାର ସର୍ବାଙ୍ଗୀନ ଉନ୍ନତି ପାଇଁ ବିଭିନ୍ନ ଯୋଜନା ପ୍ରସ୍ତୁତ କରାଯାଇ କାର୍ଯ୍ୟକ୍ଷମ କରାଯାଇଥିଲା। ଓଡ଼ିଶା କ୍ରୀଡ଼ାର ଅଭ୍ୟୁଦୟ ବିଜୁବାବୁଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟ (ନବେ ଦଶକ)ରେ ଆରମ୍ଭ ହୋଇଥିଲା। କ୍ରୀଡ଼ାବିତ୍ ଓ କ୍ରୀଡ଼ାପ୍ରେମୀ ବିଜୁ ପଟ୍ଟନାୟକ ରାଜ୍ୟର ଅସଂଖ୍ୟ ଜନସାଧାରଣଙ୍କ ଜନମାନସରେ ସବୁଦିନ ପାଇଁ ଜୀବିତ ରହିଥିବେ ଏହା ନିଃସନ୍ଦେହ।

୧୯୯୦-୯୫ ମସିହା ଓଡ଼ିଶା କ୍ରୀଡ଼ା ବିଭାଗର ଏକ ଗୌରବମୟ ସମୟ କହିଲେ ଅତ୍ୟୁକ୍ତି ହେବନାହିଁ। ସେ ସମୟରେ ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ। ଏହି ଲେଖକ ତାଙ୍କ ଅଧୀନରେ ୧୯୯୦ ଅକ୍ଟୋବରରୁ ୧୯୯୪ ମେ' ମାସ ପର୍ଯ୍ୟନ୍ତ କ୍ରୀଡ଼ା ଓ ଯୁବସେବା ବିଭାଗର ନିର୍ଦ୍ଦେଶକ ଓ ଅତିରିକ୍ତ ଶାସନ ସଚିବ ଭାବେ କାର୍ଯ୍ୟ କରିଥିଲା। ବିଜୁ ପଟ୍ଟନାୟକଙ୍କର ଓଡ଼ିଶାରେ କ୍ରୀଡ଼ାର ଉନ୍ନତି କରିବାର ଆଗ୍ରହ ମୋତେ ଆଚମ୍ବିତ କରିଥିଲା। ସେ ଓଡ଼ିଶାର ଯୁବକ ଯୁବତୀମାନେ କ୍ରୀଡ଼ାନିପୁଣ ହୋଇ ଦେଶବିଦେଶରେ କିଭଳି ସୁନାମ ଅର୍ଜନ କରିବେ ସେଥିପାଇଁ ସମସ୍ତ ଉଦ୍ୟମ କରିବାକୁ ଓ ପଦକ୍ଷେପ ନେବାକୁ ମୋତେ କ୍ରୀଡ଼ା ବିଭାଗରେ ଯୋଗଦେବାର ପ୍ରଥମଦିନରୁ ଡାକି ନିର୍ଦ୍ଦେଶ ଦେଇଥିଲେ। ଭୁବନେଶ୍ୱରର 'କଳିଙ୍ଗ ଷ୍ଟାଡିୟମ୍'ର ନିର୍ମାଣ ପାଇଁ ପ୍ରାଧାନ୍ୟ ଦେଇ ପଦକ୍ଷେପ ନେବାକୁ ସେ ଇଚ୍ଛା ବ୍ୟକ୍ତ କରିଥିଲେ। ଏହି ଷ୍ଟାଡିୟମର ଭିତ୍ତି ସେ ପକାଇଥିଲେ ଏବଂ ତାଙ୍କରି ସମୟରେ ମାତ୍ର ତିନି ବର୍ଷ ମଧ୍ୟରେ ଏହି ଷ୍ଟାଡିୟମଟି ପୂର୍ଣ୍ଣ କାର୍ଯ୍ୟକ୍ଷମ ହୋଇପାରିଥିଲା। ଏହି ଷ୍ଟାଡିୟମକୁ କ୍ଷିପ୍ରଗତିରେ କାର୍ଯ୍ୟ କରାଇବାରେ ଇଡ୍‌କୋର ସର୍ବୋଚ୍ଚ ଯନ୍ତ୍ରୀ ଏଲ.ଏନ୍. ବାରିକ,

Digitized by srujanika@gmail.com

ମୁଖ୍ୟଯନ୍ତ୍ରୀ ଗୋପାଳ ମିତ୍ର (ପଦ୍ମଶ୍ରୀ), ଇଡ୍‌କୋର ଚେୟାରମ୍ୟାନ ସତ୍ୟ ପ୍ରକାଶ ନନ୍ଦ ପ୍ରମୁଖ ଅତ୍ୟନ୍ତ ନିଷ୍ଠାର ସହିତ ସହଯୋଗ କରିଥିଲେ।

ଓଡ଼ିଶାର ସବୁ ଜିଲ୍ଲାରେ ଷ୍ଟାଡିୟମ୍, ଜିମ୍ନାସିୟମ୍ ଓ ସ୍କୁଲମାନଙ୍କରେ ଖେଳପଡ଼ିଆମାନ ତିଆରି କରିବାକୁ ଅଗ୍ରାଧିକାର ଦେବାକୁ ବିଜୁବାବୁ ମୋତେ ନିର୍ଦ୍ଦେଶ ଦେଇଥିଲେ। ମହିଳାମାନଙ୍କୁ ଫୁଟବଲ, ହକି, କ୍ରିକେଟ, ବ୍ୟାଟମିଣ୍ଟନ୍, ଆଥଲେଟିକ୍‌ସ ଓ ଅନ୍ୟାନ୍ୟ ଖେଳରେ ନିପୁଣ କରାଇବାକୁ ସମସ୍ତ ବ୍ୟବସ୍ଥା କରିବାକୁ ଏକ ଖସଡ଼ା ପ୍ରସ୍ତୁତ କରିବାକୁ ସେ ମୋତେ କହିଥିଲେ। ଜଣେ ମୁଖ୍ୟମନ୍ତ୍ରୀ ପ୍ରତ୍ୟେକ ସପ୍ତାହରେ ଅନ୍ୟୂନ ଥରେ ଯେକୌଣସି ସମୟରେ ମୋତେ ଡାକି କ୍ରୀଡ଼ାର କେଉଁ ବିଭାଗରେ କିପରି ଅଗ୍ରଗତି ହୋଇଛି, ତାହା ବହୁ ସମୟ ଦେଇ ଶୁଣୁଥିଲେ ଏବଂ ତାଙ୍କର ଚିନ୍ତାଧାରା ସହିତ ମୋତେ ଅବଗତ କରାଉଥିଲେ। ସେ ଚାହୁଁଥିଲେ ସବୁ ଝିଅ ରଚିତା ପଣ୍ଡା, ଅନୁରାଧା ବିଶ୍ୱାଳଙ୍କ ପରି କୃତିତ୍ୱ ଅର୍ଜନ କରି ଓଡ଼ିଶାକୁ ସର୍ବଭାରତୀୟ ସ୍ତରରେ ଗୌରବାନ୍ୱିତ କରାନ୍ତୁ। ସେତେବେଳେ କ୍ରୀଡ଼ାମନ୍ତ୍ରୀ ଥିଲେ ଶ୍ରୀଯୁକ୍ତ ଶରତ କୁମାର କର। ସେ ବିଜୁ ପଟ୍ଟନାୟକଙ୍କର ଅନୁରକ୍ତ ବ୍ୟକ୍ତି ଥିଲେ। ତେଣୁ ମୁଖ୍ୟମନ୍ତ୍ରୀ ଯାହା ଚାହୁଁଥିଲେ ସେ ପ୍ରସ୍ତାବ ଦେବାମାତ୍ରେ ତାହାକୁ ତତ୍‌କ୍ଷଣାତ୍ କାର୍ଯ୍ୟକାରୀ କରିବାରେ କୌଣସି ଅସୁବିଧା ହେଉ ନ ଥିଲା। ସେହି ସମୟରେ କଳିଙ୍ଗ ଷ୍ଟାଡିୟମ୍‌ର କାର୍ଯ୍ୟ ସମ୍ପୂର୍ଣ୍ଣ ହେଲା, ତତ୍‌ସଙ୍ଗେ ସଙ୍ଗେ ପ୍ରାୟ ୧୭ଟି ଜିଲ୍ଲାରେ ନୂତନ ଷ୍ଟାଡିୟମ୍, ଜିମ୍ନାସିୟମମାନ ତିଆରି ହୋଇପାରିଥିଲା। ଚୟନ କରାଯାଇ ପୁଅଝିଅମାନଙ୍କୁ ଶିକ୍ଷା ସଙ୍ଗେ ସଙ୍ଗେ ବିଭିନ୍ନ କ୍ରୀଡ଼ାରେ ତାଲିମ ଦେବାକୁ ନୂଆ ନୂଆ କ୍ରୀଡ଼ା ହଷ୍ଟେଲ ପ୍ରତିଷ୍ଠା କରାଯାଇପାରିଥିଲା। ଶତାଧିକ ଛାତ୍ରଛାତ୍ରୀଙ୍କ ପାଇଁ ରାଉରକେଲାର ପାନପୋଷଠାରେ କ୍ରୀଡ଼ା ହଷ୍ଟେଲର ସମ୍ପ୍ରସାରଣ କରାଯାଇଥିଲା। ସେଠାରେ ହକି ଖେଳାଳିଙ୍କୁ ଉନ୍ନତ ଧରଣର ପ୍ରଶିକ୍ଷଣ ଦେବାପାଇଁ ପ୍ରାୟ ତିନିଲକ୍ଷ ଟଙ୍କା ବ୍ୟୟରେ ଖେଳପଡ଼ିଆରେ ଆଷ୍ଟ୍ରୋ ଟ୍ରଫ୍ ବିଛା ଯାଇଥିଲା। ଏହି କାର୍ଯ୍ୟରେ ସେତେବେଳେ ରାଉରକେଲାର ଏଡିଏମ୍ ଥିବା ଶ୍ରୀ ଅସିତ କୁମାର ତ୍ରିପାଠୀ, ଆଇ.ଏ.ଏସ୍. ଖୁବ୍ ଉତ୍ସାହର ସହିତ ସହାୟତା ଯୋଗାଇ ଦେଇଥିଲେ। କିଛିବର୍ଷ ପାଇଁ କ୍ରୀଡ଼ା ସଚିବ ଥିଲେ ଶ୍ରୀ ଅଶୋକ କୁମାର ମିଶ୍ର। ସେ ଜଣେ କର୍ମଠ ଓ ଦୂରଦର୍ଶୀ ବ୍ୟକ୍ତି ଥିଲେ। କାର୍ଯ୍ୟଗୁଡ଼ିକ କିଭଳି ସୁଚାରୁରୂପେ ହୋଇପାରିବ ସେଥିପାଇଁ କ୍ରୀଡ଼ା ମନ୍ତ୍ରୀ, କ୍ରୀଡ଼ା ସଚିବ ସବୁବେଳେ ତତ୍ପର ଥିଲେ। ସେତେବେଳର କ୍ରୀଡ଼ା ନିର୍ଦ୍ଦେଶାଳୟର ସହକାରୀ ନିର୍ଦ୍ଦେଶକ ଅଶୋକ

Digitized by srujanika@gmail.com

କୁମାର ମହାନ୍ତି, ଡକ୍ଟର ହରିପଦ ଶତପଥୀ, ଡିଷ୍ଟ୍ରିକ୍ଟ ସ୍ପୋର୍ଟ୍ସ ଅଫିସର ଅଭୟ କୁମାର ପଟ୍ଟନାୟକ, ଅସୀମା ଦାସ, ଫୁଟବଲ କୋଚ ନବକିଶୋର ମିଶ୍ର, ଆର.କେ. ମଣ୍ଡଳ, ଜୟରାଜ ପଟ୍ଟନାୟକ, ଆଥଲେଟିକ୍ କୋଚ ଅରୁଣ ଦାସ, ରୂପନୀତା ପଣ୍ଡା, ନୀଳମାଧବ ଦେଓ, ଜୁଡୋ କୋଚ କୃଷ୍ଣଚନ୍ଦ୍ର ପଣ୍ଡା ପ୍ରମୁଖ କ୍ରୀଡ଼ା ନିର୍ଦ୍ଦେଶାଳୟ ପାଇଁ ଯେଭଳି ଭାବରେ ସମର୍ପିତ ଭାବ ନେଇ କାର୍ଯ୍ୟ କରୁଥିଲେ ତାହା ସେମାନଙ୍କୁ ବିଜୁ ପଟ୍ଟନାୟକଙ୍କର ପ୍ରିୟପାତ୍ର କରିପାରିଥିଲା। ସେହିପରି ରାଜ୍ୟରେ ଟେନିସ ଖେଳର ଉନ୍ନତି ପାଇଁ ସ୍ୱର୍ଗତ ଦୁଃଶାସନ ଦେଓ ଓ ଶୁଭ୍ରାଂଶୁ ଚରଣ ଷଡ଼ଙ୍ଗୀ ସେମାନଙ୍କ ବ୍ୟକ୍ତିଗତ ଉଦ୍ୟମରେ ଚେଷ୍ଟିତ ଥିଲେ। ଏହି ସମୟରେ କ୍ରୀଡ଼ା ପ୍ରଶିକ୍ଷକମାନଙ୍କ ଅଭାବ ଅନୁଭୂତ ହେବାରୁ ଭାରତ ସରକାରଙ୍କଦ୍ୱାରା ପ୍ରତିଷ୍ଠିତ ସ୍ପୋର୍ଟ୍ସ ଅଥରିଟି ଅଫ୍ ଇଣ୍ଡିଆର ପ୍ରତିଷ୍ଠାନମାନଙ୍କରୁ ପ୍ରଶିକ୍ଷଣ ପାଇଥିବା ପ୍ରାୟ ୨୪ଜଣ ଯୁବକ-ଯୁବତୀଙ୍କୁ ଦୈନିକ ମଜୁରୀ ଭିତ୍ତିରେ ନିଯୁକ୍ତ କରାଯାଇଥିଲା। ସେମାନେ ସେମାନଙ୍କ ପାରିଶ୍ରମିକକୁ ଖାତିର ନ କରି ଦିନରାତି କ୍ରୀଡ଼ାର କିଭଳି ଉନ୍ନତି ହେବ ସେଥିପାଇଁ କଠିନ ପରିଶ୍ରମ କରିଥିଲେ। ସେମାନେ ସମସ୍ତେ ବର୍ତ୍ତମାନ ସ୍ଥାୟୀ କର୍ମଚାରୀ ଭାବରେ ବିଭିନ୍ନ ଜିଲ୍ଲାରେ କାର୍ଯ୍ୟରତ ଅଛନ୍ତି।

ବିଜୁ ପଟ୍ଟନାୟକ ଜଗତପୁରଠାରେ ମହାନଦୀରେ ୱାଟର ସ୍ପୋର୍ଟ୍ସ କମ୍ପ୍ଲେକ୍ସର ଶୁଭାରମ୍ଭ କରିଥିଲେ, ଯାହାର ପ୍ରଶିକ୍ଷାର୍ଥୀମାନେ ଆଜି ସର୍ବଭାରତୀୟ ସ୍ତରରେ ଶ୍ରେଷ୍ଠତା ପ୍ରତିପାଦନ କରୁଛନ୍ତି। ଏହି ସ୍ପୋର୍ଟ୍ସ କମ୍ପ୍ଲେକ୍ସ ପ୍ରତିଷ୍ଠା ବେଳେ ତତ୍କାଳୀନ ଜଳସମ୍ପଦ ମନ୍ତ୍ରୀ ବିଜୟ ମହାପାତ୍ର ଯୁଦ୍ଧକାଳୀନ ଭିତ୍ତିରେ ଭିତ୍ତିଭୂମି ଯୋଗାଇଦେଇ ଏହି ପ୍ରକଳ୍ପଟିର ପ୍ରତିଷ୍ଠାରେ ଅବର୍ଣ୍ଣନୀୟ ସହାୟତା କରିଥିଲେ। ଏଠାରେ ଉଲ୍ଲେଖ କରିବା ଉଚିତ ହେବ ଯେ, ବ୍ରିଗେଡିୟର କାମାକ୍ଷା ପ୍ରସାଦ ସିଂହଦେଓ ଏହି ପ୍ରକଳ୍ପଟିର ପରିକଳ୍ପନା ବିଗତ ଦୁଇଦଶନ୍ଧି ଧରି କରିଥିଲେ ମଧ୍ୟ ଭିତ୍ତିଭୂମି ଅଭାବରୁ ଓଡ଼ିଶାରେ ଏହା ପ୍ରତିଷ୍ଠା କରିବା ସମ୍ଭବପର ହେଉନଥିଲା।

କ୍ରୀଡ଼ା କସରତର ପ୍ରସାର ପାଇଁ ବିଜୁ ପଟ୍ଟନାୟକ କ୍ଷମତାରେ ଥାଆନ୍ତୁ ବା ନ ଥାଆନ୍ତୁ ଆଜୀବନ ଯେଭଳି ଦିଗ୍‌ଦର୍ଶନ ଦେଇଛନ୍ତି ତାହା କାଳେ କାଳେ ଓଡ଼ିଶାର ଯୁବପିଢ଼ିଙ୍କୁ ପ୍ରୋତ୍ସାହିତ କରିବ।

- ୦ -

Digitized by srujanika@gmail.com

# ଶିଳ୍ପାୟନର ମହାନାୟକ

ଉତ୍କଳ ଗୌରବ ମଧୁସୂଦନ ଦାସ ହୃଦୟଙ୍ଗମ କରିଥିଲେ ଯେ ଓଡ଼ିଶା ଲୋକମାନଙ୍କର ଆର୍ଥିକ ଉନ୍ନତି ଶିଳ୍ପ ପ୍ରତିଷ୍ଠା ଦ୍ୱାରା ସମ୍ଭବପର ହୋଇପାରିବ । ସେଥିପାଇଁ ମଧୁବାବୁ ପ୍ରତିଷ୍ଠା କରିଥିଲେ 'ଉତ୍କଳ ଟ୍ୟାନେରୀ' । ସେଠାରେ ପ୍ରସ୍ତୁତ ଜୋତା ଓ ଅନ୍ୟାନ୍ୟ ଚମଡ଼ା ସାମଗ୍ରୀ ଭାରତରେ ସର୍ବଶ୍ରେଷ୍ଠ ରୂପେ ବିବେଚିତ ହୋଇଥିଲା । ଆର୍ଥିକ ଦୃଷ୍ଟିରୁ ଦୁର୍ବଳ ଥିବା ଡମ, ମୋଚି ସଂପ୍ରଦାୟର ଶହଶହ ବ୍ୟକ୍ତିଙ୍କ ପାଇଁ ଏହି ଟ୍ୟାନେରୀ ନିଯୁକ୍ତି ସୁଯୋଗ ସୃଷ୍ଟି କରିଥିଲା । ସେହିଭଳି ତାଙ୍କଦ୍ୱାରା ପ୍ରତିଷ୍ଠିତ ହୋଇଥିଲା 'ଓଡ଼ିଶା ଆର୍ଟ ଓୟାର୍ସ' ଯେଉଁଠାରେ କି ଶହଶହ କାରିଗର ତାରକସୀ କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ ।

ମଧୁବାବୁ କହୁଥିଲେ, "ଏ ଜାତିର ମୋକ୍ଷ ରହିଛି ଶିଳ୍ପାୟନରେ" । ବିଜୁ ପଟ୍ଟନାୟକ ତାକୁ ରୂପାୟନ କରିବାକୁ ଆପ୍ରାଣ ଉଦ୍ୟମ କରିଥିଲେ । ତେଣୁ ଓଡ଼ିଶାର ଶିଳ୍ପ ବିପ୍ଳବର ପ୍ରଥମ ନିୟାମକ, ଚିନ୍ତକ ଓ ଅଗ୍ରଦୂତ ଥିଲେ ବିଜୁ ପଟ୍ଟନାୟକ । ବିଜୁ ପଟ୍ଟନାୟକ ୧୯୪୫ ମସିହାରେ କାରାମୁକ୍ତ ହେବା ପରେ ଓଡ଼ିଶାରେ ଶିଳ୍ପ ପ୍ରତିଷ୍ଠା ପାଇଁ ମନ ବଳାଇଲେ ଓ 'ବି ପଟ୍ଟନାୟକ ଆଣ୍ଡ କମ୍ପାନୀ' ନାମକ ଏକ ବ୍ୟବସାୟିକ ସଂସ୍ଥା ଆରମ୍ଭ କଲେ । ଏହି କମ୍ପାନୀରେ ତିନିଜଣ ଅଂଶୀଦାର ଥିଲେ । ଜଣେ ହେଲେ ବିଜୁବାବୁ, ଯାହାଙ୍କର ଶତକଡ଼ା ୪୫ଭାଗ ଅଂଶ ଧନ ଏହି କଂପାନୀରେ ନିୟୋଜିତ ହୋଇଥିଲା । ଅନ୍ୟଜଣେ ଥିଲେ ପ୍ରତାପ ସିଂ, ତାଙ୍କର ମଧ୍ୟ ଏଥିରେ ଅଂଶଧନ ଥିଲା ୪୫ ଭାଗ । ବାକି ୧୦ ଭାଗ ଅଂଶର ଅଧିକାରୀ ଥିଲେ ଭାରତର ଜଣେ ଦକ୍ଷ ବ୍ୟବସ୍ଥାପକ ଓ ଜନନେତା କଟକ ବାସିନ୍ଦା ଭୁବନାନନ୍ଦ ଦାସ ।

ଓଡ଼ିଶାରେ ଗୋଟିଏ ଲୁଗାକଳ ବସାଇବା ପାଇଁ ବିଜୁବାବୁ ୧୯୪୫ ମସିହାରେ ଭାରତ ସରକାରଙ୍କଠାରୁ ଏକ ଲାଇସେନ୍ସ ପାଇଥିଲେ । ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି କିଭଳି ହେବ ସେଥିପାଇଁ କାର୍ଯ୍ୟ କରୁଥାନ୍ତି । ଜଷ୍ଟିସ୍ ହରିହର ମହାପାତ୍ର ତାଙ୍କର ଏକ ଆଲେଖ୍ୟ 'ବାଟରୁ ଅବାଟ'ରେ ବର୍ଣ୍ଣନା କରିଛନ୍ତି, "ଓଡ଼ିଶାରେ ପ୍ରଥମ ଶିଳ୍ପଦ୍ୟୋଗୀ ଭାବେ ଓଡ଼ିଶା ଟେକ୍ସଟାଇଲ ମିଲ୍ସ

Digitized by srujanika@gmail.com

ବସାଇବା ପାଇଁ ସେତେବେଳେ ବିଜୁବାବୁଙ୍କର ପ୍ରାଣପାତ ଉଦ୍ୟମ ଯେ ଦେଖିଛି, ସେ ଅନୁଭବ କରିଥିବ ଆତ୍ମବିଶ୍ୱାସୀ କାହାକୁ କହନ୍ତି। ରାଜନୀତିର ସମ୍ମୋହନକୁ ଏଡ଼ାଇ ପାରିଥିଲେ ଓଜନଦାର ଶିଳ୍ପପତିଭାବେ ସେ ଟକ୍କର ଦେଇପାରିଥାନ୍ତେ ସେତେବେଳର ଭାରତର ଅନ୍ୟ ଯେ କୌଣସି ଶିଳ୍ପପତିଙ୍କ ସହ, ସେ ଟାଟା ହୁଅନ୍ତୁ ବା ବିର୍ଲା, ଏବେକାର ଅମ୍ବାନୀ ହୁଅନ୍ତୁ ବା ଆଦାନୀ। ରାଜନୀତିକୁ ସେ ଆସିଥିଲେ ନିଜପାଇଁ ନୁହେଁ, ଦେଶପାଇଁ। ପାରାଦ୍ୱୀପ ବନ୍ଦର, ସୁନାବେଡ଼ାର ମିଗ୍ କାରଖାନା ତାଙ୍କ ନେତୃତ୍ୱର ଚିହ୍ନ।"

ସମସ୍ତ ଅଭାବ ଅସୁବିଧା ସତ୍ତ୍ୱେ ସରକାରୀ କଟକଣା ଓ ନିୟନ୍ତ୍ରଣକୁ ଖାତିର ନକରି ସେ ଯେଭଳି ଚୌଦ୍ୱାରରେ ଓଡ଼ିଶା ଟେକ୍ସଟାଇଲ ମିଲ୍ସ (ଓଟିଏମ୍) ପ୍ରତିଷ୍ଠା କଲେ, ତାହା ଭାରତର ଶିଳ୍ପପତିମାନଙ୍କୁ ଚକିତ କରିଥିଲା। ଚୌଦ୍ୱାର ଲୁଗାକଳର ପ୍ରସିଦ୍ଧି ବମ୍ବେ, ଅହମ୍ମଦାବାଦ, ସୁରଟ ପ୍ରଭୃତି ସହରରେ ଚହଳ ପକାଇ ଦେଇଥିଲା ଏବଂ ଏହି ଲୁଗାକଳର ପ୍ରସିଦ୍ଧି ଭାରତର ସର୍ବତ୍ର ଚର୍ଚ୍ଚିତ ହୋଇଥିଲା। ଓଟିଏମ୍‌ରେ ପ୍ରସ୍ତୁତ ହେଉଥିବା ସାଧାରଣ ଲୋକଙ୍କ ପାଇଁ ଶସ୍ତା ଦରର ଧୋତି, ଶାଢ଼ୀ, ବିଛଣା ଚାଦର, କପଡ଼ା ସବୁଆଡେ ଆଦୃତ ହେଉଥିଲା। ଏହି କାରଖାନାରେ ଚାକିରି ପାଇ ହଜାର ହଜାର ଲୋକ ପରିବାର ଭରଣପୋଷଣ କରିବା ସହିତ ନିଜର ପିଲାମାନଙ୍କୁ ଶିକ୍ଷାଦାନ କରାଇବାକୁ ସକ୍ଷମ ହେଲେ। ଏଠାରେ ଗଢ଼ି ଉଠିଲା 'ଓଟିଏମ୍ ହାଇସ୍କୁଲ'। ପରେ ପରେ ଚୌଦ୍ୱାର କଲେଜ, ଚୌଦ୍ୱାର ମହିଳା କଲେଜ ପ୍ରଭୃତି ପ୍ରତିଷ୍ଠା ହୋଇଥିଲା। ମଧୁବାବୁଙ୍କ ଭାଷାରେ ପ୍ରଭାବିତ ହୋଇ ବିଜୁବାବୁ ମଧ କହୁଥିଲେ–

"ନିଜର ଜୀବନ ଜାତିକୁ ଅର୍ପଣ କଲେ ମିଳେ ଜାତି ପ୍ରାଣ,
ଜାତୀୟ ଜୀବନ ନ ମିଳିବ କଲେ ହାଟେ ବାଟେ ଅନ୍ୱେଷଣ।"

ପ୍ରଫେସର ମନ୍ମଥ ନାଥ ଦାସ ତାଙ୍କର ଆଲେଖ୍ୟ 'ମୋ ଅନୁଭୂତିରୁ କିଛି'ରେ ଉଲ୍ଲେଖ କରିଛନ୍ତି ଯେ, ଦିନେ ଡକ୍ଟର ହରେକୃଷ୍ଣ ମହତାବ ତାଙ୍କୁ କହିଲେ, "ମନ୍ମଥ, ବାହାରେ ଜଣେ ଭଦ୍ରଲୋକ ବସିଛନ୍ତି, ସେ କହୁଛନ୍ତି ବମ୍ବେରେ ଏବଂ ଅହମ୍ମଦାବାଦରେ ଯେମିତି ଲୁଗାକଳ ଅଛି ଓଡ଼ିଶାରେ ସେମିତି ଗୋଟିଏ ଲୁଗାକଳ କରିବାପାଇଁ। କିନ୍ତୁ ଆମେ କେମିତି ଏକଥା ମାନିନେବା କହିଲ ? ଆମେ ହେଲୁ ଗାନ୍ଧିବାଦୀ, ସାରାଜୀବନ ଖଦଡ଼ ପିନ୍ଧିପିନ୍ଧି କଟେଇ ଦେଲୁ। ବର୍ତ୍ତମାନ ଲୁଗାକଳ ପ୍ରତିଷ୍ଠା ପାଇଁ ରାଜି ହେବୁ କେମିତି ? ଅରଟ ବଦଳରେ ଯନ୍ତ୍ରଚାଳିତ ଲୁଗାକଳ ପ୍ରତିଷ୍ଠା ପାଇଁ ଅନୁମତି ଦେବୁ

Digitized by srujanika@gmail.com

କେମିତି ? ଏଣୁ ତୁମେ ଯାଅ ତାଙ୍କ ସାଙ୍ଗରେ ଯୁକ୍ତିତର୍କ କର। ସେ ଯୋଉ ଯୁକ୍ତି ବାଢ଼ିବେ ତାକୁ ତୁମେ ଯୁକ୍ତି ଦେଇ ଖଣ୍ଡନ କର। କାରଣ ସ୍ୱାଧୀନତାର ସନ୍ତକ ଭାବେ ହାତବୁଣା ଲୁଗା ଛଡ଼ା ଆମ ପାଖରେ ଆଉ କ'ଣ ଅଛି କହିଲ ?"

ଖୁବ୍ ଦମ୍ଭରେ ବିଜୁବାବୁ ବାହାରେ ପଡ଼ିଥିବା ଚେୟାରରେ ବସିଥାନ୍ତି। ମନ୍ମଥ ନାଥ ଦାସ ତାଙ୍କ ପାଖକୁ ଯାଇ ପଚାରିଲେ, "ମହତାବବାବୁ ମୋତେ ଆପଣଙ୍କ ପାଖକୁ ପଠାଇଛନ୍ତି। ଆପଣ କାହିଁକି ଯନ୍ତ୍ରଚାଳିତ ଲୁଗାକଳ ପ୍ରତିଷ୍ଠା କରିବେ ?" ବିଜୁ ପଟ୍ଟନାୟକଙ୍କ ଉତ୍ତର ହେଲା, "ତମେସବୁ ଆଜିର ଛାତ୍ରମାନେ ଆଗାମୀ କାଲିର କଥା ଚିନ୍ତା କରିପାରୁନ ? ଦେଶ ସ୍ୱାଧୀନ ହେବାକୁ ଯାଉଛି। ଆମ ରାଜ୍ୟ ଏକ ଦରିଦ୍ର ରାଜ୍ୟ। ଅହମ୍ମଦାବାଦରୁ ଲୁଗା ଆସିଲେ ଆମେ ଓଡ଼ିଶା ଲୋକେ ପିନ୍ଧିବୁ। ତମେ ଚିନ୍ତାକର, ଓଡ଼ିଶାର ଅଗଣିତ ଲୋକ କଂଗ୍ରେସ କର୍ମୀମାନଙ୍କ ଭଳି ହାତରେ ଲୁଗାବୁଣି ପିନ୍ଧିପାରିବେ ନାହିଁ। ଏଣୁ ଆମକୁ ବାଧ ହୋଇ ମିଲ୍ ଲୁଗା ଉପରେ ନିର୍ଭର କରିବାକୁ ପଡ଼ିବ। ଯଦି ଏହା ହିଁ ସତ୍ୟ, ତା'ହେଲେ ଆମେ କାହିଁକି ଆମ ରାଜ୍ୟରେ ଲୁଗାକଳ ପ୍ରତିଷ୍ଠା କରି ଆମ ମିଲ୍ ଲୁଗା ନ ପିନ୍ଧିବା ?" ବିଜୁବାବୁଙ୍କ ଯୁକ୍ତିକୁ ମନ୍ମଥ ନାଥ ଦାସଙ୍କ ପାଖରେ ଖଣ୍ଡନ କରିବାର କୌଣସି ଅସ୍ତ୍ର ହିଁ ନ ଥିଲା। ଶେଷରେ ଡକ୍ଟର ମହତାବ, ବିଜୁବାବୁଙ୍କ କଥାରେ ରାଜି ହୋଇ ଚୌଦ୍ୱାରରେ ଲୁଗାକଳ ପ୍ରତିଷ୍ଠା ପାଇଁ ଅନୁମତି ପ୍ରଦାନ କରିଥିଲେ ଓ ସବୁପ୍ରକାରର ସହାୟତା ଯୋଗାଇ ଦେଇଥିଲେ।

କଟକରୁ ମହାନଦୀ ପାର ହୋଇ ଚୌଦ୍ୱାରରେ ଓଡ଼ିଶା ଟେକ୍ସଟାଇଲ୍ ମିଲ୍ସ କାମ ତଦାରଖ କରୁଥିଲେ ବିଜୁବାବୁ। ପୁଣି କାଠଯୋଡ଼ି ନଦୀ ପାର ହୋଇ ଭୁବନେଶ୍ୱର ଆସି ଓଡ଼ିଆ ଯୁବକମାନଙ୍କୁ ଉଡ଼ାଜାହାଜ ଚଳାଇବା ତାଲିମ ଦେଉଥିଲେ। ସେଥିପାଇଁ ବିଜୁବାବୁ ବିନା ସରକାରୀ ସାହାଯ୍ୟରେ ନିଜ ଚେଷ୍ଟାରେ ୧୯୪୯ ମସିହାରେ 'ଭୁବନେଶ୍ୱର ଫ୍ଲାଇଙ୍ଗ କ୍ଲବ ଲିମିଟେଡ୍' ପ୍ରତିଷ୍ଠା କରିଥିଲେ। ସେତେବେଳେ ଭୁବନେଶ୍ୱର ଥିଲା ନିଘଞ୍ଚ ଜଙ୍ଗଲରେ ଭରପୁର। ରାସ୍ତାଘାଟ ଭଲ ନ ଥିଲା। କିନ୍ତୁ ବିଜୁବାବୁଙ୍କ ଦୃଢ଼ ଇଚ୍ଛାଶକ୍ତି, କଠିନ ପରିଶ୍ରମ ଯୋଗୁଁ ଭୁବନେଶ୍ୱରରେ ଫ୍ଲାଇଙ୍ଗ କ୍ଲବ କେବଳ ପ୍ରତିଷ୍ଠା ହୋଇ ନ ଥିଲା ବରଂ ଏଥିରୁ ବହୁ ସଫଳ ପାଇଲଟ ବାହାରି ଓଡ଼ିଶା ପାଇଁ ସୁନାମ ଆଣି ପାରିଥିଲେ। ଏହି ଫ୍ଲାଇଙ୍ଗ କ୍ଲବ ପାଇଁ ବିଜୁବାବୁ ପଶ୍ଚିମବଙ୍ଗର ପ୍ରତିରକ୍ଷା ବିଭାଗର ପାନାଗଡ଼ ଡିପୋରୁ ଦୁଇହଜାର ଟଙ୍କାରେ ଗୋଟିଏ

Digitized by srujanika@gmail.com

ପୁରୁଣା ଡାକୋଟା ବିମାନ କିଣିସାରିଥାଆନ୍ତି । ଏହି ବିମାନଟିକୁ କାର୍ଯ୍ୟକ୍ଷମ କରିବାପାଇଁ ଅନ୍ୟୂନ ୫୦ ହଜାର ଟଙ୍କାର ଯନ୍ତ୍ରପାତି ଆବଶ୍ୟକ ହେଉଥିଲା । ସେତେବେଳେ ବିଜୁବାବୁଙ୍କ ପାଖରେ ଏତେ ଅର୍ଥ ଯୋଗାଡ଼ କରିବା ସମ୍ଭବ ନଥିଲା । କିନ୍ତୁ ଉଦ୍‌ଯୋଗୀ ପୁରୁଷ ବିଜୁ ପଟ୍ଟନାୟକ ପାନାଗଡ଼ ଡିପୋ କର୍ତ୍ତୃପକ୍ଷଙ୍କ ଅନୁମତି ନେଇ ସେଠାରେ ଅଦରକାରୀ ଭାବରେ ପଡ଼ି ରହିଥିବା ପାର୍ଟସ୍‌ଗୁଡ଼ିକୁ ସଂଗ୍ରହ କରି ଡାକୋଟା ବିମାନଟିକୁ ସଜାଡ଼ିଦେବାରେ ସକ୍ଷମ ହେଲେ । ଏଥିପାଇଁ ତାଙ୍କୁ କୋଡ଼ିଏ ଦିନ କୋଡ଼ିଏ ରାତି ଅବିରତ ପରିଶ୍ରମ କରିବାକୁ ପଡ଼ିଥିଲା । ଏହି କାର୍ଯ୍ୟରେ ତାଙ୍କୁ ଇଣ୍ଡିଆନ ଏୟାରଲାଇନ୍ସର ରେଡ଼ିଓ ଅଫିସର ଏନ୍.କେ. ଟାନା ଉଲ୍ଲେଖନୀୟ ସାହାଯ୍ୟ ପ୍ରଦାନ କରିଥିଲେ । ଟାନାଙ୍କ ସହଯୋଗରେ ବିଜୁବାବୁ ରେଭେନ୍ସା କଲେଜ ପ୍ରାଙ୍ଗଣରେ 'ଓୟାର୍ ଲେସ୍ ଟ୍ରେନିଂ ସ୍କୁଲ' ପ୍ରତିଷ୍ଠା କରିଥିଲେ । ଏହି ସ୍କୁଲରେ ଟ୍ରେନିଂ ନେଇ ଭାରତର ବିଭିନ୍ନ ସିପିଙ୍ଗ କମ୍ପାନୀମାନଙ୍କରେ ଶହଶହ ଓଡ଼ିଆ ଯୁବକ ଚାକିରି ପାଇବାକୁ ସକ୍ଷମ ହୋଇଛନ୍ତି । କିନ୍ତୁ ଦୁର୍ଭାଗ୍ୟର କଥା ବର୍ତ୍ତମାନ ସମସ୍ତ ପ୍ରକାର ସୁବିଧା ସୁଯୋଗ ଥିଲେ ମଧ୍ୟ 'ଓଡ଼ିଶା ଫ୍ଲାଇଙ୍ଗ କ୍ଲବ' ଆଜି କାର୍ଯ୍ୟକ୍ଷମ ହୋଇପାରୁନାହିଁ । ବିଜୁବାବୁଙ୍କର ସେହି ଐତିହାସିକ ଏକ ଇଞ୍ଜିନ ବିଶିଷ୍ଟ ଡାକୋଟା ବିମାନଟି ଏବେ ବିଜୁ ପଟ୍ଟନାୟକ ଅନ୍ତର୍ଜାତୀୟ ଏୟାର ପୋର୍ଟ ପ୍ରାଙ୍ଗଣରେ ରାଜ୍ୟ ସରକାର ସାଇତି ରଖିଛନ୍ତି ।

'ଓଟିଏମ୍' ପରେ ପରେ 'କଳିଙ୍ଗ' ଥିଲା ବିଜୁ ପଟ୍ଟନାୟକଙ୍କର ମାନସପୁତ୍ର । ଚୌଦ୍ୱାରରେ ପ୍ରତିଷ୍ଠା କଲେ 'କଳିଙ୍ଗ ଟିଉବ୍‌ସ' । କଟକରେ ପ୍ରତିଷ୍ଠା ହେଲା 'କଳିଙ୍ଗ ରେଫ୍ରିଜେରେସନ୍' ଆଉ 'କଳିଙ୍ଗ ଇଣ୍ଡଷ୍ଟ୍ରି' । ପରେପରେ କେନ୍ଦୁଝରର ବଡ଼ବିଲଠାରେ ପ୍ରତିଷ୍ଠା କଲେ 'କଳିଙ୍ଗ ଆଇରନ୍ ୱାର୍କସ୍' । ଭାରତବର୍ଷର ପ୍ରଥମ ଲୁହା ପାଇପ୍ ତିଆରି ହୋଇଥିଲା ଏହି କଳିଙ୍ଗ ଆଇରନ୍ କାରଖାନାରେ ।

୧୯୬୧ ମସିହାରେ ବିଜୁବାବୁ ମୁଖ୍ୟମନ୍ତ୍ରୀ ଥିଲାବେଳେ କେନ୍ଦ୍ରସରକାରଙ୍କ ପ୍ରତିରକ୍ଷା ବିଭାଗ ପାଖରେ ଦୃଢ଼ ଓ ଅକାଟ୍ୟ ଯୁକ୍ତି ଉପସ୍ଥାପନା କରି ମିଗ୍ କାରଖାନା କୋରାପୁଟର ସୁନାବେଢ଼ାଠାରେ ପ୍ରତିଷ୍ଠା କରିବାକୁ ସମର୍ଥ ହୋଇଥିଲେ । ବିଜୁବାବୁଙ୍କର ସବୁବେଳେ ଦୃଢ଼ ମତ ଥିଲା ଯେ, କେବଳ କେନ୍ଦ୍ର ମଜଭୁତ ରହି ରାଜ୍ୟମାନେ ଆର୍ଥିକ ଦୃଷ୍ଟିରୁ ଯଦି ଦୁର୍ବଳ ରହିବେ ତେବେ ଭାରତର ସଂହତି ବାଧାପ୍ରାପ୍ତ ହେବ । ବିକଶିତ ରାଜ୍ୟଗୁଡ଼ିକ ସହିତ ଅନଗ୍ରସର ରାଜ୍ୟଗୁଡ଼ିକୁ ଯଦି ଆର୍ଥିକ ଦୃଷ୍ଟିରୁ ସୁଦୃଢ଼ କରାନଯାଏ,

Digitized by srujanika@gmail.com

ତେବେ ଦେଶରେ ବୈଷମ୍ୟ ଦୂର ହୋଇପାରିବ ନାହିଁ। ପଞ୍ଜାବ, ମହାରାଷ୍ଟ୍ର, ହରିଆନା ଓ ଗୁଜୁରାଟ ପ୍ରଭୃତି ରାଜ୍ୟ ଭଳି ବିହାର, ଓଡ଼ିଶା, ଜାମ୍ମୁ-କାଶ୍ମୀର ଭଳି ରାଜ୍ୟକୁ ସମକକ୍ଷ କରିବାରେ କେନ୍ଦ୍ର ସରକାର ଯତ୍ନବାନ ହେବା ଉଚିତ୍। ସୁନାବେଢ଼ାଠାରେ ଯେତେବେଳେ ମିଗ୍ କାରଖାନା ହଜାର ହଜାର କୋଟି ଟଙ୍କାର ପୁଞ୍ଜି ଲଗାଣରେ ପ୍ରତିଷ୍ଠା କରାଯିବା ପାଇଁ ସମସ୍ତ ନିଷ୍ପତ୍ତି ନିଆସରିଥିଲା ଠିକ୍ ସେତିକିବେଳେ ମହାରାଷ୍ଟ୍ରର ମୁଖ୍ୟମନ୍ତ୍ରୀ ୱାଇ.ବି. ଚୌହ୍ୱାନ ଏହି ବିରାଟ ପ୍ରକଳ୍ପକୁ ମହାରାଷ୍ଟ୍ରରେ ସ୍ଥାପନ କରିବା ପାଇଁ ପଣ୍ଡିତ ନେହେରୁଙ୍କୁ ପ୍ରଭାବିତ କରିଥିଲେ। କିନ୍ତୁ ବିଜୁବାବୁ ପଣ୍ଡିତ ନେହେରୁଙ୍କୁ ଦୃଢ଼ତାର ସହିତ କହିଲେ ଯେ ଓଡ଼ିଶାର କୋରାପୁଟ ଜିଲ୍ଲାର ସୁନାବେଢ଼ା ହେଉଛି ମିଗ୍ ବିମାନ ପ୍ରତିଷ୍ଠା ପାଇଁ ଉପଯୁକ୍ତ ସ୍ଥାନ ଏବଂ ସେଠାରେ ଯଦି ମିଗ୍ ବିମାନ କାରଖାନା ପ୍ରତିଷ୍ଠା କରାନଯାଏ, ତେବେ ଓଡ଼ିଶାରେ ତାଙ୍କର ମୁଖ୍ୟମନ୍ତ୍ରୀ ହୋଇ ରହିବାର କୌଣସି ଆବଶ୍ୟକତା ନାହିଁ। 'ତେଲିଆ ମୁଣ୍ଡରେ ତେଲ' ନ୍ୟାୟରେ ମହାରାଷ୍ଟ୍ର ଭଳି ବିକଶିତ ରାଜ୍ୟରେ ଅଧିକରୁ ଅଧିକ ପୁଞ୍ଜି ଲଗାଣ କରି ଅନୁନ୍ନତ ରାଜ୍ୟମାନଙ୍କୁ ଅବହେଳା କରିବା ନ୍ୟାୟୋଚିତ ନୁହେଁ। ବିଜୁବାବୁଙ୍କର ଏହି ଯୁକ୍ତି କାମ ଦେଲା। ସମ୍ପୂର୍ଣ୍ଣ ମିଗ୍ କାରଖାନାକୁ କୌଣସି ଗୋଟିଏ ରାଜ୍ୟରେ ପ୍ରତିଷ୍ଠା କରିବା ପରିବର୍ତ୍ତେ ଓଡ଼ିଶାର କୋରାପୁଟ ଜିଲ୍ଲାର ସୁନାବେଢ଼ା, ମହାରାଷ୍ଟ୍ରର ନାସିକ୍ ଓ ଉତ୍ତରପ୍ରଦେଶର କାନପୁରଠାରେ ସ୍ଥାପନ କରିବାକୁ କେନ୍ଦ୍ର ସରକାର ନିଷ୍ପତ୍ତି ନେଲେ।

ଏଥିସହିତ ତାଳଚେର ଥର୍ମାଲ ପ୍ଲାଣ୍ଟ, ଚାରିବାଟିଆ ମିଲିଟାରୀ ବିମାନ ଅବତରଣ କେନ୍ଦ୍ର, ବରଗଡ଼ ସିମେଣ୍ଟ କାରଖାନା, ବଡ଼ବିଲ ଲୁହାକାରଖାନା, ଯାଜପୁର ଫେରୋକ୍ରୋମ କାରଖାନା ପ୍ରତିଷ୍ଠା ବିଜୁବାବୁଙ୍କ ପ୍ରଚେଷ୍ଟାରେ ସମ୍ଭବ ହୋଇପାରିଥିଲା। ବିଜୁବାବୁଙ୍କ ଉଦ୍ୟମରେ ରାଉରକେଲାଠାର 'ଅଟୋ କଳିଙ୍ଗ' କାରଖାନା ପ୍ରତିଷ୍ଠା ହୋଇଛି। ଏହା ବ୍ୟତୀତ ସେ କୋରାପୁଟର ଥେରୁବାଲିଠାରେ 'ଫେରୋ ସିଲିକନ୍ କମ୍ପ୍ଲେକ୍ସ' ଏବଂ ବାଲିମେଳାଠାରେ 'ଜଳବିଦ୍ୟୁତ୍ ପ୍ରକଳ୍ପ' ସ୍ଥାପନା କରିଥିଲେ। ତାଙ୍କ ଉଦ୍ୟମରେ ଓଡ଼ିଶା ରାଜ୍ୟ ବିଦ୍ୟୁତ ବୋର୍ଡ଼ (୧୯୬୧), ଓଡ଼ିଶା ଶିଳ୍ପ ବିକାଶ ନିଗମ (୧୯୬୨), ଓଡ଼ିଶା କ୍ଷୁଦ୍ରଶିଳ୍ପ ନିଗମ (୧୯୬୧-୬୨) ଆଦି ବହୁ ନିଗମ ଓ ବୋର୍ଡ଼ ସ୍ଥାପନ ହୋଇଥିଲା।

ବିଜୁବାବୁଙ୍କ ସମୟରେ ଆଜିପରି ଏତେ କୋଠାବାଡ଼ି ନଥିଲା। ଗାଁ ଗହଳିରେ କାଁଭାଁ କୋଠାଟିଏ ଦେଖିବାକୁ ମିଳୁଥିଲା। ଅଧିକାଂଶ ଲୋକ ଚାଳ ଘରେ ରହୁଥିଲେ।

Digitized by srujanika@gmail.com

ବିଶେଷ କରି ଖରାଦିନେ ନଡ଼ାଛପର ଘରେ ନିଆଁ ଲାଗିବାଟା ନିତିଦିନିଆ ଘଟଣା ଥିଲା । କଥାରେ କହନ୍ତି - "ଘର ପୋଡ଼ିଠାରୁ ବିପତ୍ତି ନାହିଁ, ଘୋଡ଼ା ଚଢ଼ାଠାରୁ ସମ୍ପତ୍ତି ନାହିଁ ।" ଲୋକମାନଙ୍କର ଘରପୋଡ଼ିରେ ସର୍ବସ୍ୱାନ୍ତ ହେବାଟା ବିଜୁବାବୁ ସହିପାରୁ ନଥିଲେ । ଲୋକମାନଙ୍କୁ ଏହି ଦାରୁଣ କଷ୍ଟରୁ ରକ୍ଷା କରିବା ପାଇଁ କ'ଣ କରାଯାଇପାରିବ ବୋଲି ସେ ଗଭୀର ଭାବରେ ଚିନ୍ତା କରୁଥିଲେ । ଶସ୍ତା ଓ ସୁବିଧାରେ କିପରି ଲୋକମାନେ ଏହି ବିପତ୍ତିରୁ ତ୍ରାହି ପାଇବେ ସେଥିପାଇଁ ପଞ୍ଚାୟତ ଶିଳ୍ପର ଯୋଜନା କଲେ । "ଟାଇଲ ଛପର ଘର - ନିଆଁକୁ ନଥିବ ଡ଼ର" । ସେ ନିଜେ ଏକ ଟାଇଲ୍ ଫ୍ୟାକ୍ଟରୀ ପ୍ରତିଷ୍ଠା କରିବାର ସିଦ୍ଧାନ୍ତ ନେଲେ । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଇଣ୍ଡଷ୍ଟ୍ରିଆଲ ଡେଭ୍‌ଲପମେଣ୍ଟ କର୍ପୋରେସନ୍ ଅଧିନରେ ଚୌଦ୍ୱାରରେ ସେ ପ୍ରତିଷ୍ଠା କଲେ ଏକ ଟାଇଲ ଫ୍ୟାକ୍ଟ୍ରି । ତା'ପରେ ଅନ୍ୟକିଛି ପଞ୍ଚାୟତମାନଙ୍କରେ ମଧ୍ୟ ଏଇଭଳି ଟାଇଲ ଫ୍ୟାକ୍ଟ୍ରି ପ୍ରତିଷ୍ଠା କଲେ । ତାଙ୍କ ଯୋଗୁଁ ଗାଁଗହଳିର ବହୁ ଲୋକ ନିଜ ଘରକୁ ଟାଇଲ୍‌ରେ ଛପର କରି ଘରପୋଡ଼ି ବିପତ୍ତିରୁ ରକ୍ଷା ପାଇଲେ ।

ଗାଁର ଲୋକମାନେ ପିଇବା ପାଣି ପାଇଁ ବଡ଼ ହନ୍ତସନ୍ତ ହୁଅନ୍ତି ଏବଂ ମାଇଲ୍ ମାଇଲ୍ ବାଟ ଚାଲିଚାଲି ପାଣି ଆଣିବାକୁ ଯାଆନ୍ତି । ବିଜୁବାବୁଙ୍କ ଆଖିରେ ଗାଁ ଲୋକଙ୍କ ଏ ଦୁର୍ଦ୍ଦଶା ଗଲାନି । ସେ ଆରମ୍ଭ କଲେ ପାଣି ପାଇପ ବସାଇବାର ଯୋଜନା । ତାଙ୍କ ଉଦ୍ୟମରେ ଅନେକ ଗାଁରେ ପାଣି ପାଇପ୍ ବସିଲା ଓ ଲୋକେ ଜଳକଷ୍ଟରୁ ରକ୍ଷା ପାଇଲେ । ସେ କହୁଥିଲେ, "ଓଡ଼ିଶାରେ ଶିଳ୍ପ ପ୍ରତିଷ୍ଠା ପାଇଁ କଞ୍ଚାମାଲ ଭରି ରହିଛି । ପୁଞ୍ଜି ଖଟାଇବା ପାଇଁ ବ୍ୟକ୍ତି ମିଳୁନାହାଁନ୍ତି ।"

ଉଦ୍‌ଯୋଗୀ ଯୁବକମାନଙ୍କୁ ଶିଳ୍ପ ପ୍ରତିଷ୍ଠା ପାଇଁ ସେ ଉତ୍ସାହିତ କରୁଥିଲେ ଏବଂ ସେଥିପାଇଁ ଆବଶ୍ୟକ ସବୁ ପ୍ରକାର ସାହାଯ୍ୟ ସହଯୋଗ ମଧ୍ୟ ଯୋଗାଇ ଦେଉଥିଲେ । ତାଙ୍କର ପ୍ରେରଣା ଓ ପ୍ରୋତ୍ସାହନ ଫଳରେ ଓଡ଼ିଶାରେ ବେଶ୍ କେତେକ ଘରୋଇ ଶିଳ୍ପସଂସ୍ଥା ପ୍ରତିଷ୍ଠା ହୋଇପାରିଥିଲା । ସେଗୁଡ଼ିକ ମଧ୍ୟରେ ଓଡ଼ିଶାର ବିଶିଷ୍ଟ ଶିଳ୍ପପତି ଡକ୍ଟର ବଂଶୀଧର ପଣ୍ଡାଙ୍କ ଦ୍ୱାରା ପ୍ରତିଷ୍ଠିତ 'ଇମ୍ଫା' ଗ୍ରୁପ୍ ଅନ୍ୟତମ । ବିଜୁବାବୁ ସବୁବେଳେ କହୁଥିଲେ, "ମୋତେ ସହଯୋଗ କର ଏବଂ ଏହି ସହଯୋଗକୁ ଅବ୍ୟାହତ ରଖ, ମୁଁ ଓଡ଼ିଶାକୁ ସୁନାର ଓଡ଼ିଶା କରିଦେବି । ଓଡ଼ିଶାକୁ ବିଶ୍ୱ ଦରବାରରେ ଉପସ୍ଥାପିତ କରିବି; ତା'ର କଳା, ସାହିତ୍ୟ, ସ୍ଥାପତ୍ୟ, ଭାସ୍କର୍ଯ୍ୟ ଏବଂ ସର୍ବୋପରି ଓଡ଼ିଆର ବୀରତ୍ୱ, ଶୌର୍ଯ୍ୟ ଓ ସ୍ୱାଭିମାନକୁ ପରଖିବାକୁ ଆହ୍ୱାନ ଦେବି ଏବଂ ଗୋଟିଏ କୋଣାର୍କ

Digitized by srujanika@gmail.com

କ'ଣ ଆମେ ଚାହିଁଲେ ଶତ ଶତ କୋଣାର୍କ କରିପାରିବା। ଓଡ଼ିଆଙ୍କ ରକ୍ତରେ ଏବେ ବି ସୃଜନୀ ଶକ୍ତିର ପ୍ରବଳ ଉଚ୍ଛ୍ୱାସ ରହିଛି। କେବଳ ମୋତେ ସହଯୋଗ କର।" "ମାଭୈଃ, ଉତ୍ତିଷ୍ଠିତ ଜାଗ୍ରତ ପ୍ରାପ୍ୟ ବରାନ୍ ନିବୋଧତ।" ବିବେକାନନ୍ଦଙ୍କ ଏହି ବାଣୀ ସବୁବେଳେ ତାଙ୍କ ଭିତରେ ଝଙ୍କୃତ ହେଉଥିଲା।

ଓଡ଼ିଶାର ଜଣେ ଜଣାଶୁଣା ବର୍ଷିୟାନ୍ ସାମ୍ବାଦିକ ଆର୍.ପି. ଶାସ୍ତ୍ରୀ, ଓଡ଼ିଶାର ରାଜନୈତିକ ଇତିହାସରେ ବିଜୁ ପଟ୍ଟନାୟକଙ୍କର ସ୍ଥାନ ସମ୍ପର୍କରେ ଉଲ୍ଲେଖ କରି ମନେପକାଇଛନ୍ତି ଯେ, ବିଜୁ ପଟ୍ଟନାୟକଙ୍କର ମୁଖ୍ୟମନ୍ତ୍ରୀତ୍ୱ ସମୟରେ ୧୯୬୧ ମସିହାରେ ଜୟପ୍ରକାଶ ନାରାୟଣ କଟକର ତୁଳସୀପୁରରେ ଅବସ୍ଥିତ ତାଙ୍କ ବାସଭବନରେ ଆତିଥ୍ୟ ଗ୍ରହଣ କରିଥିଲେ। ସେତେବେଳେ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ପଞ୍ଚାୟତ ସ୍ତରରେ ଶିଳ୍ପ ପ୍ରତିଷ୍ଠା ଓ ତାହା ପଞ୍ଚାୟତ କର୍ମକର୍ତ୍ତାଙ୍କ ଦ୍ୱାରା ପରିଚାଳିତ ହେବାର ପରିକଳ୍ପନା ସମ୍ବନ୍ଧରେ ଜୟପ୍ରକାଶ ନାରାୟଣ ଅନୁଧ୍ୟାନ କରୁଥିଲେ। ଜୟପ୍ରକାଶ ନାରାୟଣଙ୍କୁ ସାକ୍ଷାତ କରି ଶ୍ରୀ ଶାସ୍ତ୍ରୀ ପଞ୍ଚାୟତ ଶିଳ୍ପ ବିଷୟରେ ପଚାରିବାରୁ ଜୟପ୍ରକାଶ ବିଜୁଙ୍କର ଏହି ନୂତନ ପରିକଳ୍ପନାର ଭୂୟସୀ ପ୍ରଶଂସା କରିଥିଲେ ଏବଂ ଏହା ମହାତ୍ମାଗାନ୍ଧୀଙ୍କର ପରିକଳ୍ପନା ଥିଲା ବୋଲି ତାଙ୍କୁ କହିଥିଲେ। ଏହା ସମଗ୍ର ଦେଶ ପାଇଁ ଏକ ଉଦାହରଣ।

ଓଡ଼ିଶାର ଶିଳ୍ପ ବିକାଶ ପାଇଁ ବିଜୁ ପଟ୍ଟନାୟକ ପ୍ରତ୍ୟେକ ପଞ୍ଚାୟତ ସମିତିରେ ଗୋଟିଏ ଗୋଟିଏ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରିଥିଲେ। ଶିଳ୍ପାୟନ ତାଙ୍କ ସ୍ୱପ୍ନ ଥିଲା। ସେ ଶିଳ୍ପବିକାଶ ପାଇଁ ଅନବରତ ଉଦ୍ୟମ ଜାରି ରଖିଥିଲେ। ଓଡ଼ିଶାବସୀଙ୍କୁ ଶିଳ୍ପ ବିପ୍ଳବ ମାଧ୍ୟମରେ 'ଆଧୁନିକ ସ୍ୱପ୍ନର ଓଡ଼ିଶା' ସଂପର୍କରେ ମଧ୍ୟ ସେ ସଚେତନ କରାଇଥିଲେ।

ବିଜୁବାବୁ ନିଜେ ଶିଳ୍ପ ପ୍ରତିଷ୍ଠା କରିବା ସହିତ ସରକାରୀ ଉଦ୍ୟମରେ ଶିଳ୍ପମାନ ମଧ୍ୟ ପ୍ରତିଷ୍ଠା କରାଉଥିଲେ। ଉଦୀୟମାନ ଯୁବକମାନଙ୍କୁ ଶିଳ୍ପାୟନ ପାଇଁ ଆକୃଷ୍ଟ କରାଇ ଓଡ଼ିଶାର ଅର୍ଥନୀତି ତଥା ଓଡ଼ିଶାବାସୀଙ୍କୁ ସ୍ୱଚ୍ଛଳ କରିବାକୁ ଚାହୁଁଥିଲେ। ତେବେ ଏଥିରେ ତାଙ୍କୁ ଅନେକ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡୁଥିଲା। ନିଜର ଦୃଢ଼ ଇଚ୍ଛାଶକ୍ତି ଓ ଅପ୍ରତିହତ ଉଦ୍ୟମ ଯୋଗୁଁ ସେ ଅନେକାଂଶରେ ସଫଳ ହୋଇପାରିଥିଲେ। ତାଙ୍କ ଧମନୀରେ ଓଡ଼ିଶାର ଶିଳ୍ପାୟନ ପାଇଁ ଅହରହ ଉଷ୍ମ ରକ୍ତ ପ୍ରବାହିତ ହୋଇ ତାଙ୍କୁ ଚିନ୍ତାମଗ୍ନ କରୁଥିଲା।

Digitized by srujanika@gmail.com

ବିଜୁବାବୁ ଅବିଚଳିତ ଭାବେ ନିଜ କାମ କରୁଥିଲେ। ଯାହା ରାଜ୍ୟ ପାଇଁ ଭଲ ବୋଲି ସେ ଚିନ୍ତା କରୁଥିଲେ, ଉତ୍ସାହର ସହ ନିଜ ଉଦ୍ୟମରେ ଗୋଟିଏ ଯୋଦ୍ଧା ପରି କାମ କରୁଥିଲେ ଓ ସେଥିରେ ସଫଳ ମଧ୍ୟ ହେଉଥିଲେ। ସେ କହୁଥିଲେ - "ମୁଁ ଯାହା କରିଛି, ମୋ ଲୋକଙ୍କ ପାଇଁ କରିଛି, ଯାହା କରୁଛି, ଲୋକଙ୍କ ପାଇଁ କରୁଛି, ଆଉ ଯାହା କରିବି, ତାହା ମଧ୍ୟ ଲୋକଙ୍କ ପାଇଁ କରିବି।"

ବିଜୁବାବୁଙ୍କ ଏକନିଷ୍ଠତା, ଲୋକଙ୍କ ହିତ ପାଇଁ ସମର୍ପିତ କର୍ମତତ୍‌ପରତା, ନିଷ୍କାମ କର୍ମରେ ବିଶ୍ୱାସ ପରି ଦୁର୍ଲଭ ଗୁଣ ଖୁବ୍ କମ୍ ଲୋକଙ୍କ ପାଖରେ ଦେଖିବାକୁ ମିଳେ। ତାଙ୍କୁ ଯଥାର୍ଥରେ 'କର୍ମଯୋଗୀ' ବୋଲି କୁହାଯାଏ। ତାଙ୍କର ସୁକୃତି ଯୋଗୁଁ ତାଙ୍କ ନାମରେ ନାମିତ 'ବିଜୁ ଜନତାଦଳ' ଆଜି ବି ଲୋକଙ୍କର ଆଦର ପାଇ ୧୭ ବର୍ଷରୁ ଊର୍ଦ୍ଧ୍ୱ କାଳ ଓଡ଼ିଶାକୁ ନିରଙ୍କୁଶ ଭାବେ ଶାସନ କରୁଛି।

- ୦ -

Digitized by srujanika@gmail.com

# ଓଡ଼ିଶାର ଶିକ୍ଷା କ୍ଷେତ୍ରକୁ ଯୁଗାନ୍ତକାରୀ ଅବଦାନ

ଶିକ୍ଷା ହିଁ ଏକ ରାଜ୍ୟର ମୂଳଦୁଆକୁ ସଶକ୍ତ କରେ। ରାଜ୍ୟର ସମୃଦ୍ଧି ପାଇଁ ଶିକ୍ଷା ଏକାନ୍ତ ଆବଶ୍ୟକ। ଶିକ୍ଷା ବିନା ରାଷ୍ଟ୍ର ଗଠନ ଅସମ୍ଭବ ବୋଲି ବିଜୁବାବୁ ଉପଲବ୍ଧି କରିଥିଲେ। କଳା, ଭାସ୍କର୍ଯ୍ୟ, ପ୍ରାକୃତିକ ବିଭବରେ ବିଭବମୟୀ ଓଡ଼ିଶାକୁ ଶକ୍ତିଶାଳୀ ହେବାକୁ ହେଲେ ଏହାର ଲୋକମାନଙ୍କୁ ଶିକ୍ଷିତ ହେବାକୁ ପଡ଼ିବ। ଗୋଟିଏ ଗଣତାନ୍ତ୍ରିକ ରାଷ୍ଟ୍ରର ଗଣ ବା ଲୋକମାନଙ୍କ ହାତରେ ଶାସନର ଡ଼ୋରି ଥାଏ। ସେହି ଲୋକମାନେ ଯଦି ଶିକ୍ଷିତ ନ ହେବେ ତା'ହେଲେ କେମିତି ଶାସନ ଚାଲିବ ? ତେଣୁ ସୁଶାସନ ପ୍ରତିଷ୍ଠା ପାଇଁ ଶିକ୍ଷାର ପ୍ରସାର ନିହାତି ଆବଶ୍ୟକ ବୋଲି ବିଜୁବାବୁ ଜୋର ଦେଇ କହୁଥିଲେ।

ସ୍ୱାମୀ ବିବେକାନନ୍ଦ କହୁଥିଲେ, ଆମ ଦେଶରେ ଶିକ୍ଷାର ପ୍ରସାର ଅତ୍ୟନ୍ତ ଜରୁରୀ ଏବଂ ଆମର ଦରକାର ବୈଷୟିକ ଶିକ୍ଷା, ଯହିଁରେ ଶିଳ୍ପର ବିକାଶ ଘଟିବ, ଯଦ୍ୱାରା ଲୋକମାନେ ଚାକିରି ଅନ୍ୱେଷଣ ନ କରି ନିଜର ଭରଣ ପୋଷଣ ନିଜେ କରିପାରିବେ। ଏହି ଆଦର୍ଶରେ ବିଜୁ ପଟ୍ଟନାୟକ ମଧ୍ୟ ଅନୁପ୍ରାଣିତ ହୋଇଥିଲେ।

ନୋବେଲ ପୁରସ୍କାର ବିଜେତା ଅମର୍ତ୍ତ୍ୟ ସେନ୍ ସବୁବେଳେ କହି ଆସିଛନ୍ତି ଯେ, ଦେଶରେ ଲୋକ ଶିକ୍ଷିତ ନ ହେଲେ, ବିକାଶ ପାଇଁ ଯେତେ ଅର୍ଥ ବିନିଯୋଗ କଲେ ମଧ୍ୟ ଦେଶ ଉନ୍ନତି କରିପାରିବ ନାହିଁ। ଏପରିକି ସେ ନୋବେଲ ପୁରସ୍କାରରୁ ପାଇଥିବା ସମସ୍ତ ଅର୍ଥ ଏକ ଏନ୍‌ଜିଓ ଜରିଆରେ ଦରିଦ୍ର ଜନସାଧାରଣଙ୍କ ଶିକ୍ଷାର ବିକାଶ ପାଇଁ ଖର୍ଚ୍ଚ କରିଛନ୍ତି। ପ୍ରାଥମିକ ଶିକ୍ଷା ସହିତ ବିଜୁବାବୁ ନାରୀଶିକ୍ଷା, ବୈଷୟିକ ଶିକ୍ଷା, ଜନଶିକ୍ଷା, ଉଚ୍ଚଶିକ୍ଷା ପ୍ରତି ଗୁରୁତ୍ୱ ପ୍ରଦାନ କରୁଥିଲେ।

୧୯୬୧ ମସିହାରେ ପ୍ରଥମଥର ଲାଗି ମୁଖ୍ୟମନ୍ତ୍ରୀ ହେବା ସମୟରେ ବିଜୁବାବୁ ଉପଲବ୍ଧି କରିଥିଲେ ଯେ, ଓଡ଼ିଶାର ପ୍ରାଥମିକ ସ୍ତରରେ ପିଲାମାନଙ୍କୁ ଯେଉଁ ପାଠ୍ୟ ପୁସ୍ତକ ଯୋଗାଇ ଦିଆଯାଉଛି ତାହା ନିମ୍ନମାନର। ବିନା ଚିତ୍ରର କଳା ଅକ୍ଷରରେ ମୁଦ୍ରିତ ପୁସ୍ତକ ପିଲାମାନଙ୍କ ମନରେ ପାଠ ପ୍ରତି ଆଗ୍ରହ ସୃଷ୍ଟି କରିପାରୁନାହିଁ। ବିଦେଶରେ ଯେମିତି ପିଲାମାନେ ରଙ୍ଗୀନ୍ ଚିତ୍ରଥିବା ବହିରୁ ପାଠ ଆରମ୍ଭ କରନ୍ତି, ସେମିତି ଆମ

Digitized by srujanika@gmail.com

ରାଜ୍ୟରେ ପିଲାମାନେ ପ୍ରାଥମିକ ସ୍ତରରେ କେମିତି ରଙ୍ଗୀନ ଛବି ଥିବା ବହି ପଢ଼ି ପାରିବେ ତାହା ଚିନ୍ତା କରି ବିଭିନ୍ନ ବିଶେଷଜ୍ଞଙ୍କୁ ନେଇ ଏକ କମିଟି ଗଠନ କରିଥିଲେ। ଜାତୀୟ କବି ବୀରକିଶୋର ଦାସ ଏହି 'ଶିଶୁ ପାଠ୍ୟ ପୁସ୍ତକ କମିଟି'ର ଅଧ୍ୟକ୍ଷ ରହିଲେ। ସେତେବେଳେ ରାଜ୍ୟରେ ୨୦ଲକ୍ଷ ଶିଶୁ ପ୍ରାଥମିକ ସ୍ତରରେ ପଢୁଥାନ୍ତି। ସ୍ୱଳ୍ପ ସମୟର ଅବଧି ମଧ୍ୟରେ ଏତେ ସଂଖ୍ୟାରେ ସଚିତ୍ର ରଙ୍ଗୀନ ପୁସ୍ତକ ମୁଦ୍ରଣ ବିଲକୁଲ ସମ୍ଭବ ନ ଥିଲା। ତେବେ ଜିଦ୍‌ଖୋର୍ ବିଜୁବାବୁ ଯୁଦ୍ଧକାଳୀନ ଭିତ୍ତିରେ ବିଦେଶରୁ ଏକ ରଙ୍ଗୀନ୍ ପ୍ରିଣ୍ଟିଂ ମେସିନ୍ ଆଣିଲେ। ତା'ପରେ ଛପା ହେଲା 'ମୋ ଛବିବହି'। 'ମୋ ଛବିବହି'ର ପ୍ରକାଶନ ପରେ ବିଜୁବାବୁ ସ୍କୁଲସ୍ତରର ପାଠ୍ୟପୁସ୍ତକକୁ ଜାତୀୟକରଣ କଲେ। ତାଙ୍କର ଏହି ପଦକ୍ଷେପକୁ ସେହି ସମୟରେ ଅନେକ ପଦସ୍ଥ ଅଫିସର୍ ଏବଂ ଏପରିକି ଶିକ୍ଷାମନ୍ତ୍ରୀ ମଧ୍ୟ ସମର୍ଥନ କରି ନ ଥିଲେ। ଓଡ଼ିଆ ଶିଶୁମାନଙ୍କ ପ୍ରତି ତାଙ୍କର ଅହେତୁକ ଭଲପାଇବା ତାଙ୍କର ଏହି ଉଦ୍ୟମରୁ ସୁସ୍ପଷ୍ଟ ହୁଏ। ତାଙ୍କ ସ୍ୱପ୍ନର ଓଡ଼ିଶାର ନିର୍ମାତାମାନଙ୍କୁ ଗଢ଼ିବାରେ କୌଣସି ଊଣା ହେଉ ଏହା ସେ ଚାହୁଁ ନଥିଲେ। ସେଥିପାଇଁ ସେ ସାଲିସବିହୀନ ଭାବେ ଶିକ୍ଷାର ଉନ୍ନତି ପାଇଁ ଯାହା ଆବଶ୍ୟକ ତାହା କରୁଥିଲେ।

କଳିଙ୍ଗର ପିଲାମାନଙ୍କୁ ସାହସୀ ଦେଶଭକ୍ତ ଭାବେ ଗଢ଼ି ତୋଳିବା ପାଇଁ କେନ୍ଦ୍ରସରକାରଙ୍କୁ ପ୍ରଭାବିତ କରି ଭୁବନେଶ୍ୱରଠାରେ ୧୯୬୨ ମସିହା ଫେବୃଆରୀ ୧ ତାରିଖରେ ସେ ଏକ 'ସୈନିକ ସ୍କୁଲ' ପ୍ରତିଷ୍ଠା କରାଇଥିଲେ। ବିଜୁବାବୁଙ୍କର ନିରବଚ୍ଛିନ୍ନ ଉଦ୍ୟମ ଯୋଗୁଁ ଏହି ସ୍କୁଲର ସ୍ଥାୟୀ ଗୃହ କ୍ଷିପ୍ରଗତିରେ ନିର୍ମିତ ହୋଇପାରିଥିଲା ଏବଂ ୮ ଜାନୁଆରୀ ୧୯୬୪ରେ ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା। ଏହି ସୈନିକ ସ୍କୁଲରେ ପାଠପଢ଼ି ବର୍ତ୍ତମାନ ସୁଦ୍ଧା ୩୧୦ ଜଣ ଛାତ୍ର ସ୍ଥଳସେନା, ବାୟୁସେନା ଓ ନୌସେନାରେ ଯୋଗଦେଇ ନିଜର ସାହସିକତା ଓ ପାରଦର୍ଶିତା ଯୋଗୁଁ ଦେଶରେ ଚର୍ଚ୍ଚିତ ହେଉଛନ୍ତି। ସେମାନଙ୍କ ମଧ୍ୟରୁ କେତେଜଣଙ୍କ ନାମ ଏଠାରେ ଉଲ୍ଲେଖ କରିବା ସମୀଚୀନ ହେବ। ସେମାନେ ହେଲେ ଲେଫ୍ଟନାଣ୍ଟ ଜେନେରାଲ ଜୟନ୍ତ ମହାନ୍ତି, ଲେଫ୍ଟନାଣ୍ଟ ଜେନେରାଲ କେ.ପି. ଧଳସାମନ୍ତ, ଲେଫ୍ଟନାଣ୍ଟ ଜେନେରାଲ ପି.କେ. ରଥ, ଲେଫ୍ଟନାଣ୍ଟ ଜେନେରାଲ ପାର୍ଥ ମହାନ୍ତି, ଏୟାର ମାର୍ଶାଲ ଜେ.ଏନ୍. ବର୍ମା, ଏୟାର ମାର୍ଶାଲ ଶିବକୁମାର ଭାନ, ଭାଇସ୍ ଆଡମିରାଲ ଅନିଲ କୁମାର ଚାଓ୍ୱଲା ପ୍ରମୁଖ।

Digitized by srujanika@gmail.com

ପ୍ରଫେସର ଡକ୍ଟର ରାଧାନାଥ ରଥ ତାଙ୍କର ପ୍ରବନ୍ଧ 'କ୍ରାନ୍ତିକାରୀ ଚିନ୍ତାନାୟକ ବିଜୁ ପଟ୍ଟନାୟକ'ରେ ଉଲ୍ଲେଖ କରିଛନ୍ତି, "ମୁଖ୍ୟମନ୍ତ୍ରୀ ହେଲାପରେ ସେ ମୋତେ ବହୁତଥର ଡାକି ବିଭିନ୍ନ ବିଷୟରେ ଆଲୋଚନା କରିଥିଲେ। ତା' ଫଳରେ ପ୍ରାଥମିକ ପାଠ୍ୟପୁସ୍ତକ ଜାତୀୟକରଣ ହେଲା। ତାହାପାଇଁ ସ୍ୱତନ୍ତ୍ର ଛାପାଖାନା ହେଲା। ଏହି ପରିପ୍ରେକ୍ଷୀରେ ଜାତୀୟ କବି ବୀରକିଶୋର ଦାସଙ୍କର ଆନ୍ତରିକ ସଦିଚ୍ଛା ଓ ସହଯୋଗ ମୋତେ ଏହି କାର୍ଯ୍ୟରେ ଉତ୍ସାହିତ କରିଥିଲା। ନୂତନ କରି ଛାପାଖାନା ପରିଚାଳନାରେ ଇଂଲଣ୍ଡରେ ବିଶେଷ ଶିକ୍ଷା ଲାଭ କରି ଆସିଥିବା ଶକ୍ତି ପ୍ରସାଦ ମିଶ୍ର ଏପରି ଗୋଟିଏ ଅତ୍ୟାଧୁନିକ ଗୁଣାତ୍ମକ ଛାପାଖାନା ପ୍ରତିଷ୍ଠାରେ ବହୁତ ଦକ୍ଷତା ପ୍ରଦର୍ଶନ କରିଥିଲେ। ଏ ପ୍ରକାର ସ୍ୱତନ୍ତ୍ର ଛାପାଖାନା ପ୍ରତିଷ୍ଠା ବିରୁଦ୍ଧରେ ତତ୍କାଳୀନ ସରକାରୀ ଛାପାଖାନାର ଡାଇରେକ୍ଟର ଉଦୟନାଥ ମିଶ୍ର ଅତି କ୍ଷମତାଶୀଳ ମୁଖ୍ୟ ସଚିବ ଶ୍ରୀ ଶିବରମଣଙ୍କ ସହିତ ଷଡ଼ଯନ୍ତ୍ର କରିଥିଲେ; କିନ୍ତୁ ବିଜୁବାବୁଙ୍କର ଅଟଳ ନିଷ୍ଠା ଓ ଅଗ୍ରଧର୍ଷୀ ସିଦ୍ଧାନ୍ତ ଯୋଗୁଁ ଏ ପ୍ରକାର ଷଡ଼ଯନ୍ତ୍ର କାମ କରିନଥିଲା। କିନ୍ତୁ ବିଜୁବାବୁ କ୍ଷମତାରୁ ଯିବାର କିଛି ବର୍ଷ ପରେ ଅମଲାତାନ୍ତ୍ରିକ ଷଡ଼ଯନ୍ତ୍ର ଯୋଗୁଁ ତାଙ୍କଦ୍ୱାରା ପ୍ରତିଷ୍ଠିତ ପ୍ରାଥମିକ ଶିକ୍ଷା ପରିଷଦ ଓ ପାଠ୍ୟ ପୁସ୍ତକ ପ୍ରଣୟନ ସଂସ୍ଥାମାନ ବାତିଲ ହୋଇଯାଇଥିଲା। ବିଜୁବାବୁ ଏଥିଯୋଗୁଁ ପରେ ବହୁତ ବ୍ୟଥିତ ହୋଇଥିଲେ।

ଏହି ପ୍ରାଥମିକ ଶିକ୍ଷା ବହି ଜାତୀୟକରଣ ପରିପ୍ରେକ୍ଷୀରେ ତାଙ୍କର ଅଟଳ ସିଦ୍ଧାନ୍ତ ଓ ସାହସିକ ପଦକ୍ଷେପ ବିଷୟରେ ମୋର ସ୍ପଷ୍ଟ ଧାରଣା ହୋଇଥିଲା। ସେ ପାଠ୍ୟପୁସ୍ତକ ଜାତୀୟକରଣ ସଂବନ୍ଧରେ ଗୋଟିଏ କମିଟି ଗଠନ କରିଥିଲେ। ସେଥିରେ ମୁଖ୍ୟ ଶାସନ ସଚିବ, ଶିକ୍ଷା ସଚିବ, ଡି.ପି.ଆଇ, ସରକାରୀ ପ୍ରେସ ସୁପରିଣ୍ଟେଣ୍ଡେଣ୍ଟ ପ୍ରଭୃତି ସଂଶ୍ଳିଷ୍ଟ କର୍ମଚାରୀମାନେ ସଭ୍ୟ ଥିଲେ। ମୁଁ ମଧ୍ୟ ତାର ଅନ୍ତର୍ଭୁକ୍ତ ହୋଇଥିଲି। ପ୍ରଥମେ ସଭାରେ ସେ ମୋତେ ପଚାରିଲେ ତୁମେ ପ୍ରାଥମିକ ଶିକ୍ଷାର ଉନ୍ନତି ପାଇଁ କି ପଦକ୍ଷେପ ନେବାପାଇଁ ଚିନ୍ତା କରିଛ କୁହ। ମୁଁ ତିନୋଟି ପ୍ରସ୍ତାବ ଦେଲି। ପ୍ରଥମ ହେଲା, ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ସବୁ ପାଠ୍ୟ ପୁସ୍ତକ ଗୋଟିଏ ଗୁଣାତ୍ମକ ସରକାରୀ ଛାପାଖାନାରେ ପ୍ରସ୍ତୁତ ହେଉ। ପ୍ରଥମେ ବହି ଗୁଡ଼ିକରେ ବହୁବର୍ଣ୍ଣ ବିଶିଷ୍ଟ ଛବିଳ ବର୍ଣ୍ଣନା ହେବା ଦରକାର। ସେଥିରେ ବୈଜ୍ଞାନିକ ଆଭିମୁଖ୍ୟ ରହିବା ବିଧେୟ। ସେ ସାଙ୍ଗେ ସାଙ୍ଗେ ପ୍ରଶ୍ନ କଲେ: ଏହି ନୂଆ ଛାପାଖାନା ପାଇଁ କେତେ ଟଙ୍କା ଖର୍ଚ୍ଚ ହେବ ? ମୁଁ କହିଲି ଯେ ପ୍ରାୟ ଏକ କୋଟି ଟଙ୍କା। ସେତେବେଳେ କୋଟିଏ ଟଙ୍କା ବହୁତ

Digitized by srujanika@gmail.com

ଥିଲା। ସାଙ୍ଗେ ସାଙ୍ଗେ ବିଜୁବାବୁ କହିଲେ: ଠିକ୍ ଅଛି। ତୁମେ ବିଶଦ ଯୋଜନା କର। ଛାପାଖାନା ପାଇଁ କୋଟିଏ ଟଙ୍କା ମିଳିବ। ସରକାର ସଚିବମାନେ ସ୍ତମ୍ଭୀଭୂତ ହୋଇ ଚାହିଁ ଥାଆନ୍ତି। ବଜେଟ ବହିର୍ଭୂତ କୋଟିଏ ଟଙ୍କା ଯୋଗାଡ଼ କରିବା ସେମାନଙ୍କ ପକ୍ଷରେ ଅସଂଭବ ଥିଲା। ତା'ପରେ ବିଜୁବାବୁ କହିଲେ ତୁମର ଦ୍ୱିତୀୟ ଯୋଜନା କଅଣ ? ମୁଁ କହିଲି: ପ୍ରତ୍ୟେକ ପ୍ରାଥମିକ ସ୍କୁଲରେ ଗୋଟିଏ ଅଧିକା ବଖରା ତିଆରି ହେବ। ଯେଉଁଠାରେ ସରକାରୀ କାରଖାନା ନିର୍ମିତ ବହୁବିଧ ଯନ୍ତ୍ରପାତିର ଖେଳନା, ଛବି ପ୍ରଭୃତି ରହିବ। ପିଲାମାନେ ପ୍ରତିଦିନ ଘଣ୍ଟାଏ ସେ ଘରେ ଏସବୁ ଯାନ୍ତ୍ରିକ ଓ ବୈଜ୍ଞାନିକ ଉପକରଣ ଧରି ଖେଳିବେ। ତାହାହେଲେ ଯାଇ ସେମାନଙ୍କଠାରେ ବୈଜ୍ଞାନିକ ଦୃଷ୍ଟିକୋଣ ପିଲାଦିନୁ ସୃଷ୍ଟି ହୋଇପାରିବ। ସେ ଶୁଣିଲାକ୍ଷଣି କହିଲେ: ବିଶଦ ଯୋଜନା ପ୍ରସ୍ତୁତ କର - ମୁଁ ସେ ସମସ୍ତ ଖର୍ଚ୍ଚର ବ୍ୟବସ୍ଥା କରିବି। ସେତେବେଳେ ଡି.ପି.ଆଇ ଆପତ୍ତି କରିଥିଲେ ଯେ ପ୍ରତ୍ୟେକ ସ୍କୁଲରେ ଅଧିକା ବଖରାଟିଏ କରିବାରେ ବିସ୍ତର ଖର୍ଚ୍ଚ ହେବ। ବିଜୁବାବୁ ତାର ଉତ୍ତରରେ କହିଥିଲେ: ବିନା ଖର୍ଚ୍ଚରେ ପ୍ରାଥମିକ ଶିକ୍ଷା ବିସ୍ତାର କଅଣ ସଂଭବ ? ତାଙ୍କର ଅଟଳ ସିଦ୍ଧାନ୍ତ ହେଲା ଯେ ଶିକ୍ଷ ବିଭାଗ ଏହାର ଚୂଡ଼ାନ୍ତ ଯୋଜନା କାର୍ଯ୍ୟକାରୀ କରିବ। ମୋର ତୃତୀୟ ପ୍ରସ୍ତାବ ଥିଲା ଯେ ପ୍ରତିବର୍ଷ ଏହି ଛାପାଖାନା ତରଫରୁ ବହୁ ଜ୍ଞାନ ବିଜ୍ଞାନ ସମ୍ବନ୍ଧୀୟ ପୁସ୍ତକ ପ୍ରକାଶ ହେବ। ସେଥିରେ ମଧ ସେ ତତ୍‌କ୍ଷଣାତ୍ ରାଜି ହୋଇଗଲେ। ତାଙ୍କର ଏପରି ସିଦ୍ଧାନ୍ତରେ ମୁଁ ଆଶ୍ଚର୍ଯ୍ୟ ହୋଇଗଲି। ମୁଖ୍ୟ ଶାସନ ସଚିବ ଓ ଶିକ୍ଷା ସଚିବ ଚୁପ ରହିଥିଲେ ଏବଂ ସେମାନେ ନୂଆ ଛାପାଖାନା ନ କରି ସେହି ପୁରୁଣା ସରକାରୀ ଛାପାଖାନାରେ କାମ ଚଳାଇ ନେବାର ସିଦ୍ଧାନ୍ତ ନେଲେ। କାରଣ ସେ ସଂବନ୍ଧରେ କୁଆଡ଼େ ସରକାରୀ ନିଷ୍ପତ୍ତି ହୋଇନଥିଲା। ପର କମିଟି ବୈଠକରେ ଏ ବିଷୟ ନେଇ ମୁଁ ଆପତ୍ତି ଉଠାଇଲାକ୍ଷଣି ବିଜୁବାବୁ ସଚିବମାନଙ୍କ ଉପରେ ଉତ୍‌କ୍ଷିପ୍ତ ହୋଇ କହିଲେ 'ଦେଖ, ମୁଁ ଯେଉଁଠି ଯେତେବେଳେ ଯେଉଁ ନିଷ୍ପତ୍ତି ନିଏ ତାହା ହେଲା ସରକାରୀ ସିଦ୍ଧାନ୍ତ। ଏକଥା ମୁଁ ଆପଣମାନଙ୍କୁ ବାରମ୍ବାର କହି ଆସିଛି। ଆପଣମାନେ କାହିଁକି ମୋ ସିଦ୍ଧାନ୍ତ ବିରୁଦ୍ଧରେ ଏପରି ଷଡ଼ଯନ୍ତ୍ର କରୁଛନ୍ତି ? ସାତଦିନ ଭିତରେ ମୋତେ ଛାପାଖାନାର ବିଶଦ ବିବରଣୀ ତିଆରି କରି ଦିଅ। ମୁଁ ମୋରାରଜୀ ଭାଇଙ୍କୁ (ସେତେବେଳକାର କେନ୍ଦ୍ର ବିତ୍ତ ମନ୍ତ୍ରୀ) କହି ସବୁ ବନ୍ଦୋବସ୍ତ କରିବି।'

Digitized by srujanika@gmail.com

ସାତ ଦିନ ଭିତରେ ଛାପାଖାନାର ସମସ୍ତ ଯନ୍ତ୍ରପାତିର ତାଲିକା ହେଲା - ଘର ତିଆରି ଆରମ୍ଭ ହେଲା ଏବଂ ବିଜୁବାବୁ ନିର୍ଦ୍ଧାରିତ ସମୟ ଭିତରେ ଛାପାଖାନା କରାଇଲେ। ଏଥିରେ ନୂଆହୋଇ ନିଯୁକ୍ତି ପାଇଥିବା ଶ୍ରୀ ଶକ୍ତି ପ୍ରସାଦ ମିଶ୍ର ପ୍ରାଣପଣେ ଉଦ୍ୟମ କରିଥିଲେ। ପ୍ରାଥମିକ ଶିକ୍ଷା ବୋର୍ଡ଼ ଗଠିତ ହେଲା। ପାଠ୍ୟ ପୁସ୍ତକ ଉପଯୁକ୍ତ ଲେଖା ପାଇଁ ଦଶହଜାର ଟଙ୍କା ଯାଏ ପାରିଶ୍ରମିକ ଘୋଷଣା ହେଲା। ନୂଆ ଅତିରିକ୍ତ ବିଜ୍ଞାନ ବହିମାନ ତିଆରି ହେଲା। କେତେ ହଜାର ସେଟ ସରକାରୀ କାରଖାନାରେ ତିଆରି ହେଲା। କିନ୍ତୁ ସେ କ୍ଷମତାରୁ ଗଲାପରେ ସବୁ ଯୋଜନା ବାତିଲ ହୋଇଗଲା। ପ୍ରାଥମିକ ଶିକ୍ଷା ବିକାଶ ଯୋଜନା ଅମଲାତାନ୍ତ୍ରିକ ଷଡ଼ଯନ୍ତ୍ରର ଶିକାର ହୋଇ ବନ୍ଦ ରହିଲା।

ବିଜୁବାବୁଙ୍କର ଏ ପ୍ରକାର ଅଟଳ ସିଦ୍ଧାନ୍ତ ଓ ଅଗ୍ରଧର୍ଷୀ କାର୍ଯ୍ୟ ସଂପାଦନାର ସଫଳତା ମୋତେ ତାଙ୍କ ପ୍ରତି ଗଭୀର ଭାବରେ ଆକର୍ଷଣ କରିପାରିଥିଲା।

ଏ ପ୍ରକାର ଦୁଃସାହସିକ ଓ ଫଳପ୍ରଦ କାର୍ଯ୍ୟ ସଂପାଦନାର ବଳିଷ୍ଠ ମାନସିକତା ପଛରେ ତାଙ୍କର ଗଭୀର ଦେଶପ୍ରାଣ ବୋଧ ଓ ପ୍ରଚଣ୍ଡ ଜୀବନୀ ଶକ୍ତିର ଉଦ୍‌ବେଳନ କାମ କରୁଥିଲା। ଲୋକମାନଙ୍କର ବିଶେଷତଃ ସରକାରୀ କଳର ଅପାରଗତା, ଉଦାସୀନ ମନୋଭାବ ଓ ଆନ୍ତରିକତାର ଅଭାବରେ ସେ ବ୍ୟତିବ୍ୟସ୍ତ ହୋଇ ପଡୁଥିଲେ। ଚାବୁକ ମାରି ମାରି ସେମାନଙ୍କୁ ଆଗେଇ ନେବାପାଇଁ ସେ ସବୁବେଳେ ବଦ୍ଧପରିକର ଥିଲେ। ସେଥିଲାଗି ଯେ କୌଣସି ସରକାରୀ କର୍ମଚାରୀ ପ୍ରତି ସେ ଅତ୍ୟନ୍ତ ଅଶାଳୀନ ବ୍ୟବହାର କରୁଥିଲେ। ପ୍ରଥମେ ପ୍ରଥମେ ମୁଁ ଏପରି ଆଚରଣରେ କ୍ଷୁବ୍ଧ ହେଉଥିଲି; କିନ୍ତୁ ତାଙ୍କର ମହାମାନବୀୟ ସଦିଚ୍ଛା ଓ ନିର୍ଲୋଭ ଦେଶପ୍ରାଣତା ମୋତେ ମୁଗ୍ଧ କରିଥିଲା। ଏପରି ଅଶାଳୀନ ବ୍ୟବହାର ସାହାଯ୍ୟରେ ସେ ଅନେକ କାମ କରାଇ ପାରୁଥିଲେ।

ଉଦ୍ଦାମ ଜୀବନୀ ଶକ୍ତିରେ ବଳୀୟାନ ବିଜୁବାବୁ ସବୁବେଳେ ଯେପରି ଅସ୍ଥିର ଓ ଚଳଚଞ୍ଚଳ ଥିଲେ, ତାହା ବୋଧହୁଏ ନେହେରୁ ପରି ଶକ୍ତିମାନ ବ୍ୟକ୍ତି ପକ୍ଷରେ ହିଁ ସଂଭବ। ସେ ଯେତେ ଅଶାଳୀନ ବ୍ୟବହାର କଲେ ମଧ୍ୟ ତାଙ୍କର ଅଭିପ୍ରାୟ ବିଷୟରେ କାହାରି ସଂଦେହ ନଥିଲା।"

ସେ ଆହୁରି ମଧ୍ୟ ଉଲ୍ଲେଖ କରିଛନ୍ତି, "ବିଜୁବାବୁଙ୍କ ସହିତ ମୋର ଘନିଷ୍ଠ ପରିଚୟ ହୋଇଥିଲା ୧୯୬୨ ନିଖିଳ ଭାରତୀୟ ବିଜ୍ଞାନ କଂଗ୍ରେସ ଅଧିବେଶନ

Digitized by srujanika@gmail.com

ସମୟରେ। ଓଡ଼ିଶାରେ ପ୍ରଥମଥର ପାଇଁ ଏହି କଂଗ୍ରେସ ବସିଥିଲା। ମୁଁ ତାର କାର୍ଯ୍ୟକାରୀ ସଂପାଦକ ଥିଲି। ରେଭେନ୍ସା କଲେଜ ପଡ଼ିଆରେ ଗୋଟିଏ ବିରାଟ ସଭାମଂଚରେ ପ୍ରାୟ ବାରହଜାର ଲୋକଙ୍କର ସମାରୋହ ହୋଇଥିଲା। ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଏହାର ଉଦ୍‌ଘାଟନ କରିଥିଲେ। ସଭା ପରେ ପ୍ରଧାନମନ୍ତ୍ରୀଙ୍କ ଆଗରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁବାବୁଙ୍କୁ ବିଜ୍ଞାନ କଂଗ୍ରେସର ସଭାପତି ଡକ୍ଟର ମୁଖାର୍ଜୀ ଉଚ୍ଛ୍ୱସିତ ପ୍ରଶଂସା କରି କହିଥିଲେ ଯେ ଗତ କେତେ ବର୍ଷର କଂଗ୍ରେସ ଆୟୋଜନ ଠାରୁ କଟକ ଆୟୋଜନ ସର୍ବଶ୍ରେଷ୍ଠ ହୋଇଥିଲା ଏବଂ ସେଥିଲାଗି ସେ ବିଜୁବାବୁଙ୍କୁ ଧନ୍ୟବାଦ ଦେଇଥିଲେ। ପ୍ରଧାନମନ୍ତ୍ରୀଙ୍କ ଆଗରେ କେଉଁ ମୁଖ୍ୟମନ୍ତ୍ରୀ ପ୍ରଶଂସିତ ହେବାକୁ ଚାହାଁନ୍ତି ନାହିଁ ? କିନ୍ତୁ ବିଜୁବାବୁ ସାଙ୍ଗେ ସାଙ୍ଗେ ଉତ୍ତର ଦେଇଥିଲେ ଯେ ଏଥିରେ ତାଙ୍କର ନିଜର କୌଣସି ଅବଦାନ ନାହିଁ। ମୋତେ ହାତ ଦେଖାଇ କହିଥିଲେ- ମୋର କୌଣସି ସାହାଯ୍ୟ ନ ନେଇ ମଧ୍ୟ ସେ ଏସବୁ କରାଇ ପାରିଛନ୍ତି; ସେଥିଲାଗି ସେ ହିଁ ଧନ୍ୟବାଦାର୍ହ, ମୁଁ କିନ୍ତୁ କହିଥିଲି ଯେ 'ତାଙ୍କର ନାମ ନେଇ ମୁଁ ଯେତେବେଳେ ସବୁ କାମ ସୁରୁଖୁରୁରେ କରାଇପାରିଲି ତାଙ୍କର ସମୟ ନଷ୍ଟ କରି ଲାଭ କଅଣ ? ଆଜିକାଲି ଯେ କୌଣସି ବଡ଼ କାମ କରିବାକୁ ହେଲେ କ୍ଷମତାସୀନ ମୁଖ୍ୟମନ୍ତ୍ରୀ ଓ ପ୍ରଧାନମନ୍ତ୍ରୀଙ୍କ ନାମ ନେଲେ ଯାଇ ସଂଭବ ହୋଇପାରୁଛି। ତେଣୁ ମୁଁ ନିମିତ୍ତ ମାତ୍ର।' ମୋର ଏହି ବକ୍ତବ୍ୟରେ ପ୍ରଧାନମନ୍ତ୍ରୀ ନେହେରୁ ସାମାନ୍ୟ ହସି କହିଥିଲେ, 'ଦୁର୍ଭାଗ୍ୟବଶତଃ ଭାରତରେ ଏହା ସତ୍ୟ।'

ବିଜୁବାବୁ ନିଜର ପ୍ରଶଂସାକୁ ମୋ ଉପରେ ଢାଳି ଦେବା ନିଶ୍ଚିତ ଭାବରେ ଗୋଟିଏ ମହାନୁଭବ ମାନସିକତାର ଲକ୍ଷଣ। ସାଧାରଣତଃ ପ୍ରଧାନମନ୍ତ୍ରୀଙ୍କ ଆଗରେ ନିଜର ପ୍ରଶଂସା ଶୁଣିବା ପାଇଁ ସମସ୍ତେ ଉଦ୍‌ଗ୍ରୀବ। ଏହି କଥାପଦକ ଯୋଗୁ ତାଙ୍କର ବିରାଟ ହୃଦୟବତ୍ତା ବିଷୟରେ ମୋର ଦୃଢ଼ ଧାରଣା ହୋଇଥିଲା। ଅଥଚ ସେତେବେଳ ପର୍ଯ୍ୟନ୍ତ ତାଙ୍କର ଦୁର୍ଦ୍ଧର୍ଷ ଅଗ୍ରଧର୍ଷିତା ବ୍ୟବହାର ଓ ରେଭେନ୍ସା କଲେଜ ପ୍ରିନ୍ସିପାଲଙ୍କ ସହିତ ତାଙ୍କର ଅଶାଳୀନ ବ୍ୟବହାରରେ ମୁଁ ଅତ୍ୟନ୍ତ କ୍ଷୁବ୍ଧ ହୋଇଥିଲି। ଏହା ପୂର୍ବରୁ ଥରେ ତାଙ୍କ ସହିତ ମୁହାଁମୁହିଁ ଦେଖାହେଲା ପରେ ମୋର ପ୍ରବଳ ଅସନ୍ତୋଷ ବ୍ୟକ୍ତ କରିଥିଲି। ସେ ତରବରରେ ଥିଲେ। ତେଣୁ ମୋ ଘରକୁ ଆସି ଏ ବିଷୟରେ ଆଲୋଚନା କରିବେ ବୋଲି ଆଶ୍ୱାସନା ଦେଇଥିଲେ। ତାପରେ ତାଙ୍କ ସହିତ ମୋର ଘନିଷ୍ଠତା ବଢ଼ି ବଢ଼ି ଚାଲିଥିଲା ତାଙ୍କର ଶେଷ ଜୀବନ ପର୍ଯ୍ୟନ୍ତ।"

Digitized by srujanika@gmail.com

୧୯୬୧ ମସିହା ଜୁନ୍ ମାସରୁ ସେ ମୁଖ୍ୟମନ୍ତ୍ରୀ ରୂପେ କାର୍ଯ୍ୟ କରି ୧୯୬୩ ଅକ୍ଟୋବର ୨ ତାରିଖରେ କାମରାଜ ଯୋଜନା ଅନୁସାରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ। କିନ୍ତୁ ସେ ୧୯୬୭ ମସିହା ପର୍ଯ୍ୟନ୍ତ ରାଜ୍ୟ ଯୋଜନା ବୋର୍ଡ଼ର ଅଧ୍ୟକ୍ଷ ଦାୟିତ୍ୱରେ ରହିଥିଲେ। ବିଜୁ ପଟ୍ଟନାୟକଙ୍କ ପରେ ବୀରେନ ମିତ୍ର ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ। ୧୯୬୪ର ବିରାଟ ଛାତ୍ର ଆନ୍ଦୋଳନ ପରେ ବୀରେନ୍ ମିତ୍ର ୧୯୬୫ ମାର୍ଚ୍ଚ ମାସରେ ମୁଖ୍ୟମନ୍ତ୍ରୀ ଦାୟିତ୍ୱରୁ ଅପସରି ଗଲେ ଏବଂ ରାଜସ୍ୱ ମନ୍ତ୍ରୀ ସଦାଶିବ ତ୍ରିପାଠୀ ମୁଖ୍ୟମନ୍ତ୍ରୀ ଆସନ ମଣ୍ଡନ କଲେ। ୧୯୬୭ରେ ଚତୁର୍ଥ ସାଧାରଣ ନିର୍ବାଚନ ହେବା ପର୍ଯ୍ୟନ୍ତ ସଦାଶିବ ତ୍ରିପାଠୀ ଉକ୍ତ ଦାୟିତ୍ୱ ସମ୍ପାଦନ କରିଥିଲେ। ଯେହେତୁ ବିଜୁ ପଟ୍ଟନାୟକ ରାଜ୍ୟ ଯୋଜନା ବୋର୍ଡ଼ର ଅଧ୍ୟକ୍ଷ ଥିଲେ ଏହି ମୁଖ୍ୟମନ୍ତ୍ରୀମାନେ ତାଙ୍କର ନିଷ୍ପତ୍ତିକୁ ଗ୍ରହଣ କରୁଥିଲେ। ସାଧାରଣ ଲୋକେ ଏହାକୁ ବିଜୁ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳ ବୋଲି କହୁଥିଲେ।

ଏହି ମନ୍ତ୍ରିମଣ୍ଡଳର କାର୍ଯ୍ୟକାଳକୁ ଓଡ଼ିଶାର ଶିକ୍ଷାଜଗତର 'ସୁବର୍ଣ୍ଣଯୁଗ' ବୋଲି କୁହାଯାଏ। ପ୍ରଫେସର ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ତାଙ୍କ ଆତ୍ମଜୀବନୀ 'ମୋ ଅକୁହା କାହାଣୀ'ରେ ଲେଖିଛନ୍ତି ଯେ, "ବିଜୁ ପଟ୍ଟନାୟକଙ୍କ ଶାସନ କାଳ (୧୯୬୧-୬୭) ଓଡ଼ିଶାର ଶିକ୍ଷା ଇତିହାସରେ ସୁବର୍ଣ୍ଣ ଯୁଗ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ।"

ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ବହନ କରିବା ପରେ ରେଭେନ୍ସା କଲେଜରେ ନୈଶ୍ୟ ମହାବିଦ୍ୟାଳୟ ଏବଂ ବି.ଜେ.ବି କଲେଜରେ ନୈଶ୍ୟ ମହାବିଦ୍ୟାଳୟ ସ୍ଥାପନ ମଧ୍ୟ ବିଜୁବାବୁଙ୍କ ଅବଦାନ। ଏହାପରେ ବ୍ରହ୍ମପୁରର ଖଲିକୋଟ କଲେଜ ଓ ସମ୍ବଲପୁରର ଗଙ୍ଗାଧର ମେହେର କଲେଜରେ ନୈଶ୍ୟ ମହାବିଦ୍ୟାଳୟ ପ୍ରତିଷ୍ଠା ହେଲା। ବିଭିନ୍ନ ସରକାରୀ ଓ ବେସରକାରୀ ସ୍ତରରେ କାର୍ଯ୍ୟ କରୁଥିବା ଓ ଶିକ୍ଷାପ୍ରତି ଆଗ୍ରହୀ ଥିବା ବ୍ୟକ୍ତି ଏହି ସୁବିଧା ପାଇ ଉଚ୍ଚଶିକ୍ଷା ଲାଭ କରି ପାରିଲେ। ବୁର୍ଲା ଇଂଜିନିୟରିଂ ଓ ମେଡ଼ିକାଲ କଲେଜ ତାଙ୍କରି ଉଦ୍ୟମରେ ପ୍ରତିଷ୍ଠା ହୋଇଥିଲା। ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ବା ଭାରତ ସରକାର ଅର୍ଥ ମଞ୍ଜୁର ନ କଲେ ଓଡ଼ିଶା ସରକାର ଏହି ଦୁଇ କଲେଜର ସମସ୍ତ ଖର୍ଚ୍ଚ ବହନ କରିବେ ବୋଲି ବିଜୁବାବୁ ସ୍ପଷ୍ଟ ଭାବରେ କହିଥିଲେ। ସେହିପରି କୃଷି ମହାବିଦ୍ୟାଳୟ ଓ ପଶୁଚିକିତ୍ସା ମହାବିଦ୍ୟାଳୟ ଦ୍ୱୟକୁ ମିଶାଇ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା। ୨୪

Digitized by srujanika@gmail.com

ଅଗଷ୍ଟ ୧୯୬୨ ମସିହାରେ ଆମେରିକାର ତତ୍କାଳୀନ ରାଷ୍ଟ୍ରଦୂତ ପ୍ରଫେସର ଗଲବ୍ରେଥ୍ଙ୍କ ଦ୍ୱାରା ଏହି ବିଶ୍ୱବିଦ୍ୟାଳୟ ଉଦ୍‌ଘାଟିତ ହୋଇଥିଲା।

ଶିକ୍ଷାର ବିକାଶ କ୍ଷେତ୍ରରେ ଆଞ୍ଚଳିକ ବୈଷମ୍ୟ ଦୂର କରିବା ଓ ଉଚ୍ଚଶିକ୍ଷାର ଦ୍ରୁତ ବିକାଶ ଲାଗି ବିଜୁ ପଟ୍ଟନାୟକ ପଶ୍ଚିମାଞ୍ଚଳରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓ ଦକ୍ଷିଣାଞ୍ଚଳରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ। ବୈଷୟିକ ଶିକ୍ଷାର ଉପଯୋଗିତାକୁ ଉପଲବ୍ଧି କରି ସେ ରାଉରକେଲାଠାରେ ଏକ ଆଞ୍ଚଳିକ ଯାନ୍ତ୍ରିକ ମହାବିଦ୍ୟାଳୟ ପ୍ରତିଷ୍ଠା କରାଇଥିଲେ, ଯାହା ବର୍ତ୍ତମାନ ନ୍ୟାଶନାଲ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନୋଲୋଜିରେ ପରିଣତ ହୋଇଛି।

ରାଜ୍ୟରେ ଉଚ୍ଚମାନର ତାଲିମପ୍ରାପ୍ତ ଶିକ୍ଷକଙ୍କ ଆବଶ୍ୟକତାକୁ ଦୃଷ୍ଟିରେ ରଖି ସେ ଭୁବନେଶ୍ୱରଠାରେ ଭାରତ ସରକାରଙ୍କୁ ପ୍ରଭାବିତ କରି ଆଞ୍ଚଳିକ ପ୍ରଶିକ୍ଷଣ ମହାବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ। ଭାରତ ସରକାରଙ୍କ ଶିକ୍ଷା ମନ୍ତ୍ରଣାଳୟ ଦ୍ୱାରା ଭୁବନେଶ୍ୱରରେ ପୂର୍ବାଞ୍ଚଳ ରାଜ୍ୟଗୁଡ଼ିକର ଭାଷାର ଉନ୍ନତି ଓ ସମନ୍ୱୟ ରକ୍ଷା କରିବା ଲାଗି ସେ ପୂର୍ବାଞ୍ଚଳ ଆଞ୍ଚଳିକ ଭାଷା କେନ୍ଦ୍ର (Eastern Regional Language Centre) ସ୍ଥାପନ କରିଥିଲେ।

ବିଜୁବାବୁଙ୍କ ସମୟରେ ୩୦ରୁ ଅଧିକ ବେସରକାରୀ କଲେଜ ସ୍ଥାପିତ ହୋଇପାରିଥିଲା। ସେହିସବୁ କଲେଜ ମଧ୍ୟରୁ କିଛି କଲେଜ ସ୍ୱୟଂଶାସିତ କଲେଜର ମାନ୍ୟତା ହାସଲ କରିବା ସହିତ ସେଠାରେ ଏବେ ସ୍ନାତକୋତ୍ତର ଶିକ୍ଷା ମଧ୍ୟ ପ୍ରଦାନ କରାଯାଉଛି।

କୌଣସି ସ୍ଥାନରେ ଶିକ୍ଷା ପ୍ରେମୀମାନେ ବେସରକାରୀ ମହାବିଦ୍ୟାଳୟ ପ୍ରତିଷ୍ଠା କରିବାଲାଗି ବ୍ୟବସ୍ଥା କଲେ ସରକାର ସେମାନଙ୍କୁ ନାନା ଭାବରେ ଉତ୍ସାହିତ କରୁଥିଲେ। ବିଜୁ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳ ଅମଳରେ ଏହି ଶିକ୍ଷା ନୀତି ବିରାଟ ଆକାରରେ କାର୍ଯ୍ୟକାରୀ ହେଲା ଏବଂ ଏହି ଛ' ବର୍ଷ ମଧ୍ୟରେ ୩୪ଟି ବେସରକାରୀ କଲେଜ ଓଡ଼ିଶାରେ ସ୍ଥାପିତ ହୋଇଥିଲା।

ସେ ପୁନଶ୍ଚ ଘୋଷଣା କରିଥିଲେ ଯେ, ଓଡ଼ିଶାରେ କୌଣସି ମହିଳା କଲେଜ ବେସରକାରୀ ପରିଚାଳନାରେ ରହିବ ନାହିଁ। ଏହି ନୀତି ଅନୁସାରେ ୧୯୬୨ରେ ବେସରକାରୀ ଉଦ୍ୟମରେ ପ୍ରତିଷ୍ଠିତ ହୋଇଥିବା ପୁରୀ, ବାଲେଶ୍ୱର, ବଲାଙ୍ଗୀର ଓ ସମ୍ବଲପୁରରେ ଥିବା ୪ ଗୋଟି ମହିଳା ମହାବିଦ୍ୟାଳୟର ପରିଚାଳନା ଦାୟିତ୍ୱ

Digitized by srujanika@gmail.com

ସରକାର ହାତକୁ ନେଇଥିଲେ। ସେ କହୁଥିଲେ ପ୍ରତ୍ୟେକ ଜିଲ୍ଲାର ମୁଖ୍ୟାଳୟରେ ଗୋଟିଏ ଗୋଟିଏ ସରକାରୀ କଲେଜ ରହିବ। ବ୍ରହ୍ମପୁର ଓ ସମ୍ବଲପୁରରେ ଦୁଇଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବାଲାଗି ବିଜୁବାବୁ ନିଷ୍ପତ୍ତି ଗ୍ରହଣ କରିଥିଲେ।

ବିଜୁବାବୁ ସବୁବେଳେ ଚାହୁଁଥିଲେ, ଆଗ୍ରହୀ ଶିକ୍ଷିତ ଯୁବକମାନେ ସେମାନଙ୍କ କାର୍ଯ୍ୟରେ ଅନୁପ୍ରାଣିତ ହୁଅନ୍ତୁ ଏବଂ ଓଡ଼ିଶାବାସୀଙ୍କ ସେବା ପାଇଁ ନିଜର ବ୍ୟକ୍ତିଗତ ସ୍ୱାର୍ଥ ତ୍ୟାଗ କରନ୍ତୁ। ତାଙ୍କ ସ୍ୱପ୍ନକୁ ଆଧାର କରି ଅଳ୍ପ କେତେଜଣ ନିଜର ସୁଖ ସମୃଦ୍ଧିକୁ ଭୁଲିଯାଇ ଓଡ଼ିଶାରେ ଶିକ୍ଷାର ପ୍ରସାର ଓ ସମାଜସେବା କ୍ଷେତ୍ରରେ ନିଜକୁ ନିୟୋଜିତ କରିଛନ୍ତି। ସେମାନଙ୍କ ମଧ୍ୟରୁ ଅନ୍ୟତମ ହେଲେ ଡକ୍ଟର ଅଚ୍ୟୁତ ସାମନ୍ତ। ୧୯୯୩ ମସିହାରେ ଆଦିବାସୀ ପିଲାଙ୍କୁ ଭୁବନେଶ୍ୱରରେ ରଖି ସେମାନଙ୍କର ରହିବା, ଖାଇବା ଓ ପଢ଼ିବାର ସୁବ୍ୟବସ୍ଥା କରିବାକୁ 'କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସୋସିଆଲ୍ ସାଇନ୍ସେସ୍' ନାମରେ ଏକ ଅନୁଷ୍ଠାନ ୧୨୫ପିଲାଙ୍କୁ ନେଇ ଆରମ୍ଭ କରିଥିଲେ ସେ। ଆଜି ସେଇଠି ୨୫ ହଜାର ଆଦିବାସୀ ପୁଅଝିଅ ଶିଶୁ ଶ୍ରେଣୀଠାରୁ ସ୍ନାତକୋତ୍ତର ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢୁଛନ୍ତି ଏବଂ ଜୀବନର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ହୋଇପାରିଛନ୍ତି। ୧୯୯୩ ମସିହାରେ ସେ ପ୍ରତିଷ୍ଠା କରିଥିବା 'କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇଣ୍ଡଷ୍ଟ୍ରିଆଲ ଟେକ୍‌ନୋଲୋଜି' ଯେଉଁଟାକି ଆଇ.ଟି.ଆଇ. ଭାବରେ ପ୍ରଥମେ ଆରମ୍ଭ ହୋଇଥିଲା, ଆଜି ତାହା କିଟ୍ ବିଶ୍ୱବିଦ୍ୟାଳୟରେ ପରିଣତ ହୋଇ ସେଥିରେ ୨୭ ହଜାର ଛାତ୍ରଛାତ୍ରୀ ପାଠ ପଢୁଛନ୍ତି। ବିଜୁ ପଟ୍ଟନାୟକଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ଜନଜାତିଙ୍କ ଓ ଅଭାବୀ ଜନସାଧାରଣଙ୍କ ଯେପରି କଲ୍ୟାଣ ସାଧନ କରୁଛନ୍ତି ତାହା ବିଶ୍ୱରେ ତାଙ୍କୁ ଏକ ଆଦର୍ଶ ବ୍ୟକ୍ତି ରୂପେ ପରିଗଣିତ କରିଛି। ଡକ୍ଟର ସାମନ୍ତଙ୍କ ବିଷୟରେ ଏହି ପୁସ୍ତକରେ ଅନ୍ୟତ୍ର ଆଲୋଚନା ହୋଇଛି।

– ୦ –

Digitized by srujanika@gmail.com

# ମହିଳା ସଶକ୍ତିକରଣର ଆଦ୍ୟ ପ୍ରବକ୍ତା

ଓଡ଼ିଶାର ଜନସଂଖ୍ୟାର ପଚାଶ ପ୍ରତିଶତ ହେଲେ ମହିଳା। ରାଜ୍ୟର ମାନବ ସମ୍ବଳର ଅଧା ଯଦି ମହିଳା, ତାହେଲେ ସେମାନଙ୍କର ବିକାଶ ନ ହେଲେ ଆମର ମାନବ ସମ୍ବଳର ଅର୍ଦ୍ଧେକ ଅବ୍ୟବହୃତ ରହିଯିବ ଏବଂ ରାଜ୍ୟର ପ୍ରଗତି ବାଧାପ୍ରାପ୍ତ ହେବ। ରାଜ୍ୟର ପ୍ରଗତିକୁ ତ୍ୱରାନ୍ୱିତ କରିବାକୁ ହେଲେ ମହିଳାମାନଙ୍କର ବିକାଶ ନିହାତି ଆବଶ୍ୟକ। ମହିଳା ସଶକ୍ତିକରଣ ବିନା କୌଣସି ଜାତିର ଅଗ୍ରଗତି ସମ୍ଭବ ନୁହେଁ। ଏଇଥିପାଇଁ ବିଜୁ ପଟ୍ଟନାୟକ ମହିଳା ସଶକ୍ତିକରଣ ଉପରେ ଗୁରୁତ୍ୱ ପ୍ରଦାନ କରୁଥିଲେ। ପ୍ରତ୍ୟେକ ମହିଳାଙ୍କ ମଧ୍ୟରେ ଯେଉଁ ବିଶେଷ ଗୁଣଟି ଅଛି, ତାହାର ପରିସ୍ଫୁଟନ ପାଇଁ ସମସ୍ତେ ଯତ୍ନଶୀଳ ହେବା ଉଚିତ୍ ବୋଲି ସେ କହୁଥିଲେ। ଯେ ଖେଳୁଛି ସେ କେମିତି ସଫଳ କ୍ରୀଡ଼ାବିତ୍ ହେବ, ଯେ ବିମାନ ଚଲାଇ ପାରିବ ତାକୁ ବିମାନ ଚଲାଇବା ପାଇଁ, ଯେଉଁ ଝିଅଟି ଗବେଷଣା କରିବାକୁ ଚାହିଁବ ତାକୁ ସେହି ଦିଗରେ ଉତ୍ସାହିତ କରିବା ଆବଶ୍ୟକ ବୋଲି ସେ ଅନୁଭବ କରୁଥିଲେ। ସେଥିପାଇଁ ମହିଳାମାନଙ୍କ ସଂରକ୍ଷଣ ଉପରେ ବିଜୁବାବୁ ଗୁରୁତ୍ୱ ଆରୋପ କରିଥିଲେ। ବିଜୁବାବୁ ତାଙ୍କ ଶାସନ କାଳରେ ପ୍ରତିଟି ପ୍ରତିଭାଶାଳୀ ମହିଳାଙ୍କୁ ନିଜର ଲକ୍ଷ୍ୟରେ ପହଞ୍ଚିବା ପାଇଁ ଉତ୍ସାହିତ କରିବା ସହିତ ପ୍ରୋତ୍ସାହିତ ମଧ୍ୟ କରୁଥିଲେ। ସେ କହୁଥିଲେ, "ମହିଳାମାନଙ୍କର ମଙ୍ଗଳ ହେଲେ ସଂପୂର୍ଣ୍ଣ ସମାଜର ମଙ୍ଗଳ ହେବ। କାରଣ ମହିଳାମାନେ ହେଲେ ସମାଜର ଶୃଙ୍ଖଳିତ ଓ ଶକ୍ତିଶାଳୀ ଅଙ୍ଗ।"

ଓଡ଼ିଶାର ମହିଳାମାନେ ମୁଖ୍ୟସ୍ରୋତରୁ ଦୂରେଇ ରହିବାଟା ତାଙ୍କୁ ବ୍ୟଥିତ କରୁଥିଲା। ସେଥିପାଇଁ ସେ ସବୁବେଳେ ନାରୀମାନଙ୍କୁ ଉତ୍ସାହିତ କରୁଥିଲେ। ସ୍ୱାଧୀନତା ପୂର୍ବରୁ ମହାତ୍ମା ଗାନ୍ଧୀ ଘୋଷଣା କରିଥିଲେ, "ଯେ ପର୍ଯ୍ୟନ୍ତ ମହିଳାମାନେ ସାଧାରଣ ଜୀବନରେ ଯୋଗ ଦେଇନାହାନ୍ତି, ସେ ପର୍ଯ୍ୟନ୍ତ ଆମେ ସ୍ୱରାଜ ପାଇ ପାରିବୁ ନାହିଁ। ଯେଉଁଠି ମହିଳାମାନଙ୍କ ପୂର୍ଣ୍ଣ ସହଯୋଗ ମିଳିନାହିଁ, ମୋର ସେଭଳି ସ୍ୱରାଜର ଆବଶ୍ୟକତା ନାହିଁ।" ବିଜୁବାବୁ ଗାନ୍ଧିଜୀଙ୍କ ଏହି ଉକ୍ତିରେ ଅନୁପ୍ରାଣୀତ ହୋଇ ଆଧୁନିକ ଓଡ଼ିଶା ଗଠନ ପାଇଁ ନାରୀମାନଙ୍କୁ ସାମିଲ ହେବାକୁ ଆହ୍ୱାନ କରିଥିଲେ। ମହିଳାମାନେ

Digitized by srujanika@gmail.com

ନିଜର ଧୀଶକ୍ତିକୁ ବିନିଯୋଗ କରି ନିଜର ବିକାଶ କ୍ଷେତ୍ରରେ ଉପୁଜୁଥିବା ସବୁ ପ୍ରତିବନ୍ଧକକୁ ଅତିକ୍ରମ କରି ସ୍ୱୟଂସିଦ୍ଧା ହେବାକୁ ସେ ସେମାନଙ୍କୁ ଉତ୍ସାହିତ କରୁଥିଲେ।

ଶିକ୍ଷା କ୍ଷେତ୍ରରେ ମହିଳାମାନେ କିପରି ଅଧିକ ସଂଖ୍ୟାରେ ଉଚ୍ଚସ୍ଥାନରେ ଅବସ୍ଥାପିତ ହୋଇପାରିବେ, ସେଥିପାଇଁ ସେ ଯତ୍ନବାନ ଥିଲେ। ଶିକ୍ଷା, କ୍ରୀଡ଼ା, ସାହିତ୍ୟ, ସଙ୍ଗୀତ, ନୃତ୍ୟ, ସିନେମା ଆଦି ଅନେକ କ୍ଷେତ୍ରରେ ନାରୀମାନେ ସର୍ବାଗ୍ରେ ଅଛନ୍ତି ଓ ବିଭିନ୍ନ ଉଚ୍ଚ ପଦପଦବୀରେ ଅବସ୍ଥାପିତ ହୋଇଛନ୍ତି। ନିଜନିଜ କର୍ମକ୍ଷେତ୍ରରେ ମଧ୍ୟ ସଫଳତାର ସହ କାମ କରୁଛନ୍ତି। ତେବେ କ'ଣ ପାଇଁ ନାରୀମାନେ ଶାସନର ସର୍ବୋଚ୍ଚ ସ୍ଥାନକୁ ଯିବେ ନାହିଁ ବୋଲି ସେ ଯୁକ୍ତି ବାଢୁଥିଲେ। ସେ ନନ୍ଦିନୀ ଶତପଥୀ, ମୀରା ଦାସ ଓ ଇଲା ପଣ୍ଡା ପ୍ରଭୃତିଙ୍କୁ ସାଂସଦଭାବେ ପାର୍ଲ୍ୟାମେଣ୍ଟକୁ ପଠାଇଥିଲେ। ସେ ସବୁବେଳେ ପ୍ରଶ୍ନ କରୁଥିଲେ, ଆମ ଝିଅମାନେ କେଉଁ ଗୁଣରେ କମ୍ କି ? ସେମାନେ କାହିଁକି ଶାସନର ଶୀର୍ଷକୁ ଯାଇପାରିବେ ନାହିଁ ? ତାଙ୍କ ମତରେ ଯଦି ନାରୀମାନଙ୍କ ହାତରେ ଶାସନର ଡ଼ୋରି ରହିବ, ତେବେ ଶାସନରେ ବିଶୃଙ୍ଖଳା, ଅରାଜକତା କମିଯିବ ଏବଂ ମହିଳାମାନେ ଉଚ୍ଚ ପଦରେ ଅବସ୍ଥାପିତ ହେବା ସହିତ ଶାସନତନ୍ତ୍ରରେ ସାମିଲ ହେଲେ ଦୁର୍ନୀତି ଆପେ କମିଯିବ। ଗୋଟିଏ ଘରକୁ ସମ୍ଭାଳୁଥିବା ନାରୀଟିଏ ରାଜ୍ୟକୁ ଭଲ ଭାବରେ ସମ୍ଭାଳି ପାରିବ ବୋଲି ସେ ବିଶ୍ୱାସ କରୁଥିଲେ। ନାରୀଟିଏ ନିଜର ପିଲାକୁ ଯତ୍ନ ନେଲା ପରି ରାଜ୍ୟବାସୀଙ୍କର ଯତ୍ନ ନେଇ ପାରିବ ଓ ସୁବିଧା ଅସୁବିଧାକୁ ଭଲ ଭାବେ ପରଖି ପାରବ। ଶୋଷଣ ଓ ସାମାଜିକ ପ୍ରଥାକୁ ଭୟ କରି ଆଉ କେତେ ଦିନ ନାରୀମାନେ ଘର ଭିତରେ ବନ୍ଦୀ ହୋଇ ପରଦା ଆଢୁଆଳରେ ରହିବେ ବୋଲି ସେ ବାରମ୍ବାର ପ୍ରଶ୍ନ କରୁଥିଲେ।

ବିଜୁବାବୁ ପଞ୍ଚାୟତସ୍ତରର ନିର୍ବାଚନରେ ୩୩% ସିଟ୍ ମହିଳାମାନଙ୍କ ପାଇଁ ସଂରକ୍ଷିତ କରିଥିଲେ। ଏ ସମ୍ପର୍କରେ ସଂବିଧାନ ସଂଶୋଧନ ହେବା ପୂର୍ବରୁ ୧୯୯୦ ମସିହାରେ ସେ ଏକ ସ୍ୱତନ୍ତ୍ର ପଞ୍ଚାୟତ ଆଇନ୍ ପ୍ରଣୟନ କରି ମହିଳାମାନଙ୍କ ପାଇଁ ଏହି ୩୩% ଆସନ ସଂରକ୍ଷିତ କରିଥିଲେ। ତାଙ୍କର ଏହି ଅଭିନବ ପଦକ୍ଷେପ ସାରା ଭାରତବର୍ଷରେ ପ୍ରଥମ ଥିଲା। ପରବର୍ତ୍ତୀ ସମୟରେ ଅନ୍ୟ ରାଜ୍ୟମାନେ ମହିଳାଙ୍କ ପାଇଁ ଆସନ ସଂରକ୍ଷଣ ସପକ୍ଷରେ ଯାଇଥିଲେ। ସେ ନାରୀମାନଙ୍କ ଉଦ୍ଦେଶ୍ୟରେ କହୁଥିଲେ, "ପଞ୍ଚାୟତ ଓ ପୌରସଭାରେ ମହିଳାଙ୍କ ପାଇଁ ସ୍ଥାନ ସଂରକ୍ଷଣ ହେଲା, ସେ କହିଲେ, ତମେ ସବୁ ମା' ଦୁର୍ଗାଙ୍କ ତନୟା। ଦୁର୍ନୀତି ମହିଷାସୁରମାନଙ୍କୁ ନିପାତ କରିବା ପାଇଁ

Digitized by srujanika@gmail.com

ମୋ ଦେଶର ଝିଅମାନେ ଆଗେଇ ଆସ।" ତାଙ୍କର ଏହି ନିଷ୍ପତ୍ତି ଯୋଗୁଁ ଓଡ଼ିଶାର ଏକଲକ୍ଷ ପଞ୍ଚାୟତ ପ୍ରତିନିଧିଙ୍କ ମଧ୍ୟରେ ୩୩ ହଜାର ହେଲେ ମହିଳା ପ୍ରତିନିଧି।

ଶିକ୍ଷିତା ଓ ପ୍ରତିଭାଦୀପ୍ତ ଝିଅମାନଙ୍କୁ ସେବା କ୍ଷେତ୍ରରେ ଅଗ୍ରାଧିକାର ଦିଆଯିବା ଉଚିତ ବୋଲି ସେ ଯୁକ୍ତି ବାଢୁଥିଲେ। ମା' ତ ସେବାମୟୀ, ମା' ସେବା କରିବ ନାହିଁ ତ ଆଉ କିଏ କରିବ? ତାଙ୍କ ସମୟରେ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଥିଲେ ଉଚ୍ଚଶିକ୍ଷା ସମ୍ପନ୍ନ ମହିଳା ଡକ୍ଟର ଗିରିଶବାଳା ମହାନ୍ତି। ଅଧ୍ୟାପିକା ରାନୁ ମିଶ୍ରଙ୍କୁ ସେ ରେଡ୍‌କ୍ରସ୍‌ର ସଚିବ ପଦରେ ଅବସ୍ଥାପିତ କରାଇଥିଲେ। ବିଶିଷ୍ଟ ସମାଜସେବୀ କସ୍ତୁରିକା ପଟ୍ଟନାୟକଙ୍କୁ ସେ ରାଜ୍ୟ ସମାଜ ମଙ୍ଗଳ ବୋର୍ଡ଼ର ଅଧ୍ୟକ୍ଷା ପଦରେ ଅବସ୍ଥାପିତ କରାଇଥିଲେ। ତାଙ୍କ ସମୟରେ ଓଡ଼ିଶା ସାହିତ୍ୟ ଏକାଡେମୀର ଅଧ୍ୟକ୍ଷା ଥିଲେ ମନୋରମା ମହାପାତ୍ର। କିରଣବାଳା ମଙ୍ଗରାଜଙ୍କୁ ମଧ୍ୟ ସେ ଭୁବନେଶ୍ୱର ମ୍ୟୁନିସିପାଲିଟିର ଚେୟାରମ୍ୟାନ୍ କରାଇଥିଲେ।

ଝିଅମାନଙ୍କୁ ଶାଶୁ ଘରେ ଦିଆଯାଉଥିବା ଯନ୍ତ୍ରଣା ଶୁଣି ସେ ସହିପାରୁ ନ ଥିଲେ। ତେଣୁ ଅଭିଯୁକ୍ତଙ୍କୁ ତୁରନ୍ତ ଦଣ୍ଡ ଦେବା ସପକ୍ଷରେ ସେ ଥିଲେ। ବୋହୂମାନଙ୍କୁ ଶାଶୁଘରେ ଯନ୍ତ୍ରଣା ଦିଆଯାଉଥିବା ପଛରେ ଶାଶୁ, ନଣନ୍ଦମାନଙ୍କର ସଂପୃକ୍ତି ଥିବାର ଲକ୍ଷ୍ୟ କରି 'ଶାଶୁକୁ ହାତକଡ଼ି ଓ ନଣନ୍ଦ ଗୋଡ଼ରେ ବେଡ଼ି' ବନ୍ଧା ହେଉ ବୋଲି ସେ ନିର୍ଦ୍ଦେଶ ଦେଇଥିଲେ।

ବିଜୁବାବୁ ମହିଳାମାନଙ୍କର କେବଳ ଅର୍ଥନୈତିକ, ରାଜନୈତିକ ସଶକ୍ତିକରଣ ଚାହୁଁ ନ ଥିଲେ, ସେମାନଙ୍କୁ ସାମାଜିକ କ୍ଷେତ୍ରରେ ସଶକ୍ତ କରିବାକୁ ମଧ୍ୟ ଚାହୁଁଥିଲେ। ଆର୍ଥିକ ସ୍ୱଚ୍ଛଳ ଥିବା ଝିଅଙ୍କ ବାପା ମା' ନିଜର ବଡ଼ଲୋକୀ ଦେଖାଇବାକୁ ବହୁ ଆଡ଼ମ୍ବରରେ ଝିଅମାନଙ୍କର ବିବାହ କରାନ୍ତି ଏବଂ ମୂଲ୍ୟବାନ ଉପଢୌକନ ପ୍ରଦାନ କରନ୍ତି, ଯେଉଁଟାକି ପ୍ରକାରାନ୍ତରେ ଯୌତୁକ ପ୍ରଥାକୁ ପ୍ରୋତ୍ସାହିତ କରେ। ବିଜୁବାବୁ ଏହି ବିବାହ ଖର୍ଚ୍ଚ ୨୫ ହଜାର ମଧ୍ୟରେ ସୀମିତ ରଖିବାକୁ ପ୍ରଶାସନିକ ନିର୍ଦ୍ଦେଶ ଦେଇଥିଲେ। କିନ୍ତୁ ଏହା କାର୍ଯ୍ୟକାରୀ ହୋଇପାରିଲା ନାହିଁ।

ବିଜୁବାବୁ ତାଙ୍କ ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀତ୍ୱ ସମୟରେ ନାରୀମାନଙ୍କର ମର୍ଯ୍ୟାଦା ତଥା ଗୁରୁତ୍ୱ ବଢ଼ାଇବା ପାଇଁ ବିଦ୍ୟାଳୟରେ ପିଲାମାନଙ୍କର ନାମ ଲେଖାବେଳେ ବାପାଙ୍କ ନାମ ସହିତ ମାଆଙ୍କ ନାମ ମଧ୍ୟ ଲେଖାଯିବାକୁ ବାଧ୍ୟତାମୂଳକ କରାଇଥିଲେ। ବୋର୍ଡ଼ ସାର୍ଟିଫିକେଟରେ ମଧ୍ୟ ମା'ଙ୍କ ନାମ ଲେଖାଯିବାକୁ ନିର୍ଦ୍ଦେଶ ଦେଇଥିଲେ।

Digitized by srujanika@gmail.com

୧୯୯୩ ମସିହାର ଘଟଣା। ବିଜୁବାବୁ ଖବର ପାଇଲେ ଆଦିବାସୀ ବହୁଳ କଳାହାଣ୍ଡି ଜିଲ୍ଲାର ବିଶ୍ୱନାଥପୁରଠାରେ ମାର୍ଚ୍ଚ ୮, ୯ ଓ ୧୦ ତାରିଖରେ କେତେକ ଆଦିବାସୀ ମହିଳା ମଦକୁ ବିରୋଧ କରି ଗୋଟିଏ ସଭା କରିଛନ୍ତି। ଏଇ ସଭାର ସୂତ୍ରଧର ଥିଲେ ଦୁଇଜଣ ବୟସ୍କା ଆଦିବାସୀ ମହିଳା-ସୁମନୀ ଝୋଡ଼ିଆ ଓ ଅନ୍ଧାରୀ ମାଝି। ବିଜୁବାବୁ ଏହା ଶୁଣିଲା ପରେ ଏଇ ଅଶିକ୍ଷିତ ଆଦିବାସୀ ମହିଳାମାନଙ୍କୁ ଆଲୋଚନାକୁ ଡକାଇଥିଲେ। ସୁମନୀ ଓ ଅନ୍ଧାରୀ ଗୋଟିଏ ପ୍ରତିନିଧି ଦଳରେ ଭୁବନେଶ୍ୱର ଆସି ବିଜୁବାବୁଙ୍କୁ ସଚିବାଳୟର ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟରେ ସାକ୍ଷାତ କଲେ। ବିଜୁବାବୁ ସେମାନଙ୍କୁ ମିଳିମିଶି ମଦଭାଟିଗୁଡ଼ିକୁ ଚଢ଼ାଉ କରିବାକୁ ଓ ମଦରନ୍ଧା ସାମଗ୍ରୀକୁ ନଷ୍ଟ କରିଦେବାକୁ ପରାମର୍ଶ ଦେଇଥିଲେ। ବିଜୁବାବୁ ସେମାନଙ୍କ ସହିତ ବିଶଦ ଆଲୋଚନା କଲାପରେ ଆଠଜଣ ଆଦିବାସୀ ମହିଳାଙ୍କୁ ତାଙ୍କର ପରାମର୍ଶଦାତ୍ରୀ ଭାବେ ନିଯୁକ୍ତି ଦେଇଥିଲେ। ସେମାନେ ହେଲେ ରାୟଗଡ଼ାର କାଶୀପୁର ବ୍ଲକର ସୁମନୀ ଝୋଡ଼ିଆ, ଅନ୍ଧାରୀ ମାଝି, ସବାଇ ମାଝି, କଳାହାଣ୍ଡିର ମିଲି ମାଝି, ଢେଙ୍କାନାଳର ସବାସୁଣି ଡାକୁଆ, କନ୍ଧମାଳର ସୁରଜ ନାଏକ ଓ ସୁନ୍ଦରଗଡ଼ର କୁମୁଦିନୀ କେରକେଟା। ସେମାନଙ୍କ ସୁରକ୍ଷା ଓ କାମ କରିପାରିବାର ଦକ୍ଷତା ପାଇଁ ବିଜୁବାବୁ ସେମାନଙ୍କୁ ପୋଲିସ ସହାୟତା ମଧ୍ୟ ଯୋଗାଇ ଦେଇଥିଲେ। ବିଜୁବାବୁ ଅନୁଭବ କରିଥିଲେ ଯେ ମଦ ଆଦିବାସୀ ପରିବାରରେ ଗଣ୍ଡଗୋଳ ଓ ଅଶାନ୍ତିର ପ୍ରଧାନ କାରଣ। ତେଣୁ ୧୯୯୪ ଏପ୍ରିଲ ପହିଲାରୁ ସମଗ୍ର ଓଡ଼ିଶାରେ ଦେଶୀ ମଦ ଦୋକାନ ବନ୍ଦ କରାଯିବାର ନିୟମ କରିଥିଲେ। ଏହାଦ୍ୱାରା ସରକାରଙ୍କ ରାଜସ୍ୱ ହାନୀର ଆଶଙ୍କା ଥିଲେ ମଧ୍ୟ ତାକୁ ସେ ଖାତିର କରିନଥିଲେ।

ମହିଳାମାନଙ୍କୁ ପୋଲିସ ବାହିନୀରେ ଯୋଗଦେବାକୁ ସେ ସବୁବେଳେ ଉତ୍ସାହିତ କରୁଥିଲେ। ପୋଲିସ ବାହିନୀରେ ହୋମ୍‌ଗାର୍ଡ଼ ଓ ମହିଳା ଏସ୍‌ଆଇମାନଙ୍କୁ ନିଯୁକ୍ତି ଦେବାକୁ ତତ୍‌କାଳୀନ ଡିଜି ଘୋର ବିରୋଧ କରୁଥିଲେ। କିନ୍ତୁ ଦୂରଦର୍ଶୀ ବିଜୁବାବୁ ଏହାକୁ କାର୍ଯ୍ୟକାରୀ କରାଇଥିଲେ। ମହିଳାମାନଙ୍କ ପ୍ରତି ହେଉଥିବା ଅପରାଧ, ନିର୍ଯାତନାର ନିୟନ୍ତ୍ରଣ ପାଇଁ ସେ 'ସ୍ୱତନ୍ତ୍ର ମହିଳା ଥାନା' ପ୍ରତିଷ୍ଠା କରିଥିଲେ। ମହିଳାମାନଙ୍କ ଆର୍ଥିକ ଅଭିବୃଦ୍ଧି ପାଇଁ ସେ 'ସ୍ୱତନ୍ତ୍ର ମହିଳା ବ୍ୟାଙ୍କ' ସ୍ଥାପନ କରିଥିଲେ। 'ମହିଳା ସମବାୟ ବିକାଶ ନିଗମ' ଗଠନ ବିଜୁବାବୁଙ୍କର ଅନ୍ୟ ଏକ ବଳିଷ୍ଠ ପଦକ୍ଷେପ ଥିଲା। ଏହାଦ୍ୱାରା ଅନେକ ମହିଳା ନିଯୁକ୍ତି ପାଇ ଉପକୃତ ହୋଇଥିଲେ। ମହିଳାମାନଙ୍କୁ

Digitized by srujanika@gmail.com

ଅତ୍ୟାଚାରରୁ ରକ୍ଷା କରିବା ପାଇଁ ସେ 'ରାଜ୍ୟ ମହିଳା କମିଶନ' ଗଠନ କରିଥିଲେ। ବିଜୁବାବୁ ମହିଳାମାନଙ୍କ ଉପରେ ହେଉଥିବା ଅତ୍ୟାଚାର ବନ୍ଦ କରିବାକୁ ମହିଳା କମିଶନ ହାତରେ ନ୍ୟାୟିକ କ୍ଷମତା ଅର୍ପଣ କରି ଏହି କମିଶନକୁ ସୁଦୃଢ଼ କରିଥିଲେ। ତାଙ୍କ ଦ୍ୱାରା ପ୍ରତିଷ୍ଠିତ ମହିଳା କମିଶନ ଯୋଗୁଁ ହଜାର ହଜାର ଦୁର୍ଗତ ମହିଳା ସାମାଜିକ ଓ ପାରିବାରିକ କ୍ଷେତ୍ରରେ ପୁନର୍ଜୀବନ ପାଇବାକୁ ସକ୍ଷମ ହୋଇଛନ୍ତି।

ସରକାରୀ ଜମି ଲିଜ୍ ଦିଆଯିବାବେଳେ ସେଥିରେ ଉଭୟ ସ୍ୱାମୀ ଓ ସ୍ତ୍ରୀଙ୍କ ନାମ ରହିବାପାଇଁ ସେ ବିଜ୍ଞପ୍ତି ପ୍ରକାଶ କରାଇଥିଲେ। ଅର୍ଥନୈତିକ ସ୍ୱାଧୀନତା ବିନା ନାରୀ ପ୍ରଗତି ଅସମ୍ଭବ ବୋଲି ସେ ଉପଲବ୍ଧି କରିଥିଲେ। ସେ ମହିଳାମାନଙ୍କ ପାଇଁ ସରକାରୀ ଚାକିରି ଓ ସରକାରୀ ନିଗମଗୁଡ଼ିକରେ ସ୍ଥାନ ସଂରକ୍ଷଣ କରିଥିଲେ। ଏହିଭଳି ବିଜୁବାବୁ ନାରୀ ସଶକ୍ତିକରଣ ଦିଗରେ ଅଭିନବ ପଦକ୍ଷେପସବୁ ନେଇଥିଲେ।

ଗାନ୍ଧିଜୀ କହୁଥିଲେ, "ଜଣେ ପୁରୁଷ ଶିକ୍ଷିତ ହେଲେ ଗୋଟିଏ ବ୍ୟକ୍ତି ଶିକ୍ଷିତ ହେବ। ଗୋଟିଏ ନାରୀ ଶିକ୍ଷିତ ହେଲେ ଗୋଟିଏ ପରିବାର ଶିକ୍ଷିତ ହେବ।" ବିଜୁବାବୁ ମଧ୍ୟ ନାରୀଶିକ୍ଷା ପ୍ରତି ଗୁରୁତ୍ୱ ଆରୋପ କରୁଥିଲେ। ବିଜୁ ପଟ୍ଟନାୟକ କର୍ମଜୀବୀ ମହିଳାଙ୍କ ପାଇଁ ପ୍ରସବକାଳୀନ ଛୁଟି ଘୋଷଣା କରିଥିଲେ।

ବିଜୁବାବୁ ନାରୀନେତ୍ରୀମାନଙ୍କୁ ବହୁ ସମ୍ମାନ ଦେଖାଉଥିଲେ। ସରଳାଦେବୀ, ମାଳତୀଦେବୀ, ରମାଦେବୀ, ଅନ୍ନପୂର୍ଣ୍ଣା ମହାରଣା, ପାର୍ବତୀ ଗିରି ପ୍ରମୁଖ ମହିଳାଙ୍କ ଆଦର୍ଶରେ ଅନୁପ୍ରାଣିତ ହେବାକୁ ସଭା ସମିତିରେ ମହିଳାମାନଙ୍କୁ ଉତ୍ସାହିତ କରୁଥିଲେ। ଆଜି ତାଙ୍କର ପୁତ୍ର ନବୀନ ପଟ୍ଟନାୟକଙ୍କ ଉଦ୍ୟମ ଯୋଗୁଁ 'ମିଶନ୍‌ଶକ୍ତି' ଜରିଆରେ ନାରୀ ସଶକ୍ତିକରଣର ପ୍ରକ୍ରିୟା ତ୍ୱରାନ୍ୱିତ ହୋଇଛି।

ଓଡ଼ିଶାରେ ନାରୀମାନଙ୍କ ବିକାଶ ଓ ସଶକ୍ତିକରଣ ପ୍ରକ୍ରିୟାରେ ବିଜୁବାବୁଙ୍କ ଉଦ୍ୟମକୁ କେହି ଭୁଲି ପାରିବେ ନାହିଁ। ବିଭିନ୍ନ କ୍ଷେତ୍ରରେ ନାରୀମାନଙ୍କର ସକ୍ରିୟ ଅଂଶଗ୍ରହଣ ଓ ସଶକ୍ତିକରଣ ତାଙ୍କର ଆହ୍ୱାନ ଯୋଗୁଁ ସମ୍ଭବ ହୋଇପାରିଛି।

- ୦ -

Digitized by srujanika@gmail.com

# ବିଜୁବାବୁ ଓ ପଞ୍ଚାୟତିରାଜ ବ୍ୟବସ୍ଥା

ଗ୍ରାମ-ସ୍ୱରାଜ କଥା ଉଠିଲେ ଯେମିତି ମହାତ୍ମାଗାନ୍ଧିଙ୍କ କଥା ମନେପଡ଼େ, ସେହିପରି ପଞ୍ଚାୟତିରାଜ ବ୍ୟବସ୍ଥା କଥା ପଡ଼ିଲେ ଆମେ ବିଜୁବାବୁଙ୍କୁ ମନେପକାଉ। ସ୍ୱରାଜର ଅର୍ଥ ହେଲା ନିଜଦ୍ୱାରା ଶାସନ ବା self rule। ଏହି ଗ୍ରାମ-ସ୍ୱରାଜର କଥା ଯଦିଓ ମହର୍ଷି ଦୟାନନ୍ଦ ସରସ୍ୱତୀ ୧୮୮୬ ମସିହାରେ କହିଥିଲେ, ତେବେ ପରବର୍ତ୍ତୀ ସମୟରେ ଦେଶକୁ ପରାଧୀନତାରୁ ମୁକ୍ତ କରିବା ପାଇଁ ଗାନ୍ଧିଜୀ ଏହି 'ସ୍ୱରାଜ' ସ୍ଲୋଗାନକୁ ବ୍ରିଟିଶ ଶାସନ ବିରୋଧରେ ପ୍ରୟୋଗ କରି ସଫଳ ହୋଇଥିଲେ। ଗାନ୍ଧିଜୀଙ୍କ ଏହି ସ୍ୱରାଜ ପରିକଳ୍ପନାରେ ବିଜୁବାବୁ ଗଭୀର ଭାବରେ ପ୍ରଭାବିତ ହୋଇଥିଲେ।

ବିଜୁବାବୁ ଥିଲେ ପଞ୍ଚାୟତରାଜ ବ୍ୟବସ୍ଥାର ଆଦ୍ୟପ୍ରବକ୍ତା। ୧୯୬୧ ମସିହାରେ ବିଜୁବାବୁ ଯେତେବେଳେ ପ୍ରଥମଥର ପାଇଁ ମୁଖ୍ୟମନ୍ତ୍ରୀ ହେଲେ ସେହି ସମୟରେ ସେ 'ଗ୍ରାମ-ସ୍ୱରାଜ' ବ୍ୟବସ୍ଥା ଲାଗୁ କରିବାକୁ ଚାହିଁଥିଲେ। ସେ ସବୁବେଳେ କହୁଥିଲେ କ୍ଷମତାର ବିକେନ୍ଦ୍ରୀକରଣ ହେଉ। ଗୋଟିଏ ଜାଗାରେ ବା ଗୋଟିଏ ବ୍ୟକ୍ତି ପାଖରେ ସମସ୍ତ କ୍ଷମତା କେନ୍ଦ୍ରୀଭୂତ ହୋଇ ରହିଲେ ତଳସ୍ତରରେ ରହୁଥିବା ଲୋକଙ୍କ ପାଖରେ ସରକାରୀ ସେବା ପହଞ୍ଚିପାରିବ ନାହିଁ। ତା'ଛଡ଼ା ସେ ବୁଝିଥିଲେ ଗ୍ରାମାଞ୍ଚଳରେ ରହୁଥିବା ଲୋକେ ଗ୍ରାମ-ସ୍ୱରାଜ ମାଧ୍ୟମରେ ନିଜ ଅଞ୍ଚଳର ବିକାଶ ନିମନ୍ତେ ଶାସନ କ୍ଷମତାରେ ଭାଗୀଦାରୀ ହେଲେ ତାହା ଅତ୍ୟନ୍ତ ଗତିଶୀଳ ହେବା ସହିତ ସ୍ୱଚ୍ଛ ମଧ୍ୟ ହେବ। ଆଉ ବିଶେଷକରି ଏହି ବ୍ୟବସ୍ଥାରେ ମହିଳାମାନଙ୍କୁ ଯଦି ଶାସନ ପରିଚାଳନାରେ ସାମିଲ କରାଯାଏ ତେବେ ଉକ୍ତ ବ୍ୟବସ୍ଥା ଅତ୍ୟନ୍ତ ସ୍ୱଚ୍ଛ ହୋଇପାରିବ। ସେଇଥିପାଇଁ ବିଜୁବାବୁ ତାଙ୍କ ପ୍ରଥମ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଓଡ଼ିଶାରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ପ୍ରଚଳନ କରିବା ସହିତ ସେଥିରେ ମହିଳାମାନଙ୍କ ନିମନ୍ତେ ଏକତୃତୀୟାଂଶ ସ୍ଥାନ ସଂରକ୍ଷଣ କରିବାକୁ ଚାହିଁଥିଲେ। ତେବେ 'କାମରାଜ ଯୋଜନା'ରେ ବିଜୁବାବୁ ମାତ୍ର ଦୁଇବର୍ଷ ଚାରିମାସ କ୍ଷମତାରେ ରହିବା ପରେ ୨ ଅକ୍ଟୋବର ୧୯୬୩ରେ ଇସ୍ତଫା ଦେଇଥିଲେ। ଫଳରେ ତାଙ୍କର ଏହି ମହତ୍‌ଆକାଂକ୍ଷା କାର୍ଯ୍ୟକାରୀ ହୋଇ ପାରି ନ ଥିଲା।

Digitized by srujanika@gmail.com

୧୯୯୦ ମସିହାରେ ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀ ହେବାପରେ ବିଜୁବାବୁ ରାଜ୍ୟରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା କାର୍ଯ୍ୟକାରୀ କରିଥିଲେ। ଏହା ଥିଲା ବିଜୁବାବୁଙ୍କର ଏକ ଐତିହାସିକ ପଦକ୍ଷେପ। ସମାଜର ସବୁସ୍ତରର ଏବଂ ସବୁବର୍ଗର ଲୋକଙ୍କୁ ରାଜ୍ୟର ଉନ୍ନତିରେ ଭାଗୀଦାରୀ କରାଇବାର ଏହା ଥିଲା ତାଙ୍କର ସ୍ୱପ୍ନ। ବିଜୁବାବୁଙ୍କର ଗଣତନ୍ତ୍ର ଉପରେ ପ୍ରବଳ ଆସ୍ଥା ରହିଥିଲା। ସେ ଥିଲେ ବାସ୍ତବରେ ଜନନେତା। ସମାଜର ପ୍ରତିଟି ସମସ୍ୟା ପ୍ରତି ସେ ବେଶ୍ ସଚେତନ ଥିଲେ। ତେଣୁ ସାଧାରଣ ଲୋକଙ୍କର ଆର୍ଥିକ ମାନଦଣ୍ଡର ଉନ୍ନତି ଆଣିବା ପାଇଁ ସେ ପ୍ରତ୍ୟେକ ପଞ୍ଚାୟତରେ ଛୋଟ ଛୋଟ ଗ୍ରାମ୍ୟଶିଳ୍ପମାନ ପ୍ରତିଷ୍ଠା କରାଇଥିଲେ। ଯାହା ମାଧ୍ୟମରେ କୁଶଳୀ କାରିଗରମାନେ ସେଥିରେ କର୍ମନିଯୁକ୍ତି ପାଇବା ସହିତ ତାଙ୍କର ଆର୍ଥିକ ମାନଦଣ୍ଡରେ ମଧ୍ୟ ଉନ୍ନତି ଆଣିବାକୁ ସକ୍ଷମ ହୋଇପାରିଥିଲେ।

ବିଜୁବାବୁ ତୃଣମୂଳସ୍ତରରେ ଏହିସବୁ ବାସ୍ତବତାକୁ ଭଲଭାବରେ ଉପଲବ୍ଧି କରିଥିଲେ, ଯାହାଫଳରେ ଦୀର୍ଘଦିନର ସ୍ଥାଣୁତାକୁ ଦୂର କରି ପଞ୍ଚାୟତରାଜ ଭଳି ବ୍ୟବସ୍ଥାକୁ କାର୍ଯ୍ୟକାରୀ କରାଇ ଏକ ଜନମଙ୍ଗଳକାରୀ ରାଷ୍ଟ୍ର ଗଠନ କରିବାପାଇଁ ବଦ୍ଧପରିକର ହୋଇଥିଲେ। ତେବେ ଦୀର୍ଘଦିନରୁ ଚାଲିଆସିଥିବା କୁ-ଶାସନ ଓ ଭ୍ରଷ୍ଟାଚାର ଦୂରକରି ଏଭଳି ଏକ ମହତ ଉଦ୍ଦେଶ୍ୟକୁ କାର୍ଯ୍ୟକାରୀ କରିବା ତାଙ୍କ ପକ୍ଷରେ ଅତ୍ୟନ୍ତ କଷ୍ଟସାଧ ହୋଇଥିଲା। ମାତ୍ର ଦୃଢ଼ ରାଜନୈତିକ ଇଚ୍ଛାଶକ୍ତି ବଳରେ ବିଜୁବାବୁ ଓଡ଼ିଶାରେ ଏକ ଜନକଲ୍ୟାଣକାରୀ ସାମାଜିକ ବ୍ୟବସ୍ଥାର ଦୃଢ଼ ମୂଳଦୁଆ ରଖିବା ପାଇଁ 'ଓଡ଼ିଶା ପଞ୍ଚାୟତରାଜ ଆଇନ' ନୂତନ ଢଙ୍ଗରେ ପ୍ରଣୟନ କରିବାରେ ସକ୍ଷମ ହୋଇପାରିଥିଲେ। ୧୯୯୧ ମସିହାରେ 'ଓଡ଼ିଶା ଗ୍ରାମ ପଞ୍ଚାୟତ (ସଂଶୋଧନ) ଆଇନ', 'ଓଡ଼ିଶା ପଞ୍ଚାୟତ ସମିତି (ସଂଶୋଧନ) ଆଇନ', ଏବଂ 'ଓଡ଼ିଶା ଜିଲ୍ଲା ପରିଷଦ ଆଇନ୍' ବିଧାନସଭାରେ ଗୃହୀତ କରାଇଥିଲେ। ଏହି ନିୟମର ଗୁରୁତ୍ୱକୁ ଉପଲବ୍ଧି କରି ଭାରତ ସରକାର '୭୩ତମ ସମ୍ବିଧାନ ସଂଶୋଧନ-୧୯୯୨' ମାଧ୍ୟମରେ ସମଗ୍ର ଦେଶରେ ଏହାକୁ ଲାଗୁ କରାଇଥିଲେ ଏବଂ ୧୯୯୩ ମସିହା ଏପ୍ରିଲ ୨୪ ତାରିଖରୁ ଏହା କାର୍ଯ୍ୟକାରୀ ହୋଇଥିଲା।

ଏହି ନୂତନ ବ୍ୟବସ୍ଥାର ସର୍ବଶ୍ରେଷ୍ଠ ଉପଲବ୍ଧିଟି ହେଉଛି ମହିଳାମାନଙ୍କ ପାଇଁ ଏକତୃତୀୟାଂଶ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା। ସାଧାରଣବର୍ଗର ଆସନ ସମେତ ଅନୁସୂଚିତ ଜାତି ଓ ଜନଜାତିମାନଙ୍କ ପାଇଁ ଉଦ୍ଦିଷ୍ଟ ସଂରକ୍ଷଣ ବ୍ୟବସ୍ଥା ଭିତ୍ତିରେ ବି ସେହି ଜାତି

Digitized by srujanika@gmail.com

ଓ ଜନଜାତିର ମହିଳାମାନଙ୍କ ପାଇଁ ମଧ୍ୟ ଏକତୃତୀୟାଂଶ ଆସନ ସଂରକ୍ଷଣ କରାଗଲା। ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାରେ ଗୋଟିଏ ଜିଲ୍ଲାକୁ ବିଭିନ୍ନ ଜୋନ୍‌ରେ ବିଭକ୍ତ କରି, ପ୍ରତି ଜୋନ୍‌ରୁ ଜଣେ ଜଣେ ସଭ୍ୟ ନିର୍ବାଚିତ ହୋଇ ଶେଷରେ ଜିଲ୍ଲା ପରିଷଦର ସଭାପତି, ଉପ-ସଭାପତି ନିର୍ବାଚିତ କରିବା, ପ୍ରତି ଜିଲ୍ଲାରେ ଜିଲ୍ଲା ପରିଷଦର ସଭାପତି ପଦବୀ ମଧ୍ୟ ସାଧାରଣବର୍ଗର ମହିଳା, ସଂରକ୍ଷଣବର୍ଗର ମହିଳାଙ୍କ ପାଇଁ ସଂରକ୍ଷଣ କରାଇବା, ସଭାପତି ପଦ ସଂରକ୍ଷିତ ହୋଇ ନ ଥିଲେ ବି ମହିଳାଟିଏ ପୁରୁଷ ସହିତ ପ୍ରତିଦ୍ୱନ୍ଦ୍ୱିତାରେ ଅବତୀର୍ଣ୍ଣ ହେବାର ବାଧା ନ ଥିବା ଓ ଯଦି ସଭାପତି ପୁରୁଷ ହୋଇଥାନ୍ତି ତେବେ ଉପ-ସଭାପତି ମହିଳା ହେବେ, ଏ ବ୍ୟବସ୍ଥା ଜିଲ୍ଲା ପରିଷଦ ପରି ପଞ୍ଚାୟତସମିତି ଓ ପଞ୍ଚାୟତରେ ମଧ୍ୟ ପ୍ରବର୍ତ୍ତିତ ହୋଇ ସମିତି ଅଧ୍ୟକ୍ଷ, ଉପାଧ୍ୟକ୍ଷଙ୍କଠାରୁ ସରପଞ୍ଚ, ନାଏବ ସରପଞ୍ଚ ନିର୍ବାଚନ ଯାଏ ଅନୁସୃତ ହେଲା। ଏହି ବ୍ୟବସ୍ଥା ଆଜି ମଧ୍ୟ ବଳବତ୍ତର ରହିଛି। ଏହି ବ୍ୟବସ୍ଥା ଓଡ଼ିଶାରେ ପ୍ରବର୍ତ୍ତିତ ହେବାପରେ ତାକୁ ଭାରତର ପ୍ରାୟ ସମସ୍ତ ପ୍ରଦେଶ ଅନୁସରଣ କରୁଛନ୍ତି।

୧୯୯୨ ପଞ୍ଚାୟତ ନିର୍ବାଚନରେ ବିଜୁବାବୁ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲେ। ପଞ୍ଚାୟତରାଜର ବିଧିବ୍ୟବସ୍ଥାରେ ମହିଳାମାନଙ୍କ ପାଇଁ ସବୁକ୍ଷେତ୍ରରେ ଏକତୃତୀୟାଂଶ ସ୍ଥାନ ସଂରକ୍ଷଣ କରିଥିଲେ। ସେ ଭାରତର ପ୍ରଥମ ମୁଖ୍ୟମନ୍ତ୍ରୀ ଯିଏ ଏହି ବ୍ୟବସ୍ଥାର ପ୍ରଚଳନ ଆରମ୍ଭ କରିଥିଲେ। ୧୯୯୩ ମସିହା ମାର୍ଚ୍ଚ ୫ ତାରିଖ (ବିଜୁବାବୁଙ୍କ ଜନ୍ମଦିନ)ରେ ଭୁବନେଶ୍ୱରରେ ବିଶାଳ ପଞ୍ଚାୟତରାଜ ସମ୍ମିଳନୀ କରିଥିଲେ ଏବଂ ଏହି ଅବସରରେ ମାର୍ଚ୍ଚ ପାଞ୍ଚ ତାରିଖକୁ 'ପଞ୍ଚାୟତରାଜ ଦିବସ' ବୋଲି ଘୋଷଣା କରିଥିଲେ। ସେହିଦିନଠାରୁ ପ୍ରତିବର୍ଷ ରାଜ୍ୟରେ ପଞ୍ଚାୟତରାଜ ଦିବସ ପାଳନ କରାଯାଉଛି।

ବିଜୁ ପଟ୍ଟନାୟକ ଏହି ପଞ୍ଚାୟତରାଜ ସମ୍ମିଳନୀରେ ଦେଇଥିବା ଭାଷଣ ନିମ୍ନରେ ଉଲ୍ଲେଖ କରାଗଲା–

ପଞ୍ଚାୟତ ସମିତି ଓ ଗ୍ରାମ ପଞ୍ଚାୟତ ସଭ୍ୟ, ସଭ୍ୟାବୃନ୍ଦ !

ବହୁତ ଦିନ ତଳେ ମୁଁ ଗୋଟିଏ ନୂଆ ଭାରତବର୍ଷର ସ୍ୱପ୍ନ ଦେଖୁଥିଲି। ମୋ ସ୍ୱପ୍ନର ଭାରତରେ ଗଣତନ୍ତ୍ର କେଇଜଣ କୁହାଳିଆ ବା ତଥାକଥିତ ବୁଦ୍ଧିଜୀବୀଙ୍କ ବିଳାସ ହୋଇ ରହିନଥାନ୍ତା। ମୁଁ ସ୍ୱପ୍ନ ଦେଖୁଥିଲି ଏପରି ଏକ ଭାରତବର୍ଷ ଯେଉଁଠାରେ ଗଣତନ୍ତ୍ର କେବଳ ନିର୍ବାଚନସର୍ବସ୍ୱ ହେବ ନାହିଁ। ଏହା ହେବ ଲୋକଙ୍କୁ ପ୍ରତ୍ୟେକ

Digitized by srujanika@gmail.com

କ୍ଷେତ୍ରରେ ଘନିଷ୍ଠଭାବେ ଜଡ଼ିତ କରାଇବାର ଏକ ମାଧ୍ୟମ। ଗାଁଗଣ୍ଡା ହେଉଛି ଭାରତର ଆତ୍ମା। ମୋ ସ୍ୱପ୍ନର ଭାରତରେ ଗାଁ ଗହଳିରୁ ହିଁ ଗଣତନ୍ତ୍ର ଆରମ୍ଭ ହୋଇ କ୍ରମଶଃ ଉପରକୁ ପ୍ରସାରିତ ହୋଇଥାନ୍ତି।

୩୨ ବର୍ଷ ତଳେ ମୋତେ ଓଡ଼ିଶାର ଜନସାଧାରଣଙ୍କ ଅଭୂତପୂର୍ବ ସମର୍ଥନ ମିଳିଥିଲା। ସେତେବେଳେ ମୁଁ ଗଣତନ୍ତ୍ରରେ ଲୋକଙ୍କୁ ସଂଶ୍ଳିଷ୍ଟ କରି ରାଜ୍ୟର ପ୍ରତ୍ୟେକଟି ଗ୍ରାମକୁ ନୂଆକରି ଗଢ଼ିବାର ପ୍ରକ୍ରିୟା ଆରମ୍ଭ କରିଥିଲି। ଏଥିପାଇଁ ଅନେକଗୁଡ଼ିଏ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା ଏବଂ ଲୋକହାତରେ କ୍ଷମତା ଓ ଦାୟିତ୍ୱ ଦେବା ପାଇଁ ଅନେକ ନୂଆ ଆଇନ ମଧ୍ୟ ତିଆରି କରାଯାଇଥିଲା। ଷଷ୍ଠ ଦଶକରେ ରାଜନୈତିକ ଝଡ଼ଝଞ୍ଜାରେ ସେ ସ୍ୱପ୍ନକୁ ସାକାର କରିବାର କାର୍ଯ୍ୟ ଅସମାପ୍ତ ରହିଯାଇଥିଲା। ଆଜି ମୁଁ ଯେତେବେଳେ ପଛକୁ ଫେରି ଚାହୁଁଛି, ମୋତେ କିଛିଟା ହତାଶ, କିଛିଟା ବାକି ରହିଥିବା କାମ ଓ କିଛିଟା ପୂରା ହୋଇ ନଥିବା ପ୍ରତିଶ୍ରୁତି ଅସ୍ତବ୍ୟସ୍ତ କରୁଛି।

ଆପଣମାନଙ୍କର ନାହିଁ ନଥିବା ସମର୍ଥନ ପାଇଁ ଦ୍ୱିତୀୟ ଥର ପାଇଁ ଆମେ ସମସ୍ତେ ଆମର ଜୟଯାତ୍ରା ଆରମ୍ଭ କରିଛୁ ଗ୍ରାମପଞ୍ଚାୟତ ଓ ପଞ୍ଚାୟତ ସମିତି ସମ୍ପର୍କରେ ପ୍ରଚଳିତ ଆଇନକୁ ସଂଶୋଧନ କରାଯାଇ ତ୍ରିସ୍ତରୀୟ ବ୍ୟବସ୍ଥା ପ୍ରବର୍ତ୍ତନ କରିବା ପାଇଁ ଏକ ସମ୍ପୂର୍ଣ୍ଣ ନୂଆ ଆଇନ ପ୍ରଣୟନ କରାଯାଇଛି। ଗ୍ରାମପଞ୍ଚାୟତ ଓ ପଞ୍ଚାୟତ ସମିତିଗୁଡ଼ିକ ପାଇଁ ନିର୍ବାଚନ ଶେଷ ହୋଇଛି। ପରିଷଦ ପାଇଁ ଖୁବ୍ ଶୀଘ୍ର ନିର୍ବାଚନ କରାଯିବ।

ସେ ସମୟ ଓ ଆଜି ଭିତରେ ଅନେକଟା ତଫାତ ଆପଣମାନେ ଲକ୍ଷ୍ୟ କରୁଥିବେ। ଏହି ପରିବର୍ତ୍ତନର ଆହ୍ୱାନ ହେଉଛି– ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ ଅଧିକ ପ୍ରତିନିଧିମୂଳକ କରିବା, ସେଗୁଡ଼ିକୁ ଅଧିକ କାର୍ଯ୍ୟକାଳ ଦେବା ଓ ସେଥିପାଇଁ ଅଧିକ ସମ୍ବଳର ବ୍ୟବସ୍ଥା କରିବା। କାରଣ ଆମର ଅନୁଷ୍ଠାନଗୁଡ଼ିକ ଅଧିକ ଦକ୍ଷ, ସକ୍ରିୟ ଓ ମଜବୁତ ନହେଲେ ଉନ୍ନୟନ ଯୋଜନା କରିବା ଓ ଜନସହଯୋଗ ମାଧ୍ୟମରେ ସେଗୁଡ଼ିକୁ ଠିକ୍ ରୂପେ କାର୍ଯ୍ୟକାରୀ କରାଇବା ମୁସ୍କିଲ୍ ହେବ। ଏହି ପରିବର୍ତ୍ତନ ମାଧ୍ୟମରେ ଆମେ ବଡ଼ ବଡ଼ କଥା ଅପେକ୍ଷା ପ୍ରକୃତ କାମ କରିପାରିବା। ଆମେ କେବଳ କାମ ହିଁ ଚାହୁଁ। ଆପଣମାନଙ୍କ ଭିତରୁ ଅନେକ ପ୍ରଶ୍ନ କରୁଛନ୍ତି– ମୋର କ୍ଷମତା କ'ଣ ? ମୋର କାମ କ'ଣ ? କୌଣସି ବ୍ୟକ୍ତିବିଶେଷକୁ କ୍ଷମତା ଦିଆଯାଏ ନାହିଁ। କ୍ଷମତା ଦିଆଯାଏ ଏକ ପ୍ରତିନିଧିମୂଳକ ବ୍ୟବସ୍ଥାକୁ। ପଞ୍ଚାୟତିରାଜ ବ୍ୟବସ୍ଥା

Digitized by srujanika@gmail.com

ଏକ ପ୍ରତିନିଧିମୂଳକ ବ୍ୟବସ୍ଥା ହୋଇଥିବାରୁ ସ୍ୱାସ୍ଥ୍ୟ, ଶିକ୍ଷା, ସମାଜମଙ୍ଗଳ, ଦାରିଦ୍ର୍ୟ ଦୂରୀକରଣ, ବୃକ୍ଷରୋପଣ, ପରିବେଶ, କୃଷି, ପଶୁପାଳନ, ଜଳସେଚନ ଏବଂ ରାସ୍ତାଘାଟ ଆଦି ବିଷୟରେ ନିଷ୍ପତ୍ତି ନେବାର କ୍ଷମତା ଆଦି ଏହି ସଂସ୍ଥା ଉପରେ ନ୍ୟସ୍ତ କରାଯାଇଛି । ଏହି ସମ୍ମିଳନୀ ଉପଲକ୍ଷେ ଆପଣମାନଙ୍କୁ ଯେଉଁ ପୁସ୍ତିକାସବୁ ଦିଆଯାଇଛି, ସେଥିରୁ ଭଲଭାବେ ଜଣାଯିବ ଯେ, ଯୋଜନା ତିଆରି କରିବା, ତାକୁ କାର୍ଯ୍ୟକାରୀ କରିବା ଏବଂ ଏ ସମସ୍ତ କାର୍ଯ୍ୟକୁ ତଦାରଖ ଓ ତଦ୍‌ବିର କରିବାର ଦାୟିତ୍ୱ ସବୁ ଆପଣମାନଙ୍କର ।

ଆପଣମାନେ ଯଦି ଏହି କ୍ଷମତାକୁ ବିଜ୍ଞତାର ସହିତ ବ୍ୟବହାର କରନ୍ତି, ତା'ହେଲେ ପଞ୍ଚାୟତିରାଜ ବ୍ୟବସ୍ଥା ମଜବୁତ ହେବ । କ୍ଷମତା ସାଙ୍ଗକୁ ଆମେ ସମ୍ବଳ ମଧ୍ୟ ହସ୍ତାନ୍ତର କରିବୁ । ରାଜ୍ୟସ୍ତରରୁ କିଭଳି ଭାବେ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କୁ ସମ୍ବଳ ଦିଆଯାଇପାରିବ ସେ ବିଷୟରେ ଏକ ସ୍ୱତନ୍ତ୍ର ଅର୍ଥ କମିଶନ ଟିକିନିଖି କରି ପରୀକ୍ଷା ନିରୀକ୍ଷା କରୁଛନ୍ତି । ଏହାର ସୁପାରିଶଗୁଡ଼ିକ ଖୁବ୍ ଶୀଘ୍ର ମିଳିଯିବ । ସମ୍ବଳକୁ ଚାହିଁ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କର ଦାୟିତ୍ୱ ମଧ୍ୟ ନିର୍ଦ୍ଧାରଣ କରାଯିବ ।

ଶାସନ ବ୍ୟବସ୍ଥାର ପ୍ରକୃତ ବିକେନ୍ଦ୍ରୀକରଣ ପାଇଁ ମହିଳାମାନଙ୍କୁ ସଂଶ୍ଳିଷ୍ଟ କରାଇବା ଉପରେ ମୁଁ ସଦାବେଳେ ଜୋର୍ ଦେଇଆସିଛି । ନାରୀମାନଙ୍କର ସୃଜନଶୀଳତା ଓ ଶକ୍ତିକୁ ଉପଯୋଗ କରି ତାଙ୍କର ସ୍ୱତନ୍ତ୍ର ସମସ୍ୟାଗୁଡ଼ିକ ସମାଧାନ ପାଇଁ ଏ ଯାବତ୍ କୌଣସି ବିଧିବଦ୍ଧ ଉଦ୍ୟମ ଆରମ୍ଭ ହୋଇନାହିଁ । ସେମାନେ ଏ ପର୍ଯ୍ୟନ୍ତ ସମାଜ ଓ ଶାସନର ମୁଖ୍ୟ ସ୍ରୋତକୁ ଆସିପାରି ନାହାନ୍ତି । ପୁରୁଷପ୍ରଧାନ ସମାଜରେ ସେମାନଙ୍କ ସମସ୍ୟାପ୍ରତି ଯଥାର୍ଥ ଧ୍ୟାନ ଦିଆଯାଇ ନାହିଁ । ସେମାନଙ୍କଠାରେ ଥିବା ସହୃଦୟତା, ଅନ୍ୟକୁ ପ୍ରବର୍ତ୍ତାଇବା ଓ ସମ୍ବେଦନଶୀଳତା ପ୍ରଭୃତି ଗୁଣଗୁଡ଼ିକ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକର ଗୁଣାତ୍ମକମାନ ନିଶ୍ଚିତଭାବେ ବୃଦ୍ଧି କରିବ । ବିଶେଷକରି ଶିକ୍ଷା, ସ୍ୱାସ୍ଥ୍ୟ, ବୃକ୍ଷରୋପଣ, ପରିବାର କଲ୍ୟାଣ, ମା' ଓ ଶିଶୁର ସ୍ୱାସ୍ଥ୍ୟରକ୍ଷା ଓ ପରିବେଶ ବିକାଶ ଭଳି କାମଗୁଡ଼ିକ ସେମାନଙ୍କ ଉପରେ ନ୍ୟସ୍ତ କରାଯିବା ଆବଶ୍ୟକ । ମୁଁ ଚାହେଁ, ଉପରୋକ୍ତ ବିଷୟଗୁଡ଼ିକ ପାଇଁ ଯେଉଁ ଷ୍ଟାଣ୍ଡିଂ କମିଟି ରହିବ, ତା'ର ନେତୃତ୍ୱ ମହିଳାମାନେ ନିଅନ୍ତୁ । ତାଙ୍କୁ ପୂର୍ଣ୍ଣ ସୁଯୋଗ ଦିଆଯାଉ ।

ମୁଁ ଏ କଥା ୧୯୬୧ ରେ କହିଥିଲି, ଆଜି ମଧ୍ୟ କହୁଛି ଯେ, ଆମେ ସମାଜର ତଳସ୍ତରରେ ନେତା ଓ ନେତ୍ରୀ ଗଢ଼ିବା ପାଇଁ ଉଦ୍ୟମ କରୁଛୁ । ଏହା ଏକ ସହଜସାଧ

Digitized by srujanika@gmail.com

ବ୍ୟାପାର ନୁହେଁ। ଏହି ଗଣଆନ୍ଦୋଳନକୁ ଆମେ କିଛି ରୂପ, କିଛି ଦିଗ୍‌ଦର୍ଶନ ଏବଂ କିଛି କର୍ତ୍ତୃତ୍ୱ ଦେଉଛୁ। ସୁନ୍ଦର ଭବିଷ୍ୟତକୁ ଆଖି ଆଗରେ ରଖି ଅଧିକ ସମ୍ବେଦନଶୀଳତା ଓ ଦୂରଦର୍ଶିତା ସହ ଆମକୁ ଚିନ୍ତା କରିବାକୁ ହେବ। ଆମେ ଗୋଟିଏ ନୂଆ ଶିଶୁ ଗଢୁଛୁଁ– ଏକ ଗଣତାନ୍ତ୍ରିକ ଶିଶୁ, ଯାହାର ଚିନ୍ତାରେ ଓ କାର୍ଯ୍ୟରେ ନେତୃତ୍ୱର ବିକାଶ ଘଟିବ। ଲୋକଙ୍କ ଭିତରେ ଯେଉଁ ସୁପ୍ତ ଶକ୍ତି ରହିଛି, ପଞ୍ଚାୟତି ବ୍ୟବସ୍ଥା ମାଧ୍ୟମରେ ତାକୁ ଜାଗ୍ରତ କରିବାକୁ ହେବ, ବିକଶିତ କରିବାକୁ ହେବ।

ଆମର ସାମୂହିକ ବିଜ୍ଞତା ଦ୍ୱାରା ଆମେ ସମୟକ୍ରମେ ଏପରି ବାଟ ବାହାର କରିବା ଯଦ୍ୱାରା ଜନସାଧାରଣଙ୍କର ବିଶ୍ୱାସ ଓ ନେତୃତ୍ୱକୁ ଆଧାର କରି ବର୍ତ୍ତମାନର ପ୍ରଶାସନିକ ବ୍ୟବସ୍ଥା ଦ୍ୱାରା ସମ୍ଭବ ହେଉଥିବା କାର୍ଯ୍ୟଠାରୁ ବହୁ ଅଧିକ ସଫଳତା ହାସଲ କରାଯାଇପାରିବ।

ସବୁଠାରେ ଦୋଷ ତ୍ରୁଟି ଅଛି ଏବଂ ରହିବ। ମଣିଷର ଚରିତ୍ର ଓ ପ୍ରକୃତିକୁ ମୁଁ ଯାହା ବୁଝିଛି, ଏଥିରେ କିଛି ଅସ୍ୱାଭାବିକତା ନାହିଁ। ଆମେ ଏଭଳି ଏକ ଶାସନ ଢାଞ୍ଚା ତିଆରି କରିବା ଯେଉଁଥିରେ କି ପ୍ରତ୍ୟେକ ସ୍ତ୍ରୀ, ପୁରୁଷ, ବଡ଼ ହେଉ କି ଛୋଟ ହେଉ, ଉତ୍କୃଷ୍ଟ ହେଉ କି ନିକୃଷ୍ଟ ହେଉ, ନିଜ ପ୍ରତିଭା ବିକାଶ ପାଇଁ ସୁଯୋଗ ପାଇବେ। ଚୀନ ଦାର୍ଶନିକ ତାଇଚୁଙ୍ଗ କହିଥିଲେ, 'ଯଦି ଆମେ କୌଣସି ଏକ କାର୍ଯ୍ୟକୁ ତ୍ରୁଟିଶୂନ୍ୟ ଭାବେ କରିବାକୁ ବସିବା, ଆମକୁ ଅନନ୍ତକାଳ ପାଇଁ ଅପେକ୍ଷା କରିବାକୁ ହେବ।' ଆମ ହାତରେ ସମୟ ନାହିଁ। ଗଲା ତିରିଶ ବର୍ଷ ଭିତରେ ଅନେକ କିଛି ସୁଯୋଗ ଆମର ହାତଛଡ଼ା ହୋଇଯାଇଛି। ତେଣୁ ଆମକୁ ଆଜି ସଙ୍କଳ୍ପ ନେବାକୁ ହେବ– ବିଜ୍ଞତା, ଦୂରଦୃଷ୍ଟି, କରୁଣା ଓ ଉତ୍ତମ ବୁଝାମଣାକୁ ପୁଞ୍ଜି କରି ଆମେ ଆମ ନିଜର ସମସ୍ୟା ସମାଧାନର ରାସ୍ତା ବାହାର କରିବା।

ଏଠାରେ କହିବା ଉଚିତ ହେବ ଯେ ବିଜୁବାବୁଙ୍କ ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀତ୍ୱ ସମୟରେ ପଞ୍ଚାୟତିରାଜ ବିଭାଗର ମନ୍ତ୍ରୀ ଦାୟିତ୍ୱ ବହନ କରିଥିବା ଡାକ୍ତର ଦାମୋଦର ରାଉତ ବିଜୁବାବୁଙ୍କ ଦ୍ୱାରା ହିଁ ରାଜନୀତିକୁ ଆସିଥିଲେ ଏବଂ ବିଜୁବାବୁଙ୍କ ପ୍ରତ୍ୟେକ କଥାକୁ କାର୍ଯ୍ୟରେ ପରିଣତ କରିବାକୁ ସବୁବେଳେ ଆଗଭର ହେଉଥିଲେ। ସେ ଆମ ରାଜ୍ୟରେ ପ୍ରଚଳିତ ହୋଇଥିବା ପଞ୍ଚାୟତିରାଜ ବ୍ୟବସ୍ଥାକୁ ସାରା ଭାରତରେ ଏକ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନରେ ପହଞ୍ଚାଇ ପାରିଥିଲେ। ସେତେବେଳେ କେନ୍ଦ୍ରରେ ପଞ୍ଚାୟତିରାଜ ମନ୍ତ୍ରୀ ଥିବା ମଣିଶଙ୍କର ଆୟାର ଦେଶର ଚାରିଆଡ଼େ ବୁଲି ବୁଲି ବିଜୁ ପଟ୍ଟନାୟକ

Digitized by srujanika@gmail.com

ପ୍ରଚଳିତ କରିଥିବା ପଞ୍ଚାୟତିରାଜ ବ୍ୟବସ୍ଥା ଶାସନକୁ ଲୋକାଭିମୁଖୀ କରିପାରିଛି ବୋଲି ଉଦାହରଣ ଦେଉଥିଲେ। ରାଜନୀତିକୁ ଆସିବା ପୂର୍ବରୁ ଡାକ୍ତର ରାଉତ ଓଡ଼ିଶା ସରକାରଙ୍କର ପଶୁଚିକିତ୍ସା ନିର୍ଦ୍ଦେଶାଳୟରେ କାର୍ଯ୍ୟରତ ଥିଲେ। ସେ ଜଣେ ସୁଲେଖକ ଓ ସୁବକ୍ତା ହୋଇଥିବାରୁ ବିଜୁ ପଟ୍ଟନାୟକ ତାଙ୍କୁ ସକ୍ରିୟ ରାଜନୀତିରେ ଯୋଗଦେବାକୁ ପ୍ରବର୍ତ୍ତାଇଥିଲେ ଏବଂ ଡାକ୍ତର ରାଉତ ତାଙ୍କ ବ୍ୟକ୍ତିତ୍ୱରେ ଆକର୍ଷିତ ହୋଇ ସରକାରୀ ଚାକିରିର ମୋହ ତ୍ୟାଗ କରି ସକ୍ରିୟ ରାଜନୀତିରେ ଯୋଗ ଦେଇଥିଲେ। ବିଜୁବାବୁଙ୍କ ଓଡ଼ିଶାବାସୀଙ୍କ ପାଇଁ ରହିଥିବା ସେବା ମନୋଭାବ ଓ ତ୍ୟାଗ ଡାକ୍ତର ରାଉତଙ୍କୁ ଗଭୀର ଭାବେ ପ୍ରଭାବିତ କରିଥିଲା। ସେ ବିଜୁବାବୁଙ୍କ ସାଙ୍ଗରେ ସବୁବେଳେ ଥିଲେ ଓ ଏବେ ବି ତାଙ୍କ ଆଦର୍ଶରେ ନିଜକୁ ପରିଚାଳିତ କରିଚାଲିଛନ୍ତି।

ଭାରତର ବରପୁତ୍ର ବିଜୁ ପଟ୍ଟନାୟକ ସାଂପ୍ରତିକ ଭାରତୀୟ ପଞ୍ଚାୟତ ବ୍ୟବସ୍ଥାକୁ ନୂତନ ଦିଗଦର୍ଶନ ପ୍ରଦାନ କରିଛନ୍ତି। ଏହି ବ୍ୟବସ୍ଥାର ପ୍ରଚଳନ କରାଇ କ୍ଷମତାର ବିକେନ୍ଦ୍ରୀକରଣ ମାଧ୍ୟମରେ ସମାଜର ନିମ୍ନସ୍ତରରେ ବାସ କରୁଥିବା ବ୍ୟକ୍ତିଙ୍କୁ ଶାସନର ଭାଗିଦାରୀ କରାଇବାରେ ବିଜୁବାବୁ ତାଙ୍କର ସଫଳ ପ୍ରୟାସ ପାଇଁ ଚିରସ୍ମରଣୀୟ ହୋଇ ରହିବେ। ତାଙ୍କର ଏହିଭଳି ଅନେକ ପଦକ୍ଷେପ ପାଇଁ ସେ କେବଳ ଓଡ଼ିଶା ନୁହେଁ, ସମଗ୍ର ଦେଶରେ ଜଣେ ଯଶସ୍ୱୀ ରାଜନେତାର ମର୍ଯ୍ୟାଦା ଲାଭ କରି ଆମ ରାଜ୍ୟକୁ ଗୌରବାନ୍ୱିତ କରିଛନ୍ତି।

- ୦ -

Digitized by srujanika@gmail.com

# ଆତ୍ମବିଶ୍ୱାସୀ ବିଜୁ ପଟ୍ଟନାୟକ

ବିଜୁବାବୁଙ୍କ ବ୍ୟକ୍ତିତ୍ୱର ସବୁ ଦିଗକୁ ମୂଲ୍ୟାୟନ କରି ୱିଲିୟମ ହଙ୍ଗେନ୍ ତାଙ୍କ ରଚିତ *'After Nehru Who'* ପୁସ୍ତକରେ ବିଜୁ ପଟ୍ଟନାୟକଙ୍କୁ ନେହେରୁଙ୍କ ପରେ ଭାରତର ପ୍ରଧାନମନ୍ତ୍ରୀ ପଦ ପାଇଁ ଅନ୍ୟତମ ଯୋଗ୍ୟ ବ୍ୟକ୍ତିରୂପେ ବର୍ଣ୍ଣନା କରିଛନ୍ତି। ବହୁ ଉତ୍‌ଥାନ-ପତନ, ଜୟ-ପରାଜୟ, ସୁଦିନ-ଦୁର୍ଦ୍ଦିନ ମଧ୍ୟରେ ଅବିଚଳିତ ରହି ବିଜୁ ପଟ୍ଟନାୟକ ଓଡ଼ିଶାର ଉନ୍ନତି ପାଇଁ ଉଦ୍ୟମ ଜାରି ରଖିଥିଲେ। ରାଜନୀତିରେ ବର୍ତ୍ତମାନ ପ୍ରଚଳିତ ଥିବା କଥନ Everything is fair in politics and warରେ ସେ ବିଶ୍ୱାସ କରୁନଥିଲେ। ରାଜନୀତି କ୍ଷେତ୍ରରେ ଅନୀତି ଓ ଅନ୍ୟାୟ ହେଉ ଅଥବା ଅନ୍ୟ ଯେକୌଣସି କ୍ଷେତ୍ରରେ ହେଉ, ସେ ତାକୁ କେବେବି ପ୍ରଶ୍ରୟ ଦେଉନଥିଲେ।

ବିଜୁ ପଟ୍ଟନାୟକ ଥିଲେ ଓଡ଼ିଆ ଜାତିର ସ୍ୱାଭିମାନର ପ୍ରତୀକ। ଓଡ଼ିଆ ଜାତିର ଉନ୍ନତି ପାଇଁ ତାଙ୍କ ଜୀବନ ଥିଲା ଉତ୍ସର୍ଗୀକୃତ। ସେ ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ଯେଉଁ କାର୍ଯ୍ୟ ସବୁ କରିଛନ୍ତି ତାକୁ ପରିସଂଖ୍ୟାନର ପରିସୀମାରେ ତଉଲ କରି ମୂଲ୍ୟାୟନ କରିବା ଅନୁଚିତ ହେବ। ଏସବୁଠାରୁ ସେ ବହୁ ଊର୍ଦ୍ଧ୍ୱରେ। ଓଡ଼ିଆମାନେ ସମଗ୍ର ପୃଥିବୀରେ ନିଜର ସ୍ଥିତି ଜାହିର କରିବେ ଓ ସବୁକ୍ଷେତ୍ରରେ ନିଜର ଲୁକ୍କାୟିତ ପ୍ରତିଭାକୁ ପ୍ରଦର୍ଶନ କରି ନିଜ ଜାତିକୁ ଗୌରବାନ୍ୱିତ କରିବେ, ଏହା ଥିଲା ତାଙ୍କର ସ୍ୱପ୍ନ। ଓଡ଼ିଆମାନେ ବର୍ତ୍ତମାନ ବିଭିନ୍ନ କ୍ଷେତ୍ରରେ ଉତ୍କର୍ଷ ଲାଭ କରିବା ସହିତ ବିଶ୍ୱରେ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରୁଛନ୍ତି। ଏଠାରେ ଦୁଇଜଣ ଓଡ଼ିଆ ଡାକ୍ତରଙ୍କ ନାମ ଉଲ୍ଲେଖ କଲେ ଯଥେଷ୍ଟ ହେବ। ଜଣେ ହେଲେ ହୃଦରୋଗ ବିଶେଷଜ୍ଞ ଡାକ୍ତର ରମାକାନ୍ତ ପଣ୍ଡା (ପଦ୍ମଭୂଷଣ), ଯେ କି ବମ୍ବେଠାରେ 'ଏସିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ହାର୍ଟ' ପ୍ରତିଷ୍ଠା କରିଛନ୍ତି। ଡାକ୍ତର ପଣ୍ଡା ପୂର୍ବତନ ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହଙ୍କର ହାର୍ଟ ଅପରେସନ କରିଥିଲେ। ସେହିଭଳି ଓଡ଼ିଶାର ଆଉ ଜଣେ ଡାକ୍ତର ମୁକୁଟ ମିଞ୍ଜ (ପଦ୍ମଶ୍ରୀ), ଯେ କି ବର୍ତ୍ତମାନର କେନ୍ଦ୍ର ବୈଦେଶିକ ବ୍ୟାପାର ମନ୍ତ୍ରୀ ଶ୍ରୀମତୀ ସୁଷମା ସ୍ୱରାଜଙ୍କର କିଡ୍‌ନୀ ପ୍ରତ୍ୟାରୋପଣ କରିଛନ୍ତି। ଏମାନେ ହଜାର ହଜାର ରୋଗୀଙ୍କର ଦେଶବିଦେଶରେ ଚିକିତ୍ସା କରି ଅଭୂତପୂର୍ବ ସାଫଲ୍ୟ ଅର୍ଜନ

Digitized by srujanika@gmail.com

କରିପାରିଛନ୍ତି। ଏହିଭଳି ବ୍ୟକ୍ତି ଓଡ଼ିଶାରୁ ବାହାରନ୍ତୁ ଏବଂ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ଓଡ଼ିଶାକୁ ଗୌରବାନ୍ୱିତ କରନ୍ତୁ ବୋଲି ତାଙ୍କର ଅଭିଳାଷ ଥିଲା।

୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶାକୁ ଦଖଲ କରିନେବା ପରଠାରୁ ଦୁର୍ଦ୍ଧର୍ଷ ଓଡ଼ିଆ ଜାତିକୁ ଏକଶାସନାଧିନରେ ନ ରଖି ବିହାର, ମଧ୍ୟପ୍ରଦେଶ, ପଶ୍ଚିମବଙ୍ଗ, ମାନ୍ଦ୍ରାଜ ପ୍ରଭୃତି ପ୍ରଦେଶର ଶାସନାଧିନରେ ରଖିଥିଲେ। ଓଡ଼ିଆମାନେ ୧୮୧୭ ମସିହାରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ବ୍ରିଟିଶ ଶାସନ ବିରୁଦ୍ଧରେ ପ୍ରଥମେ ବିଦ୍ରୋହ ଆରମ୍ଭ କରିଥିଲେ। ବିଜୁ ପଟ୍ଟନାୟକ ଜନ୍ମଗ୍ରହଣ କଲାବେଳକୁ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ନ ଥିଲା। ଉତ୍କଳଗୌରବ ମଧୁସୂଦନ ଦାସ, ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତିଦେବ, ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ନୀଳମଣି ବିଦ୍ୟାରତ୍ନ ପ୍ରଭୃତି ବହୁ ମନିଷୀମାନଙ୍କର ଆଜୀବନ ସଂଗ୍ରାମ ଯୋଗୁଁ ପହିଲା ଏପ୍ରିଲ ୧୯୩୬ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ପାଇଥିଲା। ସେହି ସମୟରୁ ବିଜୁ ପଟ୍ଟନାୟକ ଓଡ଼ିଆମାନଙ୍କର ଗୌରବଗାଥା ବହନ କରୁଥିବା କଳିଙ୍ଗର ଇତିହାସ ସମ୍ପର୍କରେ ଅବଗତ ହୋଇ ସବୁବେଳେ ଓଡ଼ିଆ ଜାତିକୁ ବିଶ୍ୱରେ ଏକ ସମ୍ମାନଜନକ ସ୍ଥାନରେ ଆସୀନ କରିବାକୁ ସଂକଳ୍ପବଦ୍ଧ ଥିଲେ। ସେ ଜାଣିଥିଲେ ଯେ, ଓଡ଼ିଆମାନେ ଏକ ସାହସିକ ଜାତି ଥିଲେ, ଯେଉଁମାନେ ସମୁଦ୍ରରେ ଜାହାଜରେ ଯାତ୍ରା କରି ଏସିଆର ପ୍ରାୟ ଅଧିକାଂଶ ଦେଶ ସହିତ ବାଣିଜ୍ୟ ବ୍ୟବସାୟ କରି ବହୁ ଅର୍ଥ ଉପାର୍ଜନ କରିପାରୁଥିଲେ। ସେ କହୁଥିଲେ ଯେ ୧୪୯୨ରେ କଲମ୍ବସ ବା ୧୪୯୮ରେ ଭାସ୍କୋଡାଗାମାଙ୍କର ଭାରତକୁ ଜଳପଥରେ ଆବିଷ୍କାର କରିବାର ବହୁ ଶତାବ୍ଦୀ ପୂର୍ବରୁ କଳିଙ୍ଗର ସାଧବପୁଅମାନେ ସମୁଦ୍ର ପଥକୁ ଭଲଭାବରେ ଚିହ୍ନିତ କରିଥିଲେ।

ବିଜୁ ପଟ୍ଟନାୟକ ସମ୍ରାଟ ଅଶୋକଙ୍କ ଦ୍ୱାରା ଖ୍ରୀ.ପୂ. ୨୬୧ରେ ସଂଘଟିତ ହୋଇଥିବା 'କଳିଙ୍ଗ ଯୁଦ୍ଧ'ରେ ଓଡ଼ିଆମାନଙ୍କର ବୀରତ୍ୱକୁ ପ୍ରଶଂସା କରୁଥିଲେ। ଅଶୋକ ତାଙ୍କ ଖୋଦିତ ଶିଳାଲିପିରେ ସେ ସମୟର ଓଡ଼ିଶାର ରାଜାଙ୍କର ନାମ ଉଲ୍ଲେଖ କରି ନ ଥିବାରୁ ବିଜୁବାବୁ ଅଶୋକଙ୍କୁ ଏକ ବୀର ପୁରୁଷ କହିବାକୁ କୁଣ୍ଠାବୋଧ କରୁଥିଲେ। ସେ ମଧ କହୁଥିଲେ ଯେ, ଓଡ଼ିଶାର ଯେତେ ସୈନିକ ଅଶୋକଙ୍କ ଦ୍ୱାରା ହତାହତ ହୋଇଛନ୍ତି ତାହାର ବହୁଗୁଣ ମଗଧ ସେନାଙ୍କୁ ଓଡ଼ିଆ ସୈନିକମାନେ ଧରାଶାୟୀ କରିଥିଲେ। ତେଣୁ ଅଶୋକ ଅନନ୍ୟୋପାୟ ହୋଇ ସବୁଦିନ ପାଇଁ ଅସ୍ତ୍ର ତ୍ୟାଗକରି ଓଡ଼ିଶାର ବୌଦ୍ଧସନ୍ନ୍ୟାସୀ ଉପଗୁପ୍ତଙ୍କ ଦ୍ୱାରା ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ।

Digitized by srujanika@gmail.com

ପ୍ରଫେସର ଶାନ୍ତନୁ କୁମାର ଆଚାର୍ଯ୍ୟ 'ଓଡ଼ିଶା ଇତିହାସର ଦ୍ୱିତୀୟ ଖାରବେଳ' ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି, ଅଶୋକଙ୍କ ଦ୍ୱାରା କଳିଙ୍ଗ ବିଜୟର ଏହି ଐତିହାସିକ ବାସ୍ତବତାକୁ ବିଜୁ ପଟ୍ଟନାୟକ ଆଦୌ ହଜମ କରିପାରୁ ନ ଥିଲେ। କୁହାଯାଏ ଏକାଧିକ ଥର ସେ ଏ ସଂପର୍କରେ ଆମ ସମୟର ପ୍ରବୀଣ ଐତିହାସିକମାନଙ୍କ ସହ ଆଲୋଚନା କରିଥିଲେ ଏବଂ ସେମାନଙ୍କଠାରୁ ମିଳୁଥିବା ମତାମତକୁ ପ୍ରକାଶ୍ୟରେ ଉପେକ୍ଷା କରି ପଚାରୁଥିଲେ- "ତମେମାନେ ଏ ସବୁ ତଥ୍ୟ କେଉଁଠୁ ପାଇଲ ? ନିଜେ ଅଶୋକ ନିଜ କୀର୍ତ୍ତି ସଂପର୍କରେ ଯାହା କିଛି ଲେଖିଦେଇ ଯାଇଚି ପଥରରେ – ତାକୁ ପରା ତମେ କହୁଚ Inscription? ସେ ଲେଖାଟା ଯଦି ସତ ତେବେ ଅଶୋକ କାହିଁକି ସ୍ୱୀକାର ନ କଲା ସେତେବେଳେ କଳିଙ୍ଗର କୋଉ ରାଜା ସାଙ୍ଗରେ ତା'ର ଯୁଦ୍ଧ ହୋଇଥିଲା ? ଶତ୍ରୁର ନାଁଟାକୁ ଭୁଲିଗଲା କେମିତି ? ପୁଣି ଲେଖିଚି କୁଆଡ଼େ କଳିଙ୍ଗର ପାଞ୍ଚଲକ୍ଷ ଲୋକଙ୍କୁ ମାରିଚି, ହାଣିଚି, ଲାପତ୍ତା କରେଇ ଦେଇଚି। ତେବେ ତା' ନିଜ ପକ୍ଷର କେତେ ଲକ୍ଷ ମଗଧ ସୈନ୍ୟ ମଲେ, ଗଲେ, ଘାଇଲା ହେଲେ କାହିଁକି ସେକଥା ତ କୋଉ ଶିଳାଲିପିରେ ସେ ଲେଖିଲା ନାହିଁ! ତମେ ଐତିହାସିକମାନେ ଏ ବିଷୟରେ ନିଜକୁ ଥରେ ପଚାରିଚ ? ଗବେଷଣା କରିଚ ନା ଖାଲି ଶୁଆଭଳି ସେଇ ବିଦେଶୀ ଗୋରା ଲୋକଙ୍କ କଥାରେ ମାତିଚ ? ଆରେ ! ତମେମାନେ ଯଦି ନିଜର କମନସେନ୍ସ ବ୍ୟବହାର କରିଥାନ୍ତ ତେବେ ନିଶ୍ଚୟ ଏ ପ୍ରଶ୍ନର ଉଚିତ ଜବାବ ସେଇ ଇତିହାସ ଭିତରୁ ହାସଲ କରିଥାନ୍ତ। ତା' ନ କରି ଖାଲି ଗୁଡ଼ାଏ ପଣ୍ଡିତିଆ କଥାରେ ମାତି ନଥାନ୍ତ। ମୁଁ ପଚାରୁଚି ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ କଳିଙ୍ଗର ଲୋକସଂଖ୍ୟା କେତେ ଥିବ ଯେ ପାଞ୍ଚଲକ୍ଷ ସୈନ୍ୟଙ୍କୁ ମାରିପକେଇଲା ଅଶୋକ ? କେତେ ବର୍ଷ ଲାଗିଥିଲା ପାଞ୍ଚଲକ୍ଷ ଲୋକଙ୍କୁ ଯୁଦ୍ଧରେ ମାରିବାକୁ। ସେତେବେଳେ କୋଉ ଅସ୍ତ୍ରଶସ୍ତ୍ର ବ୍ୟବହାର ହଉଥିଲା ଯୁଦ୍ଧରେ ? ଧନୁଶର, ଖଣ୍ଡା ତଲବାର ନା ଆଟମ ବମ୍ ? Weapons of mass destruction ଥିଲା ସେ ସମୟରେ ? ପାଞ୍ଚଲକ୍ଷ ଲୋକଙ୍କୁ ଧନୁତୀର ଓ ଖଣ୍ଡାରେ ହାଣି ମାରିବାକୁ କେତେ ବର୍ଷ ଲାଗିଥିଲା ? ତା'ର ପ୍ରମାଣ ପାଇଚ ଇତିହାସରୁ ? ସେଥିପାଇଁ ଦରକାର ଅଟୋମାଟିକ ରାଇଫଲ୍, ବମ୍, ଗ୍ରେନେଡ୍, ଆର୍ଟିଲେରି ଗନ୍... ତମେ ଇତିହାସ ବାଲା ଯଦି Science ପଢ଼ିଥାନ୍ତ ତାହେଲେ ସିନା ଜାଣନ୍ତ ? ଯଦି ଜାଣିନା ତେବେ ଇତିହାସର ମିଛକୁ ସତ ନାଁରେ ଅପପ୍ରଚାର ବନ୍ଦ କର !"

Digitized by srujanika@gmail.com

ପ୍ରଫେସର ଆଚାର୍ଯ୍ୟ ପୁଣି ଲେଖିଛନ୍ତି, "ଏହା ପରେପରେ ବିଜୁ ପଟ୍ଟନାୟକ ଆରମ୍ଭ କଲେ ଓଡ଼ିଶା ଇତିହାସରୁ ତଥ୍ୟ ନେଇ କଳିଙ୍ଗର ପରମ ଶତ୍ରୁ ଅଶୋକଙ୍କ ସମକକ୍ଷ ଜଣେ କଳିଙ୍ଗର ବୀର ପୁରୁଷଙ୍କ ସନ୍ଧାନରେ। ଅବିଳମ୍ବେ ତାଙ୍କ ଦୃଷ୍ଟିକୁ ଆସିଲେ ସମ୍ରାଟ ଖାରବେଳ ଯାହାଙ୍କ ଉପାଧି 'କଳିଙ୍ଗାଧିପତି' ବୋଲି ଖଣ୍ଡଗିରି ହାତୀଗୁମ୍ଫା ଶିଳାଲିପିରେ ଉତ୍କୀର୍ଣ୍ଣ ହୋଇଛି। ଜାଣିବା ମାତ୍ରେ ସେ ସତେକି ତାଙ୍କର ସ୍ୱପ୍ନର ସତ୍ୟତାକୁ ପାଇଗଲେ ନିଜ ହାତପାହାନ୍ତାରେ। ପୁଣି ସେଇ ଶିଳାଲିପିରେ ଉଲ୍ଲେଖ ଅଛି ୧ମ ଶତାବ୍ଦୀରେ କଳିଙ୍ଗାଧିପତି ସମ୍ରାଟ ଖାରବେଳ ମଗଧ ବିଜୟ କରିଥିଲେ। ପୁଣି, ମଗଧ ବିଜୟ ଅଭିଯାନ ଲକ୍ଷ୍ୟ ସମ୍ପୂର୍ଣ୍ଣ କରିବା ପୂର୍ବରୁ ସେ ଶୁଣିବାକୁ ପାଇଲେ ଯେ, ବହିଃଶତ୍ରୁ ଯବନମାନେ ପୁନର୍ବାର ଶକ୍ତିଶାଳୀ ହୋଇ ଉଠିଛନ୍ତି ଏବଂ ସେମାନେ ଭାରତର ଅନ୍ତଃବର୍ତ୍ତୀ ବହୁ ଅଂଚଳ ଦଖଲ କରିସାରି ଶେଷରେ ମଥୁରା ମଧ୍ୟ ଅଧିକାର କରିଲେଣି। ତେଣୁ ସେ ମଗଧର ରାଜଧାନୀ ପାଟଳିପୁତ୍ରର ଅନତିଦୂର ଗୋରଥଗିରିଠାରୁ ତାଙ୍କ ବିଶାଳ କଳିଙ୍ଗ ସେନାବାହିନୀକୁ ମଥୁରା ଅଭିମୁଖେ ପରିଚାଳନା କରାଇଲେ। ସେଠାରୁ ଯବନମାନଙ୍କୁ ଘଉଡ଼େଇ ନେଇ ଆଗେଇ ଚାଲିଲେ ତତ୍କାଳୀନ ଭାରତର ସୀମାନ୍ତ ତକ୍ଷଶୀଳା (ବର୍ତ୍ତମାନ ମାନଚିତ୍ରରେ ପାକିସ୍ତାନରେ ପେଶାବାର ସହର ନିକଟବର୍ତ୍ତୀ Taxila ନାମରେ ପରିଚିତ ସ୍ଥାନ) ସେଇ ପେଶାବାର ବା ତକ୍ଷଶୀଳା ଆରପାରିକୁ।"

ମହାମେଘବାହନ ଐରଖାରବେଳଙ୍କ ସ୍ୱଦେଶ ପ୍ରତି ଥିବା କର୍ତ୍ତବ୍ୟ ବିଜୁବାବୁଙ୍କୁ ଉଦ୍‌ବୁଦ୍ଧ କରିଥିଲା ନିଶ୍ଚୟ। ସେ ଓଡ଼ିଶାର ପ୍ରଗତି, ସୁଖ୍ୟାତି, ସମୃଦ୍ଧି ସଙ୍ଗେ ସଙ୍ଗେ ଭାରତର ସୁରକ୍ଷା ପାଇଁ ସଦାସର୍ବଦା ନିଜ ଜୀବନକୁ ବାଜି ଲଗାଇ କାର୍ଯ୍ୟ କରିଛନ୍ତି, ତାହା ପାକିସ୍ତାନର ୧୯୪୭ ମସିହାରେ କାଶ୍ମୀର ଦଖଲ ପାଇଁ ଉଦ୍ୟମ ହେଉ, ୧୯୬୨ ମସିହାରେ ଚୀନର ଭାରତ ଆକ୍ରମଣ ହେଉ, ୧୯୬୫ ମସିହାରେ ପାକିସ୍ତାନର ଭାରତ ଆକ୍ରମଣ ହେଉ କିମ୍ବା ୧୯୭୧ ମସିହାରେ ବାଙ୍ଗଲାଦେଶର ସ୍ୱାଧୀନତା ସଂଗ୍ରାମ ହେଉ।

୧୯୪୬ ମସିହାରେ ବିଜୁ ପଟ୍ଟନାୟକ କଂଗ୍ରେସ ଦଳରେ ଯୋଗଦେଲେ। ଓଡ଼ିଶାର ପ୍ରବୀଣ ରାଜନୀତିଜ୍ଞ ଡକ୍ଟର ହରେକୃଷ୍ଣ ମହତାବ ତାଙ୍କର ରାଜନୈତିକ ଗୁରୁ ଥିଲେ। ଡକ୍ଟର ମହତାବ ବିଜୁ ପଟ୍ଟନାୟକଙ୍କୁ ବହୁତ ଭଲ ପାଉଥିଲେ। ଉଭୟଙ୍କ ମଧ୍ୟରେ କ୍ଷୀରନୀରର ସମ୍ପର୍କ ଥିଲା ଦୀର୍ଘ ପନ୍ଦର ବର୍ଷ। ୧୯୪୬ ମସିହାରେ ବିଜୁବାବୁ

Digitized by srujanika@gmail.com

କଟକ ବିଧାନସଭା ଆସନରୁ ଓଡ଼ିଶା ବିଧାନସଭାକୁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲେ। ସେତେବେଳକୁ ବିଜୁବାବୁ ଭାରତରେ ଜଣେ ପରିଚିତ ଶିଳ୍ପପତି ଓ ରାଜନୀତିଜ୍ଞ। ସବୁବେଳେ ତାଙ୍କୁ ବିବ୍ରତ କରୁଥାଏ ଓଡ଼ିଶାକୁ କିଭଳି ବିଶ୍ୱ ଦରବାରରେ ପରିଚିତ କରାଇବେ। ୧୯୫୧ ମସିହାରେ ବିଜୁବାବୁ 'କଳିଙ୍ଗ ଫାଉଣ୍ଡେସନ ଟ୍ରଷ୍ଟ' ପ୍ରତିଷ୍ଠା କରି ହଜାର ହଜାର ଗରିବ ମେଧାବୀ ଛାତ୍ରଛାତ୍ରୀଙ୍କୁ ବୃତ୍ତି ଏବଂ ଅସହାୟ ଗରିବ ରୋଗୀମାନଙ୍କର ଚିକିତ୍ସା ପାଇଁ ଆର୍ଥିକ ସହାୟତା ଦେଉଥିଲେ। ଆଜି ପର୍ଯ୍ୟନ୍ତ ମଧ୍ୟ 'କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ' ଅଭାବଗ୍ରସ୍ତ ଛାତ୍ରଛାତ୍ରୀଙ୍କୁ ସହାୟତା ଯୋଗାଇବାରେ ବ୍ରତୀ ଅଛି। ଏହି ଟ୍ରଷ୍ଟର ଅଧ୍ୟକ୍ଷ ବର୍ଷୀୟାନ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଭବାନୀଚରଣ ପଟ୍ଟନାୟକ ଓ ସମ୍ପାଦକ ବିମଳ ଦାସ ଟ୍ରଷ୍ଟର କାର୍ଯ୍ୟକୁ ସୁଚାରୁରୂପେ ପରିଚାଳନା କରୁଛନ୍ତି। ସେ ବିଜ୍ଞାନର ଉନ୍ନତି ପାଇଁ ଅନ୍ତର୍ଜାତୀୟ ସ୍ତରରେ 'କଳିଙ୍ଗ ପୁରସ୍କାର' ପ୍ରଦାନର ବ୍ୟବସ୍ଥା କରିଥିଲେ। ୧୯୫୧ ମସିହାରେ ଜାତିସଂଘର ୟୁନେସ୍କୋ ଜରିଆରେ ସେ ଏହି 'କଳିଙ୍ଗ ପୁରସ୍କାର'ର ପ୍ରବର୍ତ୍ତନ କରି କଳିଙ୍ଗର ଯଶ ସାରାବିଶ୍ୱରେ ରଖିଯାଇଛନ୍ତି। ଏଥିପାଇଁ ସେ ସେତେବେଳେ ଏକଲକ୍ଷ ପାଉଣ୍ଡ ସ୍ଥାୟୀ ଜମା ରଖିଥିଲେ। ଯେଉଁମାନେ ବିଶ୍ୱସ୍ତରରେ ବିଜ୍ଞାନକୁ ସେମାନଙ୍କ ଲେଖା ଓ ଗବେଷଣା ମାଧ୍ୟମରେ ଲୋକପ୍ରିୟ କରିବାରେ ଅଗ୍ରଣୀ ହୋଇଥାଆନ୍ତି, ସେମାନଙ୍କୁ ଏହି ପୁରସ୍କାର ଦିଆଯାଏ। ତେଣୁ କଳିଙ୍ଗର ପୂର୍ବ ଗୌରବ ଫେରାଇ ଆଣିବା ପାଇଁ ତାଙ୍କର ଅବିରତ ଉଦ୍ୟମ ଓ କାର୍ଯ୍ୟାବଳୀକୁ ଲକ୍ଷ୍ୟକରି ଓଡ଼ିଶାର ଲୋକେ ତାଙ୍କୁ 'କଳିଙ୍ଗ ସମ୍ରାଟ' ବୋଲି ସମ୍ବୋଧନ କରନ୍ତି।

ବିଜୁ ପଟ୍ଟନାୟକ ସମସ୍ତଙ୍କ ଅଲକ୍ଷ୍ୟରେ ଛୋଟିଆ ଛୋଟିଆ କାର୍ଯ୍ୟମାନ କରନ୍ତି ଏବଂ ତାହା ଜାଣିଲେ ତାଙ୍କ ମହନୀୟତା କେତେକ ପରିମାଣରେ ବୁଝାପଡ଼େ। ତାଙ୍କ ମୃତ୍ୟୁପରେ ବ୍ୟାଙ୍କରୁ ଦେଖାଗଲା ଯେ ବିଜୁବାବୁ ଦୁଇଚକିଆ ଯାନ କିଣିବା ପାଇଁ ବାଷଠିଟି ଋଣ ନେଇଛନ୍ତି। ପ୍ରତି ମାସରେ ସେ ଋଣ ଶୁଝିବାକୁ ଡ୍ରାଫ୍ଟ ଦିଅନ୍ତି। ଏହି ନୂଆ ଯାନ ସବୁ ଅଭାବୀ ଛାତ୍ରଛାତ୍ରୀଙ୍କୁ ସେ ଦାନ କରୁଥିଲେ ଏବଂ ବ୍ୟାଙ୍କକୁ ଫୋନ୍ କରି ସେ ପିଲାମାନଙ୍କୁ ଦୁଇଚକିଆ ଯାନ ଯୋଗାଇ ଦେବାକୁ ନିର୍ଦ୍ଦେଶ ଦେଉଥିଲେ। ଏହିଭଳି ହଜାର ହଜାର ଛାତ୍ରମାନଙ୍କୁ ସେ ବିଭିନ୍ନ ଉପାୟରେ ସାହାଯ୍ୟ କରିଛନ୍ତି, ଯାହାକି ସେ କାହାରିକୁ ଏକଥା କୁହନ୍ତି ନାହିଁ।

ମଣିଷ ଜୀବନରେ ପ୍ରଶଂସା ଓ ନିନ୍ଦା ସମାନ ପରିମାଣରେ ମିଳିନଥାଏ। ଯେତେ ବିରାଟ ବ୍ୟକ୍ତିତ୍ୱର ଅଧିକାରୀ ହୋଇଥିଲେ ମଧ୍ୟ କୌଣସି ନା କୌଣସି

Digitized by srujanika@gmail.com

କାରଣ ଯୋଗୁଁ ନିନ୍ଦା ସହ୍ୟ କରିବାକୁ ପଡ଼ିଥାଏ। ମୋହନ ଦାସ କରମଚାନ୍ଦ ଗାନ୍ଧୀ ଜୀବଦ୍ଦଶାରେ ଓ ମୃତ୍ୟୁପରେ ମଧ୍ୟ ଚରିତ୍ରସଂହାରର ଶିକାର ହୋଇଥିଲେ। ଭଗବାନ ଶ୍ରୀକୃଷ୍ଣଙ୍କୁ ସେକାଳର ଓ ଏକାଳର ଲୋକମାନେ ନିନ୍ଦା କରିବାକୁ ପଛାଇ ନାହାଁନ୍ତି। ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି "ଅଭିଯାନନ୍ତି ମାଂ ବୁଢ଼ା ମାନୁଷୀ ତନୁମା ଶ୍ରୀତଂ।" ଏହାର ଅର୍ଥ ହେଲା, ମଣିଷ ରୂପରେ ଜନ୍ମଗ୍ରହଣ କରିଥିବାରୁ କେହି କେହି ମତେ ନ ଜାଣି ନିନ୍ଦା କରିଥାନ୍ତି। ବିଜୁବାବୁ ସବୁବେଳେ ନିଜ ସ୍ୱାର୍ଥକୁ ପଛରେ ପକାଇ ସମୂହ ସ୍ୱାର୍ଥ ପାଇଁ ଅତ୍ୟନ୍ତ ଦୁଃସାହସିକ ଭାବରେ ସାରାଜୀବନ କାର୍ଯ୍ୟ କରିଥିବାରୁ, ଜୀବଦ୍ଦଶାରେ ତାଙ୍କର ବହୁ ସମାଲୋଚକ ସୃଷ୍ଟି ହୋଇଥିଲେ। କିନ୍ତୁ କେବେବି ସେ ସମାଲୋଚକମାନଙ୍କର ସମାଲୋଚନା କରି ନାହାନ୍ତି। ବେଳେବେଳେ ସେ ଭଲ କାର୍ଯ୍ୟ କରି ମଧ୍ୟ ଅଯଥାରେ ସମାଲୋଚିତ ହୋଇ ଦୁଃଖ ଅନୁଭବ କରୁଥିଲେ। ଏହି ପ୍ରସଙ୍ଗରେ ସେ ବିଶିଷ୍ଟ ସାହିତ୍ୟିକ ପ୍ରଫେସର ରାଜକିଶୋର ରାୟଙ୍କୁ ସାମନ୍ତ ଚନ୍ଦ୍ରଶେଖର କଲେଜର ଏକ ଉତ୍ସବରେ ଯୋଗଦେବାକୁ ଯାଇଥିବାବେଳେ କହିପକାଇଲେ, "ରାଜକିଶୋର ବାବୁ! ଜୀବନ ଶେଷ ହୋଇଆସୁଛି, ଓଡ଼ିଆଙ୍କ ପାଇଁ ଯାହା କରିବାକୁ ସଂକଳ୍ପ ନେଇଥିଲି ଆଉ କେବେ କରିବି? ସମସ୍ତେ ତ ପଛରେ ଲାଗିଲେ, କେତେ ସମ୍ଭାଳିବି? ଗୋଟାଏ ଲଙ୍ଗସ୍ ଅଚଳ, ଆରଟାରେ କାମ ଚଳାଇ ନେଉଛି। ସେଇଟା ବନ୍ଦ ହୋଇଗଲେ...।" ପ୍ରଫେସର ରାଜକିଶୋର ରାୟ ଏକ ପ୍ରବନ୍ଧରେ ବିଜୁବାବୁଙ୍କ ସ୍ୱପ୍ନ ସମ୍ବନ୍ଧରେ ଲେଖିଛନ୍ତି, "ବିଜୁ ଓଡ଼ିଶାର ଶିଳ୍ପ ବିପ୍ଳବର ପ୍ରଥମ ନିୟାମକ, ଚିନ୍ତକ ଓ ଅଗ୍ରଦୂତ। ଉତ୍କଳ ଗୌରବ ମଧୁସୂଦନଙ୍କ ଅନ୍ତେ ବିଜୁ ହିଁ ଚିନ୍ତାକଲେ ଏ ଜାତିର ମୋକ୍ଷ ରହିଛି ଶିଳ୍ପାୟନରେ। ସେ ହିଁ ଓଡ଼ିଶାର ପ୍ରଥମ ଶିଳ୍ପପତି। ସେ ଦେଖୁଥିଲେ ଉତ୍କଳ ଜନନୀ ମଣି-ମାଣିକ୍ୟରେ ପରିପୂର୍ଣ୍ଣ। କି ଖଣି, କି ଶଇଳ, ଅରଣ୍ୟ, ସାଗର, ନଦୀ ସବୁଥିରେ ବିଭବ ଏ ରାଜ୍ୟ। କେବଳ ଏହାକୁ ଉନ୍ମୋଚନ କଲେ ସେ ଅବଗୁଣ୍ଠନକୁ ତିନିକୋଟି ଓଡ଼ିଆ ଅର୍ଥନୈତିକ ପ୍ରଗତିର ମଧ୍ୟସ୍ଥଳକୁ ଚାଲିଆସିବେ। ପ୍ରକୃତି କାର୍ପଣ୍ୟ କରିନାହିଁ ଉତ୍କଳକୁ। କେବଳ ଏ ଜାତିର ହୀନମନ୍ୟତା, ଆଳସ୍ୟ, ଶ୍ରମକାତରତା ଓ ସର୍ବୋପରି ଆତ୍ମବିଶ୍ୱାସର ଅଭାବ, ତହିଁ ସଙ୍ଗେ ସଙ୍ଗେ ଏସବୁର ଉଦ୍‌ବୋଧନକାରୀ ବଳିଷ୍ଠ ନେତୃତ୍ୱର ପଶ୍ଚାତ୍ ଭୂମିକା ଏଯାଏଁ ଅନ୍ତଃସାରଶୂନ୍ୟ କରି ରଖିଛି। ଏହାକୁ ହଟାଇବାକୁ ପଡ଼ିବ। ଏହାହିଁ ବିଜୁଙ୍କର ଜୀବନ ମନ୍ତ୍ର।"

Digitized by srujanika@gmail.com

ଓଡ଼ିଶାକୁ ସେ କିଭଳି ଭାବରେ ଗଢ଼ିବାକୁ ଇଚ୍ଛା କରୁଥିଲେ, ଓଡ଼ିଶାର ଖଣି, ବଣଜଙ୍ଗଲ, ନଦନଦୀ, ସମୁଦ୍ର, ପାହାଡ଼ ପର୍ବତକୁ ସୁବିନିଯୋଗ କରି ଓଡ଼ିଶାବାସୀଙ୍କୁ ଦାରିଦ୍ର୍ୟର ଅଭିଶାପରୁ ମୁକ୍ତ କରି ସମୃଦ୍ଧି ପଥରେ ଅଗ୍ରସର କରାଇବେ ସେ ଯୋଜନା ଡକ୍ଟର ଏ.ଏନ୍. ଖୋସଲା ତାଙ୍କ ପୁସ୍ତକ *Decade of Destiny* ରେ ବର୍ଣ୍ଣନା କରିଛନ୍ତି। ଏହି ପୁସ୍ତକଟି ପଢ଼ିଲେ ବିଜୁବାବୁଙ୍କ ଦୂରଦୃଷ୍ଟି ଯେ କୌଣସି ଲୋକକୁ ସ୍ତମ୍ଭୀଭୂତ କରିବ।

ଆତ୍ମବିଶ୍ୱାସର ଏକ ଉଦାହରଣ ଏଠାରେ ଦେବା ଉଚିତ ହେବ – ୧୯୬୧ ମସିହାରେ ମହାନଦୀରେ ଭୟାବହ ବନ୍ୟା ପରିସ୍ଥିତି ସୃଷ୍ଟି ହୋଇଥିଲା। ସେ ହୀରାକୁଦ ବନ୍ଧରେ ବନ୍ୟାଜଳ ଶେଷ ସୀମା ପର୍ଯ୍ୟନ୍ତ ଅଟକାଇବାକୁ ଆଦେଶ ଦେଲେ। ଇଞ୍ଜିନିୟରମାନେ ସେମାନଙ୍କ ବୈଷୟିକ ଜ୍ଞାନର ଉପଯୋଗ କରି ଏହା କଲେ ବନ୍ଧ ଭାଙ୍ଗିଯିବାର ଆଶଙ୍କା ଅଛି ବୋଲି ତାଙ୍କୁ ବୁଝାଇବାକୁ ଚେଷ୍ଟା କଲେ। କିନ୍ତୁ ବହୁବାର ତାଙ୍କ ନିଷ୍ପତ୍ତିରେ ଅଟଳ ରହି ବନ୍ଧ କେବେ ବି ଭାଙ୍ଗିବ ନାହିଁ ଏବଂ ପାଣି ନ ଅଟକାଇଲେ ତ୍ରିକୋଣଭୂମି ଅଞ୍ଚଳର ଲୋକମାନେ ଭାସିଯିବେ ବୋଲି କହି ଇଞ୍ଜିନିୟରମାନଙ୍କୁ ତାଙ୍କ ଆଦେଶ ପାଳନ କରିବାକୁ ତାଗିଦ୍ କଲେ। ସେତେବେଳେ କଟକ, ପୁରୀ, ଭୁବନେଶ୍ୱରର ଲୋକମାନେ ଓ ଓଡ଼ିଶାର ସମ୍ବାଦପତ୍ରଗୁଡ଼ିକ ତାଙ୍କୁ କଟୁ ସମାଲୋଚନା କରିଥିଲେ। କିନ୍ତୁ ହୀରାକୁଦରେ ପାଣି ୪୮ ଘଣ୍ଟା ଅଟକି ରହିବା ଦ୍ୱାରା ଧିରେ ଧିରେ ବନ୍ୟା କମିଗଲା ଏବଂ ଲକ୍ଷ ଲକ୍ଷ ଲୋକ ବନ୍ୟା ପ୍ରକୋପରୁ ରକ୍ଷା ପାଇଗଲେ। ବିଜୁବାବୁଙ୍କର ନିଜସ୍ୱ ବୈଷୟିକ ଜ୍ଞାନ ଥିଲା ଏବଂ ତା' ସହିତ ନିଜ ଉପରେ ପ୍ରଗାଢ଼ ବିଶ୍ୱାସ ଯୋଗୁଁ ସେ ଏଭଳି ପଦକ୍ଷେପ ନେଇପାରିଥିଲେ।

ବିଜୁ ବାବୁ ଥିଲେ ଜଣେ ସ୍ଥିତପ୍ରଜ୍ଞ ରାଷ୍ଟ୍ରନାୟକ। ଜୀବନ ସଂଗ୍ରାମରେ ବିଜୟ ତାଙ୍କୁ କେବେ ଉଲ୍ଲସିତ କରିନାହିଁ କିମ୍ବା ପରାଜୟର ଗ୍ଲାନି ତାଙ୍କ ମନରେ ଦୁଃଖ ଦେଇନି। ତାଙ୍କର ସାରାଜୀବନ ଓଡ଼ିଶାର ଉନ୍ନତି ପାଇଁ ଅବିରତ ସଂଗ୍ରାମରେ କଟିଛି। ବିଜୁବାବୁଙ୍କ ଭଳି ଦୁଃସାହସିକ ଓ ଦୁର୍ବାର ବ୍ୟକ୍ତି କେବଳ କଟକ ସହର ଓଡ଼ିଆ ବଜାରରେ ଜନ୍ମିତ ସୁଭାଷ ବୋଷଙ୍କ ସହିତ ତୁଳନୀୟ। ତାଙ୍କର ସାହସିକତା ଓ ବ୍ୟକ୍ତିତ୍ୱକୁ ବହୁ ଲୋକ ନେପୋଲିଅନ, ଷ୍ଟାଲିନ୍‌ଙ୍କ ସହିତ ତୁଳନା କରିଥାନ୍ତି। ସେ ନିଜକୁ ଖାରବେଳଙ୍କ ଦାୟାଦ ବୋଲି ଗର୍ବ ଅନୁଭବ କରୁଥିଲେ। ଓଡ଼ିଶାବାସୀ ମଧ୍ୟ ଅତି ଶ୍ରଦ୍ଧା ଓ ସମ୍ମାନର ସହିତ ତାଙ୍କୁ ଦ୍ୱିତୀୟ ଖାରବେଳ ବୋଲି ସମ୍ବୋଧିତ କରୁଥିଲେ।

Digitized by srujanika@gmail.com

ସେବା ଓ ତ୍ୟାଗ ତାଙ୍କ ପାଇଁ ଥିଲା ମହାମନ୍ତ୍ର। ନିଜ ରାଜନୈତିକ ଦଳର ସ୍ୱାର୍ଥକୁ ଅଗ୍ରାଧିକାର ଦେଇ ନିର୍ବାଚନ ସମୟରେ ତାଙ୍କଦ୍ୱାରା ପ୍ରତିଷ୍ଠିତ ନିଜର ବ୍ୟକ୍ତିଗତ ଶିଳ୍ପସଂସ୍ଥାଗୁଡ଼ିକୁ ତଥା କଲିକତା, ଦିଲ୍ଲୀରେ ଥିବା ନିଜ ଘରଗୁଡ଼ିକୁ ସେ ଶାଗମାଛ ଦରରେ ବିକ୍ରି କରିଦେଇଥିଲେ।

ଓଡ଼ିଆ ଜାତିକୁ ସବୁ କ୍ଷେତ୍ରରେ ଅଦ୍ୱିତୀୟ କରିବାପାଇଁ ବିଜୁ ପଟ୍ଟନାୟକ ସାରାଜୀବନ ଯେଭଳି ସଂଗ୍ରାମରତ ଥିଲେ ତାହା ମଧୁସୂଦନ ଦାସଙ୍କ ବ୍ୟତୀତ ଅନ୍ୟ କାହାରିଠାରେ ଦେଖାଯାଇନାହିଁ। ଓଡ଼ିଶାବାସୀ ତାଙ୍କ ପାଖରେ ଋଣୀ ଓ ସେ ରାଜ୍ୟବାସୀଙ୍କ ନିକଟରେ ଚିରସ୍ମରଣୀୟ ହୋଇ ରହିଥିବେ।

– ୦ –

Digitized by srujanika@gmail.com

# ବିଜୁ ପଟ୍ଟନାୟକଙ୍କ ସର୍ବଶ୍ରେଷ୍ଠ ଅବଦାନ ପାରାଦ୍ୱୀପ ବନ୍ଦର

ବିରାଟ ସ୍ୱପ୍ନ ଦେଖିବାର ସାମର୍ଥ୍ୟ ବିଜୁ ପଟ୍ଟନାୟକଙ୍କର ଥିଲା । ପ୍ରାଚୀନ କଳିଙ୍ଗର ଗୌରବବହନ କରୁଥିବା ଇତିହାସରେ ନୌବାଣିଜ୍ୟ ଅନ୍ୟତମ ସମ୍ମାନଜନକ ପରିଚୟପତ୍ର ଏହା ସେ ଅଙ୍ଗେ ଅଙ୍ଗେ ଅନୁଭବ କରିଥିଲେ । ସେ ବୁଝିଥିଲେ ଅତୀତରେ କଳିଙ୍ଗ କେବଳ ଉତ୍କୃଷ୍ଟ କଳାର ଦେଶ ନଥିଲା ବରଂ ନୌବାଣିଜ୍ୟ ଏବଂ ଅନ୍ୟାନ୍ୟ ବ୍ୟବସାୟ କରି ଅର୍ଥନୀତି ଦୃଷ୍ଟିରୁ କଳିଙ୍ଗର ଅଧିବାସୀମାନେ ନିଜ ରାଜ୍ୟକୁ ସମୃଦ୍ଧ କରିଥିଲେ । କଳିଙ୍ଗର ସାଧବପୁଅମାନେ ସମୁଦ୍ରପାରି ହୋଇ ବିଦେଶରୁ ଅପର୍ଯ୍ୟାପ୍ତ ଧନରତ୍ନ ବୋହି ଆଣୁଥିଲେ । ସେଥିପାଇଁ କଳିଙ୍ଗର ଆର୍ଥିକ ମେରୁଦଣ୍ଡ ଏତେ ସବଳ ଥିଲା ଯେ, ସମୁଦ୍ରଗୁପ୍ତ ଓ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ପରି ଦିଗ୍‌ବିଜୟୀ ରାଜା କଳିଙ୍ଗକୁ ଆକ୍ରମଣ କରିବାର ସାହସ କରିନଥିଲେ । ଖ୍ରୀଷ୍ଟପୂର୍ବ ପାଞ୍ଚଶହବର୍ଷ ସମୟରୁ କଳିଙ୍ଗ ଭାରତର ଶ୍ରେଷ୍ଠ ରାଜ୍ୟ ରୂପେ ଖ୍ୟାତି ଲାଭ କରିଥିଲା । ବିଜୁବାବୁ ବୁଝିଥିଲେ, ବାଣିଜ୍ୟରେ ଅଗ୍ରଗତି କଲେ ହିଁ ଓଡ଼ିଶା ଏକ ସମୃଦ୍ଧିଶାଳୀ ରାଜ୍ୟରେ ପରିଣତ ହୋଇପାରିବ । ସେ ହୃଦୟଙ୍ଗମ କରିଥିଲେ, "ବାଣିଜ୍ୟେ ବସତି ଲକ୍ଷ୍ମୀ, ତଦର୍ଦ୍ଧଂ କୃଷି କର୍ମାଣି, ତଦର୍ଦ୍ଧଂ ରାଜ ସେବାୟ, ଭିକ୍ଷାୟାଂ ନୈବଚ ନୈବଚ ।" ରାଜ୍ୟର ଅର୍ଥନୈତିକ ଉନ୍ନତି ଏବଂ ଦାରିଦ୍ର୍ୟ ଦୂରୀକରଣ ପାଇଁ ବନ୍ଦର ଯେ ନିହାତି ଆବଶ୍ୟକ ଏହା ବିଜୁବାବୁ ମର୍ମେ ମର୍ମେ ଉପଲବ୍ଧି କରୁଥିଲେ ।

କଳିଙ୍ଗର ସାଧବମାନେ ସମୁଦ୍ରପଥରେ ବାଣିଜ୍ୟ କାରବାର କରୁଥିଲେ । ଚୀନ୍, ଗ୍ରୀସ୍, ରୋମ୍ ଓ ଆଫ୍ରିକାର ଦେଶମାନଙ୍କ ସହିତ କଳିଙ୍ଗର ସାଧବମାନେ ବ୍ୟବସାୟ କରୁଥିଲେ । ଏପରିକି ୟୁରୋପର ଡଚ୍, ପର୍ତ୍ତୁଗୀଜ୍, ଫରାସୀ ଓ ଇଂରେଜମାନେ ମଧ୍ୟ କଳିଙ୍ଗ ସହ ଦୀର୍ଘକାଳ ପର୍ଯ୍ୟନ୍ତ ବାଣିଜ୍ୟ କାରବାର କରିଥିବାର ନଜିର ରହିଛି ।

କଳିଙ୍ଗର ସାଧବମାନେ ବ୍ରହ୍ମଦେଶ, ସିଂହଳ, ଶ୍ୟାମ, କାମ୍ବୋଡ଼ିଆ, ଜାଭା, ସୁମାତ୍ରା, ବାଲି ପ୍ରଭୃତି ଦେଶରେ ବାଣିଜ୍ୟ କରିବାର ବହୁ ପ୍ରମାଣ ଆଜି ବି ଦେଖିବାକୁ

Digitized by srujanika@gmail.com

ମିଳେ। ସମୁଦ୍ରର ଉତ୍ତାଳ ଲହରୀମାଳାକୁ ଖାତିର ନ କରି ସାହସୀ କଳିଙ୍ଗର ବଣିକମାନେ ସବୁ ପ୍ରତିକୂଳ ପରିସ୍ଥିତିରେ କଳିଙ୍ଗର ନୌବାଣିଜ୍ୟର ପରମ୍ପରାକୁ ଅବ୍ୟାହତ ରଖିଥିଲେ। କମୋଡର ଶ୍ରୀଧରନ୍ ତାଙ୍କ ରଚିତ ପୁସ୍ତକ 'ମ୍ୟାରିଟାଇମ୍ ହିଷ୍ଟ୍ରି ଅଫ୍ ଇଣ୍ଡିଆ'ରେ କଳିଙ୍ଗର ନାବିକମାନଙ୍କର ସାହସିକତା ବର୍ଣ୍ଣନା କରି ସେମାନେ ଅପରାଜେୟ ଥିଲେ ବୋଲି ଉଲ୍ଲେଖ କରିଛନ୍ତି।

ଇଂରେଜମାନେ କଳିଙ୍ଗ ସାଗରର ନାମ ପରିବର୍ତ୍ତନ କରି ନୂଆ ନାଁ ଦେଇଥିଲେ ବଙ୍ଗୋପସାଗର। ଏହି କଳିଙ୍ଗସାଗର ବା ବଙ୍ଗୋପସାଗର ଓ ମହାନଦୀର ସଙ୍ଗମ ସ୍ଥଳ ପାରାଦ୍ୱୀପଠାରେ ଏକ ସୁଗଭୀର ବନ୍ଦର କରିବାର ସ୍ୱପ୍ନ ବିଜୁବାବୁ ଦେଖିଥିଲେ। ବିଜୁ ପଟ୍ଟନାୟକଙ୍କ ଆପ୍ରାଣ ଉଦ୍ୟମ ଓ ଚେଷ୍ଟାର ଫଳ ସ୍ୱରୂପ ୧୯୬୨ ମସିହା ଜାନୁଆରୀ ୩ ତାରିଖ ଦିନ ପାରାଦ୍ୱୀପ ବନ୍ଦରର ଶିଳାନ୍ୟାସ ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଦ୍ୱାରା ହୋଇଥିଲା। କିନ୍ତୁ କେନ୍ଦ୍ରୀୟ ଯୋଜନାରେ ପାରାଦ୍ୱୀପ ବନ୍ଦର ପାଇଁ ଆର୍ଥିକ ସାହାଯ୍ୟ ମିଳିଲା ନାହିଁ। ବିଜୁ ପଟ୍ଟନାୟକ ରାଜ୍ୟ ସରକାରଙ୍କ ପାଣ୍ଠିରୁ ୧୯ କୋଟି ଟଙ୍କା ଖର୍ଚ୍ଚ କରିବାର ନିଷ୍ପତ୍ତି ନେଇ ସେହି ବର୍ଷ ନଭେମ୍ବର ୧୫ ତାରିଖରୁ ବନ୍ଦର ନିର୍ମାଣର କାର୍ଯ୍ୟ ଆରମ୍ଭ କଲେ। ବିଜୁ ପଟ୍ଟନାୟକଙ୍କ ଦୂରଦୃଷ୍ଟି ଓ ସ୍ୱପ୍ନ ବାସ୍ତବ ରୂପ ନେଲା। ତେବେ କେନ୍ଦ୍ର ସରକାର ଏକ ବୃହତ ବନ୍ଦର ଓଡ଼ିଶାର ପାରାଦ୍ୱୀପ ଅଥବା ପଶ୍ଚିମବଙ୍ଗର ହଳଦିଆ କେଉଁଠି ହେବ ସ୍ଥିର କରି ନ ପାରି ଦ୍ୱନ୍ଦ୍ୱରେ ରହିଥିଲେ।

୧୯୬୪ ମସିହାରେ ବିଜୁବାବୁ ଯୋଜନା ବୋର୍ଡ଼ର ଅଧ୍ୟକ୍ଷ ଥାଆନ୍ତି। ସେ ଭାରତ ସରକାରଙ୍କ ନିଷ୍ପତ୍ତିକୁ ଅପେକ୍ଷା ନ କରି ଓଡ଼ିଶା ସରକାରଙ୍କ ଅର୍ଥ ବିନିଯୋଗ କରି ପାରାଦ୍ୱୀପ ବନ୍ଦରର ଖନନ କାର୍ଯ୍ୟ ଭାରତସ୍ଥିତ ଯୁଗୋସ୍ଲୋଭିଆର ରାଷ୍ଟ୍ରଦୂତ ଡକ୍ଟର ଆର. ଷ୍ଟାମ୍ବୋଲିକଙ୍କ ସହଯୋଗରେ ଆରମ୍ଭ କଲେ। ୧୯୬୪ ମାର୍ଚ୍ଚ ୧୫ ତାରିଖ ଦିନ ଡ୍ରେଜର ଦ୍ୱାରା ପାରଦ୍ୱୀପ ବନ୍ଦର ଖନନ କାର୍ଯ୍ୟର ଶୁଭାରମ୍ଭ ହେଲା। ପାରଦ୍ୱୀପ ବନ୍ଦରରେ ଜାହାଜଗୁଡ଼ିକର ଆଶ୍ରୟ ପାଇଁ ଡ୍ରେଜର ସାହାଯ୍ୟରେ ଖୋଳାଯାଇ କୃତ୍ରିମ ହ୍ରଦ ସୃଷ୍ଟି କରାହେଲା। ବିଜୁ ପଟ୍ଟନାୟକ ପାରାଦ୍ୱୀପ ବନ୍ଦର ଖନନ ସହ ଦୈତାରି ଲୁହାଖଣିରୁ ଲୁହାପଥର ରପ୍ତାନୀ ପାଇଁ ଦୈତାରିଠାରୁ ପାରାଦ୍ୱୀପ ବନ୍ଦର ପର୍ଯ୍ୟନ୍ତ ୧୪୭ କିଲୋମିଟର ଲମ୍ବ ଏକ୍ସପ୍ରେସ ହାଇୱେ ନିର୍ମାଣ କରିଥିଲେ। ଏହି ରାସ୍ତା ନିର୍ମାଣ କରିବାର ଦାୟିତ୍ୱରେ ଥିଲେ ପୂର୍ତ୍ତ ବିଭାଗର ମୁଖ୍ୟ-ଯନ୍ତ୍ରୀ ଆର୍ତ୍ତବନ୍ଧୁ

Digitized by srujanika@gmail.com

ମହାନ୍ତି। ତାଙ୍କର ନିଷ୍ଠାପର ଉଦ୍ୟମ ଯୋଗୁଁ ଏହି ରାସ୍ତା କାମ ଠିକ୍ ସମୟରେ ସଂପୂର୍ଣ୍ଣ ହୋଇପାରିଥିଲା।

ବିଜୁବାବୁ ଏଭଳି କ୍ଷିପ୍ର ଗତିରେ ବନ୍ଦରର ନିର୍ମାଣ କାର୍ଯ୍ୟକୁ ଆଗେଇ ନେଲେ ଯେ, ଭାରତ ସରକାର ଅନନ୍ୟୋପାୟ ହୋଇ ୧୯୬୫ ଜୁନ୍ ୧ ତାରିଖରେ ଏହି ବନ୍ଦରକୁ ହାତକୁ ନେଲେ ଏବଂ ୪୦ କୋଟି ଟଙ୍କାର ଅନୁଦାନ ଦେବେ ବୋଲି ପ୍ରତିଶ୍ରୁତି ଦେଲେ। ଏହି ବନ୍ଦରରେ ବାଣିଜ୍ୟ କାରବାର ୧୨ ମାର୍ଚ୍ଚ ୧୯୬୬ରେ ଆରମ୍ଭ ହେଲା ଏବଂ ସେହିଦିନ ପାରାଦ୍ୱୀପ ବନ୍ଦର ମଧ୍ୟକୁ ପ୍ରଥମେ 'ଇନଭେଷ୍ଟିଗେଟର' ନାମକ ଜାହାଜ ପ୍ରବେଶ କଲା। ୧୮ ଏପିଲ ୧୯୬୬ରେ ଭାରତ ସରକାର ଏହାକୁ ବୃହତ୍ତ ବନ୍ଦର ଭାବେ ଘୋଷଣା କଲେ। ଏହି ବନ୍ଦରରେ ପୋର୍ଟ ଟ୍ରଷ୍ଟ ୧୧ ନଭେମ୍ବର ୧୯୬୭ରେ ଗଠିତ ହେଲା।

ପୂର୍ବକାଳରେ କୁହାଯାଉଥିଲା ଯେ ସବୁ ସହରର ରାସ୍ତା ବିଭବଶାଳୀ ସହର ରୋମ୍‌କୁ ପଡ଼ିଛି। ବିଜୁବାବୁ ଦମ୍ଭର ସହ କହିବା ଆରମ୍ଭ କଲେ ସବୁ ସାମୁଦ୍ରିକ ପଥ ପାରାଦ୍ୱୀପ ସହ ଯୋଡ଼ି ହୋଇଯିବ।

ପାରାଦ୍ୱୀପ ବନ୍ଦର ନିର୍ମାଣ ବେଳେ ବହୁ ଲୋକ ବିଭିନ୍ନ ଉପାୟରେ ଅର୍ଥଲୋଭରେ ବନ୍ଦର କର୍ତ୍ତୃପକ୍ଷଙ୍କୁ ଠକିବାକୁ ଚେଷ୍ଟା କରୁଥିଲେ। ଉଦାହରଣ ସ୍ୱରୂପ ଶହେ ଟ୍ରକ ପଥର ଯୋଗାଇବା ଜାଗାରେ ଦଶ ଟ୍ରକ ପଥର ଦେଇ ଶହେ ଟ୍ରକର ମୂଲ୍ୟ ନେଉଥିଲେ। ଏହିପରି ବହୁ ଠକେଇର କଥା ବିଶିଷ୍ଟ ଶିକ୍ଷାବିତ୍ ତଥା ମନସ୍ତତ୍ତ୍ୱ ବିଭାଗର ପ୍ରଫେସର ରାଧାନାଥ ରଥ ବିଜୁବାବୁଙ୍କ ଦୃଷ୍ଟିକୁ ଆଣିବାରୁ ସେ କହିଲେ, "ଦେଖ ମୁଁ ଯଦି ପ୍ରତ୍ୟେକ ପଇସାକୁ ଗଣିଗଣି ଚାଲିବି ତେବେ ପାରାଦ୍ୱୀପ ବନ୍ଦର ତିଆରି କରିବା ପାଇଁ ବହୁବର୍ଷ ଲାଗିଯିବ। ମୁଁ ଯଦି ଏସବୁ ପ୍ରତି ଆଖି ବୁଜିଦେଇ ଦୁଇବର୍ଷ ଭିତରେ କାମ ସାରିଦେବି, ତା'ହାଲେ ଯେତେ ଟଙ୍କା ବିନିଯୋଗ ହୋଇଛି ତାର ଦଶଗୁଣ ଏହି ବନ୍ଦର ମୋତେ ଗୋଟିଏ ବର୍ଷରେ ଦେବ। ତୁମେ କଅଣ ଚାହଁ, ମୁଁ ପ୍ରତ୍ୟେକ ପଇସାକୁ ଗଣି ଗଣି ଦଶବର୍ଷ ନେବି ନା ଦୁଇବର୍ଷ ପରେ କୋଟି କୋଟି ଟଙ୍କାର ରାଜସ୍ୱକୁ ଆଖିରେ ରଖିବି।" ପୁନର୍ବାର ସେ ତାଙ୍କୁ କହିଥିଲେ, "ତୁମେ ଜାଣ ଏହି ପାରାଦ୍ୱୀପ ବନ୍ଦର ଲାଗି 'ଷ୍ଟେଟସ୍‌ମ୍ୟାନ' କାଗଜ ମୋ ବିରୁଦ୍ଧରେ ଲାଗି ପଡ଼ିଛି। ବଙ୍ଗାଳୀମାନେ ପାରାଦ୍ୱୀପ ବନ୍ଦରର ଘୋର ବିରୋଧୀ। କାରଣ ହଳଦିଆ ବନ୍ଦର କାମ ଏଥିରେ ବାଧାପ୍ରାପ୍ତ ହେବ ବୋଲି ସେମାନଙ୍କର ଧାରଣା। ପଞ୍ଚବାର୍ଷିକ

Digitized by srujanika@gmail.com

ଯୋଜନାରେ ଏହାର ଚିହ୍ନବର୍ଣ୍ଣ ନାହିଁ ବୋଲି ମୋତେ ଲୋକସଭାରେ ଭର୍ତ୍ସନା କରାହେଉଛି। ଆମ ଓଡ଼ିଶାର ଗୋଟିଏ ପ୍ରତିଷ୍ଠିତ କାଗଜର ସଂପାଦକ ରେଳ ଲାଇନ୍ ପରିବର୍ତ୍ତେ ବନ୍ଦର ପାଇଁ ତିଆରି ହେଉଥିବା ଜାତୀୟ ମୁକ୍ତ ରାଜପଥ କେବଳ ବନ୍ଦର କାର୍ଯ୍ୟରେ ବ୍ୟବହୃତ ହେବା ଲାଗି ତିଆରି ହେଉଥିବା ବିରୋଧରେ ପୁସ୍ତିକା ଛପାଇ ବାଣ୍ଟୁଛନ୍ତି। ଅଥଚ ସେ ଜାଣନ୍ତି ଯେ ରେଳ ବିଭାଗ ରେଳ ଲାଇନ ମଂଜୁର କରୁନାହାଁନ୍ତି। ଆଉ ଆରମ୍ଭ କଲେ ମଧ୍ୟ ଏହା ଦଶବର୍ଷ ଲାଗିବ। ସେତେବେଳକୁ ହଳଦିଆ ବନ୍ଦର ହୋଇସାରିଥିବ। ଆଉ ପାରାଦ୍ୱୀପ କଥା ନିଶ୍ଚିତ ଭାବରେ କଥାରେ ହିଁ ରହିଥିବ। ତେଣୁ ମୋ ପାଖରେ ସମୟ କାହିଁ? କୌଣସି ମତେ ପଣ୍ଡିତ ନେହେରୁଙ୍କ ଦ୍ୱାରା ଏହାର ଭିତ୍ତି ପ୍ରସ୍ତର ସ୍ଥାପିତ ହୋଇଛି ଏବଂ ତାଙ୍କରି ଦ୍ୱାରା ହିଁ ଏହି ବନ୍ଦରର ଉଦ୍‌ଘାଟନ୍ କରିବାକୁ ମୁଁ ଚାହେଁ।" ସେ ପୁଣି କହିଲେ, "ଓଡ଼ିଆମାନେ ହିଁ ଓଡ଼ିଆମାନଙ୍କର ଶତ୍ରୁ। କେହି ଜଣେ କୌଣସି ବିରାଟ କାମରେ ହାତ ଦେଲେ ସେମାନେ ସହ୍ୟ କରିପାରନ୍ତି ନାହିଁ। ଉକ୍ତ କାଗଜର ସଂପାଦକ ଏହି ଦୈତାରି-ପାରାଦ୍ୱୀପ ରାଜପଥ ବିରୁଦ୍ଧରେ ନାନା କଥା ଲେଖି ଦେଶସାରା ବାଣ୍ଟୁଛନ୍ତି।"

ସେତେବେଳେ ପାରାଦ୍ୱୀପ ବନ୍ଦର ନିର୍ମାଣ କ୍ଷେତ୍ରରେ କଠୋର ସମାଲୋଚନା କରୁଥାନ୍ତି 'ସମାଜ'ର ସଂପାଦକ ରାଧାନାଥ ରଥ। 'ପ୍ରଜାତନ୍ତ୍ର' ସମ୍ବାଦପତ୍ର ମଧ୍ୟ ପାରାଦ୍ୱୀପ ବନ୍ଦର ନିର୍ମାଣରେ ଘୋର ଅବ୍ୟବସ୍ଥା ହେଉଛି ବୋଲି ଲେଖାଲେଖି କରୁଥାଏ। ଏହି ଦୁଇ ଖବରକାଗଜକୁ ଟପି ଯାଇଥାଏ ଗୋଦାବରୀଶ ମହାପାତ୍ରଙ୍କର 'ନିଆଁଖୁଣ୍ଟା' ପତ୍ରିକା। ବିଜୁବାବୁ କିନ୍ତୁ ସେସବୁ ସମାଲୋଚନାକୁ ଖାତିର ନକରି ପାରାଦ୍ୱୀପ ବନ୍ଦରକୁ କାର୍ଯ୍ୟକ୍ଷମ କରିବାକୁ ତାଙ୍କ ଉଦ୍ୟମ ଜାରି ରଖିଲେ।

୧୯୬୯ ମସିହାର ଘଟଣା। ଡଃ ମାୟାଧର ମାନସିଂହ, ତତ୍‌କାଳୀନ କଟକ ସଦର ବିଧାୟକ ଶ୍ରୀକାନ୍ତ ପଣ୍ଡାଙ୍କୁ ପୂର୍ବତନ ବିଧାୟକ ନିଶାମଣି ଖୁଣ୍ଟିଆଙ୍କ ସମ୍ପାଦନାରେ ପାରାଦ୍ୱୀପ ବନ୍ଦର ଉପରେ ପ୍ରକାଶ ପାଇଥିବା ଏକ 'ସ୍ମରଣିକା' ଦେଇ କହିଲେ, "ଦେଖ ଶ୍ରୀକାନ୍ତ, ଯେଉଁ ଲୋକଟି (ବିଜୁବାବୁ) ଏହି ବନ୍ଦରର ଜନ୍ମଦାତା, ପ୍ରଥମ ପୃଷ୍ଠାରୁ ଶେଷ ପୃଷ୍ଠା ପର୍ଯ୍ୟନ୍ତ ଖୋଜିଲ ଦେଖି ତାଙ୍କ ନାମ କେଉଁଠି ସେ ରଖିଛନ୍ତି କି?"

ବିଜୁବାବୁ କାମରେ ବିଶ୍ୱାସ କରୁଥିଲେ। ସେ ଆତ୍ମପ୍ରଚାର ବା ଅଯଥା ପ୍ରତିଶ୍ରୁତି ଦେବାର ଘୋର ବିରୋଧୀ ଥିଲେ। ୧୯୭୧ ମସିହାରେ ଭାରତ-ପାକିସ୍ତାନ ଯୁଦ୍ଧବେଳେ

Digitized by srujanika@gmail.com

ନୌସେନାର ବିରାଟ ଯୁଦ୍ଧ ଜାହାଜ 'ବିକ୍ରାନ୍ତ' ପାରାଦ୍ୱୀପ ବନ୍ଦରକୁ ଆସିବା ଏକ ଗୌରବମୟ ଅଧ୍ୟାୟ ଥିଲା।

ଆଦ୍ୟାବସ୍ଥାରେ ପାରାଦ୍ୱୀପ ବନ୍ଦରର ପ୍ରବେଶ ପଥର ଲମ୍ବ ୪୦୫ମିଟର ଓ ପ୍ରସ୍ଥ ୧୭୦ ମିଟର ଏବଂ ଗଭୀରତା ଥିଲା ୧୨.୨୫ ମିଟର। ବନ୍ଦରର ସମ୍ମୁଖ ପଥର ଲମ୍ବ ଥିଲା ୧୮୫୦ ମିଟର ଓ ପ୍ରସ୍ଥ ବା ଚଉଡ଼ା ଥିଲା ୧୯୦ ମିଟର ଓ ଗଭୀରତା ୧୨.୨୫ ମିଟର। 'ଆପ୍ରୋଚ୍ ଚ୍ୟାନେଲ୍'ର ଦୁଇ ପାଖରେ ଦୁଇ ବନ୍ଧ ନ' ଲକ୍ଷ ଟନ୍ ଗ୍ରାନାଇଟ୍ ପଥର ହରିଦାସପୁର ଓ ତାପଙ୍ଗରୁ ଅଣାଯାଇ ନିର୍ମିତ ହୋଇଛି। ପଶ୍ଚିମ ପଟ ବନ୍ଧର ଦୈର୍ଘ୍ୟ ୩,୯୬୦ ଫୁଟ ଓ ପୂର୍ବପଟ ବନ୍ଧର ଦୈର୍ଘ୍ୟ ୧,୭୨୦ ଫୁଟ ଥିଲା।

ବିଜୁ ପଟ୍ଟନାୟକ କ୍ଷମତାରେ ଥାଆନ୍ତୁ ବା ନ ଥାଆନ୍ତୁ ସବୁବେଳେ ପାରାଦ୍ୱୀପ ବନ୍ଦରର ଉନ୍ନତି ପାଇଁ ଚେଷ୍ଟିତ ଥିଲେ। ପାରାଦ୍ୱୀପ ବନ୍ଦରର କୌଣସି ଅସୁବିଧା ବିଷୟରେ ଶୁଣୁଥିଲେ ସେ ଉତ୍‌କ୍ଷିପ୍ତ ହୋଇଯାଉଥିଲେ। ଶ୍ରମିକ ସଙ୍ଗଠନଗୁଡ଼ିକ ନିଜ ନିଜ ଦାବି ହାସଲ ପାଇଁ ବେଳେବେଳେ କାର୍ଯ୍ୟବନ୍ଦ ଆନ୍ଦୋଳନ କରୁଥିଲେ। ତାହା ବିଜୁବାବୁଙ୍କୁ ଅସହ୍ୟ ହେଉଥିଲା। ଜଣେ ବିଶିଷ୍ଟ ଶ୍ରମିକ ନେତା ଓ ପୂର୍ବତନ ସାଂସଦ ଏକ ପ୍ରବନ୍ଧରେ ଏ ବିଷୟରେ ବର୍ଣ୍ଣନା କରିଛନ୍ତି। ସେହିଭଳି ସାଉଥ୍ କୋରିଆର 'ହୁଣ୍ଡାଇ' କମ୍ପାନୀ ୪୫ କୋଟି ଟଙ୍କା ବ୍ୟୟରେ ବନ୍ଦର ଚ୍ୟାନେଲକୁ ଗଭୀର କରିବାକୁ ପ୍ରସ୍ତାବ ଦେଇଥିଲେ। କିନ୍ତୁ ସେତେବେଳେ ଏତେ ଅର୍ଥ ବନ୍ଦରର କର୍ତ୍ତୃପକ୍ଷଙ୍କ ପାଖରେ ନ ଥିଲା। କେନ୍ଦ୍ର ସରକାରଙ୍କଠାରୁ ଋଣ କିମ୍ବା ଅନୁଦାନ ପାଇବା ମଧ୍ୟ ସମ୍ଭବ ହେଉନଥିଲା। ଏହା ହେଉଛି ନବେ ଦଶକର କଥା। ବିଜୁବାବୁ ଏହା ଶୁଣି କେନ୍ଦ୍ର ଜାହାଜ ଚଳାଚଳ ମନ୍ତ୍ରୀ କେ.ପି. ଉନିକ୍ରିଷ୍ଣନ୍, କେନ୍ଦ୍ର ଯୋଜନା ବୋର୍ଡର ଉପାଧ୍ୟକ୍ଷ, କେନ୍ଦ୍ର ଅର୍ଥ ସଚିବମାନଙ୍କ ସହିତ ଆଲୋଚନା କରିବା ଦ୍ୱାରା ସମସ୍ତେ ତାଙ୍କର ଭାରତର ବୃହତ ବନ୍ଦର ବିଷୟରେ ଜ୍ଞାନ ଓ ପାରାଦ୍ୱୀପ ବନ୍ଦର ସଂପର୍କରେ ଅଗାଧ ଜ୍ଞାନ ଦେଖି ସ୍ତମ୍ଭୀଭୂତ ହୋଇଯାଇଥିଲେ ଏବଂ କାଳବିଳମ୍ବ ନ କରି ପାରାଦ୍ୱୀପ ବନ୍ଦର ପାଇଁ ଆବଶ୍ୟକୀୟ ଅର୍ଥ ମଞ୍ଜୁର କରି ଦେଇଥିଲେ। ବିଜୁବାବୁ ପାରାଦ୍ୱୀପ ବନ୍ଦରର ଭବିଷ୍ୟତ ବିଷୟରେ ସବୁବେଳେ ବିଭିନ୍ନ ବୈଷୟିକ ସମ୍ମିଳନୀରେ ଚର୍ଚ୍ଚା କରିବା ଯୋଗୁଁ ପୃଥିବୀର ବିଭିନ୍ନ ଦେଶର ବାଣିଜ୍ୟ ସଂସ୍ଥାମାନେ ପାରାଦ୍ୱୀପ ବନ୍ଦର ସହିତ ନିଜର ସଂପର୍କ ଯୋଡ଼ିବାକୁ ଆରମ୍ଭ କଲେ ଓ କ୍ଷିପ୍ରଗତିରେ ବାଣିଜ୍ୟ କାରବାର ବୃଦ୍ଧି ପାଇଲା।

Digitized by srujanika@gmail.com

୧୯୯୨ ମସିହାରେ ସେହିଭଳି ତତ୍‌କାଳୀନ ପାରାଦ୍ୱୀପ ବନ୍ଦରର ଅଧ୍ୟକ୍ଷ ଅଶୋକ ପଟ୍ଟନାୟକ ବିଜୁବାବୁଙ୍କୁ ଜଣାଇଲେ ଯେ ପାରାଦ୍ୱୀପରେ ମେକାନିକାଲ କୋଲ୍ ହ୍ୟାଣ୍ଡଲିଙ୍ଗ ପ୍ଲାଣ୍ଟ ପ୍ରତିଷ୍ଠା କରିବା ପ୍ରସ୍ତାବ ପ୍ଲାନିଂ କମିଶନରେ ବରିଷ୍ଠ ଆଇ.ଏ.ଏସ୍ ଅଧିକାରୀ ଶ୍ରୀ ନିଖିଲ ସେନଗୁପ୍ତଙ୍କ ପାଖରେ ପଡ଼ିରହିଛି । ଏହି କଥା ଶୁଣିବା ମାତ୍ରେ କାଳବିଳମ୍ବ ନ କରି ବିଜୁବାବୁ ଟେଲିଫୋନ୍ ଯୋଗେ ଶ୍ରୀ ସେନଗୁପ୍ତଙ୍କୁ ଏହି ପ୍ରସ୍ତାବର ଗୁରୁତ୍ୱ ସଂପର୍କରେ ବୁଝାଇଦେଲେ ଏବଂ ଏହି ପ୍ରପୋଜାଲକୁ ତୁରନ୍ତ ମଞ୍ଜୁରୀ ଦେବାକୁ ଅନୁରୋଧ କଲେ । ବିଜୁବାବୁଙ୍କ କଥା ଶୁଣି ଶ୍ରୀ ସେନଗୁପ୍ତ ଚବିଶ ଘଣ୍ଟା ଭିତରେ ଯୋଜନା କମିଶନର ମଞ୍ଜୁରୀ ବନ୍ଦର ଚେୟାରମ୍ୟାନ୍‌ଙ୍କ ପାଖକୁ ପଠାଇ ଦେଇଥିଲେ ।

ଓଡ଼ିଶାବାସୀଙ୍କର ପାରାଦ୍ୱୀପ ବନ୍ଦରରୁ ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ ଆଦି ସ୍ଥାନକୁ କାର୍ତ୍ତିକ ପୂର୍ଣ୍ଣିମାରେ ହେଉଥିବା ବାଲିଯାତ୍ରାର ସ୍ମୃତି ଉଦ୍‌ଜୀବିତ କରିବାକୁ ବିଜୁ ପଟ୍ଟନାୟକ ପାରାଦ୍ୱୀପରୁ ବାଲି ପର୍ଯ୍ୟନ୍ତ ଏକ ନୌଯାତ୍ରାର ପରିକଳ୍ପନା କରିଥିଲେ । ୧୯୯୨ ମସିହାରେ ବିଜୁବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବା ସମୟରେ ଓଡ଼ିଶା ପର୍ଯ୍ୟଟନ ବିଭାଗ ଦ୍ୱାରା ପାରାଦ୍ୱୀପଠାରୁ ବାଲିଦ୍ୱୀପକୁ 'ବୋଇତଯାତ୍ରା' ଭଳି ଏକ ଅଭିନବ କାର୍ଯ୍ୟକ୍ରମ ଆୟୋଜନ କରିଥିଲେ । ଯେଉଁ ସାମୁଦ୍ରିକ ପଥରେ ପୂର୍ବରୁ ଆମର ସାଧବପୁଅମାନେ ପାରାଦ୍ୱୀପଠାରୁ ନୌକାରେ ବାଲିଦ୍ୱୀପକୁ ବାଣିଜ୍ୟ କରିବାକୁ ଯାଉଥିଲେ, ୧୦ ନଭେମ୍ବର ୧୯୯୨ ମସିହା କାର୍ତ୍ତିକ ପୂର୍ଣ୍ଣିମା ଦିନ ପାରାଦ୍ୱୀପରୁ ଠିକ୍ ସେହି ପଥରେ ବିଜୁବାବୁ କିଛି ଦୁଃସାହସିକ ଓଡ଼ିଆ ଯୁବକ ଓ ମହିଳାଙ୍କୁ ପ୍ରଥମଥର ପାଇଁ 'ଇଣ୍ଡିଆନ ନାଭାଲ ସେଲିଙ୍ଗ ଭେସେଲ ସମୁଦ୍ର' ନାଭିର କମାଣ୍ଡର ଆର.ଏଲ୍. ଗିଲ୍‌ଙ୍କ ନେତୃତ୍ୱରେ ବାଲିଦ୍ୱୀପକୁ ପଠାଇବା ସହ ସେମାନଙ୍କୁ ଶୁଭକାମନା ଜଣାଇଥିଲେ । ଏହି ଦୁଃସାହସିକ ଯାତ୍ରୀ ବାଲିଦ୍ୱୀପରେ ୩୦ ଜାନୁଆରୀ ୧୯୯୩ ମସିହାରେ ପହଞ୍ଚିଥିଲେ । ସେ ସମୟର ପର୍ଯ୍ୟଟନ ବିଭାଗର ଶାସନ ସଚିବ ଥିବା ଶ୍ରୀଯୁକ୍ତ ଅଶୋକ ମିଶ୍ର ଏହି ଯାତ୍ରା ପାଇଁ ସମସ୍ତ ଆୟୋଜନ ସୁଚାରୁରୂପେ ପରିଚାଳନା କରିଥିଲେ । ସେହି ସମୟରେ ଏହି ଲେଖକ କ୍ରୀଡ଼ା ଓ ଯୁବସେବା ବିଭାଗର ନିର୍ଦ୍ଦେଶକ ଓ ଅତିରିକ୍ତ ଶାସନ ସଚିବ ଥିଲେ । ବିଜୁ ପଟ୍ଟନାୟକଙ୍କ ନିର୍ଦ୍ଦେଶରେ ଆମ ବିଭାଗ ଏହି ଦୁଃସାହସିକ ନୌଯାତ୍ରା ପାଇଁ ସମସ୍ତ ସହାୟତା ପ୍ରଦାନ କରିଥିଲା । ଏହି ନୌଯାତ୍ରାରେ ଜଣେ ଓଡ଼ିଆ ଝିଅ ନିବେଦିତା ଆଚାର୍ଯ୍ୟ ଭାଗ ନେଇଥିଲେ, ଯେ କି ବର୍ତ୍ତମାନ କ୍ରୀଡ଼ା ଓ ଯୁବସେବା ବିଭାଗରେ କାର୍ଯ୍ୟରତ ଅଛନ୍ତି । ଏହି ଯାତ୍ରାର ସଫଳତା ପାଇଁ ଭାରତୀୟ

Digitized by srujanika@gmail.com

ନୌବାହିନୀ ସମସ୍ତ ସହାୟତା ଯୋଗାଇ ଦେଇଥିଲା। ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ପର୍ଯ୍ୟଟନ ମନ୍ତ୍ରୀ ଅନଙ୍ଗ ଉଦୟ ସିଂହଦେଓଙ୍କ ସହିତ ଏକ ବୃହତ ସାଂସ୍କୃତିକ ଦଳ ନେଇ ବିମାନଯୋଗେ ବାଲିଠାରେ ପହଞ୍ଚିଥିଲେ।

ପାରାଦ୍ୱୀପ ବନ୍ଦର ପ୍ରତିଷ୍ଠା ହେବା ପରେ ସେଠାରେ ବହୁ ପରିମାଣରେ ସରକାରୀ ଜମି ଥିବାରୁ ପରବର୍ତ୍ତୀ ବର୍ଷମାନଙ୍କରେ ଏଠାରେ ବହୁ କାରଖାନା ପ୍ରତିଷ୍ଠା ହୋଇଛି। ପାରାଦ୍ୱୀପ ଫସ୍‌ଫେଟ୍ସ ଲିମିଟେଡ୍ (ସାର କାରଖାନା), ଇଣ୍ଡିଆନ୍ ଅଏଲ୍‌ର ତୈଳ ବିଶୋଧନ କାରଖାନା, ଇଫ୍‌କୋ ସାର କାରଖାନା ଏବଂ ବହୁ ଛୋଟ ବଡ଼ କାରଖାନା ପାରାଦ୍ୱୀପଠାରେ ନିର୍ମିତ ହୋଇଛି। ଏତଦ୍‌ବ୍ୟତୀତ ପାରାଦ୍ୱୀପ ଆଖପାଖରେ ବହୁ ଦ୍ୱୀପ ଏବଂ ଖାଲି ଜାଗା ରହିଥିବାରୁ ଭବିଷ୍ୟତରେ ଏଠାରେ ଅନେକ କାରଖାନା ହେବାର ସମ୍ଭାବନା ମଧ୍ୟ ଅଛି। ତେବେ ଦକ୍ଷିଣ କୋରିଆର ପୋସ୍କୋ କମ୍ପାନୀ ଦ୍ୱାରା ଲୁହା କାରଖାନା ଏଠାରେ ପ୍ରତିଷ୍ଠା ନ ହେବା ଓଡ଼ିଶା ପାଇଁ ଦୁର୍ଭାଗ୍ୟର ବିଷୟ। ଏକବିଂଶ ଶତାବ୍ଦୀରେ ପାରାଦ୍ୱୀପ ବନ୍ଦରର ଅଭୂତପୂର୍ବ ଉନ୍ନତି ଘଟିବ ଏହା ଜଳଜଳ ହୋଇ ଦିଶୁଛି। ବର୍ତ୍ତମାନ ପାରାଦ୍ୱୀପ ବନ୍ଦରରେ ୧୫ଟି ବର୍ଥ କାର୍ଯ୍ୟକ୍ଷମ ହେଉଛି ଏବଂ ତିନୋଟି ବର୍ଥ ନିର୍ମାଣାଧିନ ଅଛି। କିନ୍ତୁ ବର୍ଥ ସଂଖ୍ୟା ଯେ ଅନ୍ୟୂନ ୨୪କୁ ବୃଦ୍ଧି ପାଇବ ଏହା ନିଃସନ୍ଦେହ। ବର୍ତ୍ତମାନର ପାରାଦ୍ୱୀପ ବନ୍ଦରର ଅଧ୍ୟକ୍ଷ ଶ୍ରୀ ରିଙ୍କେଶ ରାୟ କିଛିଦିନ ତଳେ ସାମ୍ବାଦିକମାନଙ୍କର ପ୍ରଶ୍ନର ଉତ୍ତରରେ ବନ୍ଦରର ବିକାଶ ପାଇଁ ହେଉଥିବା ଯୋଜନାମାନ ସମ୍ବନ୍ଧରେ ବିସ୍ତୃତ ଭାବରେ ସୂଚନା ଦେଇଥିଲେ।

ଭାରତର ୧୨ଟି ମୁଖ୍ୟ ବନ୍ଦରମାନଙ୍କ ମଧ୍ୟରେ ପାରାଦ୍ୱୀପ ଅନ୍ୟତମ। ଗୁଜୁରାଟର କାଣ୍ଡଲା ବନ୍ଦର ପରେ ସବୁଠାରୁ ଅଧିକ ପଣ୍ୟଦ୍ରବ୍ୟ ଏହି ବନ୍ଦରରୁ ବିଦେଶକୁ ରପ୍ତାନୀ କରାଯାଉଅଛି। ବିଜୁ ପଟ୍ଟନାୟକଙ୍କର ସ୍ୱପ୍ନ ଥିଲା ଯେ ପାରାଦ୍ୱୀପରେ ଏକ ଜାହାଜ ନିର୍ମାଣ କାରଖାନା ପ୍ରତିଷ୍ଠା ହେଉ। ତାହା ଆଜି ପର୍ଯ୍ୟନ୍ତ ହୋଇପାରିନାହିଁ। କେନ୍ଦ୍ର ସରକାର ପାରାଦ୍ୱୀପ ବନ୍ଦରରୁ ପ୍ରଚୁର ଆୟ କରୁଥିଲେ ମଧ୍ୟ ପାରାଦ୍ୱୀପ ବନ୍ଦର ପ୍ରତି ଅବହେଳା ପ୍ରଦର୍ଶନ କରୁଛନ୍ତି ବୋଲି ଅଭିଯୋଗ ହେଉଛି।

ପାରାଦ୍ୱୀପଠାରୁ ୧୫୦ କିଲୋମିଟର ପରିସୀମା ଭିତରେ ବିଭିନ୍ନ ଖଣିଖାଦାନରେ ବହୁ ପରିମାଣରେ ଲୁହା, କ୍ରୋମାଇଟ୍, କୋଇଲା, ମାଙ୍ଗାନିଜ ଆଦି ଗଚ୍ଛିତ ରହିଛି। ଏହିସବୁ ପ୍ରାକୃତିକ ସମ୍ପଦ ପାରାଦ୍ୱୀପରେ ଶିଳ୍ପ ପ୍ରତିଷ୍ଠା ପାଇଁ ଅନୁକୂଳ। ଏହିସବୁ ଖଣିଜ ପଦାର୍ଥ ପାରାଦ୍ୱୀପ ବନ୍ଦରରୁ ଏବେ ସୁବିଧାରେ ରପ୍ତାନୀ ହୋଇପାରୁଛି।

Digitized by srujanika@gmail.com

ବିସ୍ତୀର୍ଣ୍ଣ ଜଙ୍ଗଲ ଓ ଜଳରାଶି ମଧ୍ୟ ପାରାଦ୍ୱୀପ ବନ୍ଦର ପାଖରେ ଅଛି। ଅନେକ ନଦୀ ପାରାଦ୍ୱୀପ ବନ୍ଦର ନିକଟରେ ପ୍ରବାହିତ ହେଉଛନ୍ତି; ଯଥା- ମହାନଦୀ, ଦେବୀ, ବ୍ରାହ୍ମଣୀ, ଲୁଣା ଓ ପାଇକା।

ସମୟକ୍ରମେ ବିଶ୍ୱର ବହୁ ସହର, ମନ୍ଦିର, ଦୁର୍ଗ, ରାଜପ୍ରସାଦ ଧ୍ୱଂସ ହେଲା ପରି ଓଡ଼ିଶାର ବହୁ ବନ୍ଦର ଯଥା ଚିଲିକା ମୁହାଣର ମାଣିକପାଟଣା ବନ୍ଦର, ଋଷିକୁଲ୍ୟା ମୁହାଣର ଗୋପାଳପୁର ବନ୍ଦର, ଗଂଜାମ ଜିଲ୍ଲାର ବଂଶଧାରା ନଦୀର ମୁହାଣରେ ଅବସ୍ଥିତ କଳିଙ୍ଗପଟ୍ଟନମ୍ ବନ୍ଦର, ବାଲେଶ୍ୱର ବୁଢ଼ାବଳଙ୍ଗ ନଦୀ କୂଳରେ ଅବସ୍ଥିତ ବାଲେଶ୍ୱର ବନ୍ଦର, ଭଦ୍ରକ ଜିଲ୍ଲାର ବୈତରଣୀ ନଦୀ ମୁହାଣରେ ଅବସ୍ଥିତ ଚାନ୍ଦବାଲି ବନ୍ଦର, ମହାନଦୀ ମୁହାଣରେ ଅବସ୍ଥିତ କଟକ ବନ୍ଦର, କୋଣାର୍କ ବନ୍ଦର, ପୁରୀ ବନ୍ଦର ପରି ବହୁ ବନ୍ଦର ଧ୍ୱଂସ ପାଇ ଯାଇଛି। ବନ୍ଦର ଧ୍ୱଂସ ହେବାର ଅନେକ କାରଣ ମଧ୍ୟ ଅଛି, ଯେପରି ନଦୀ ପଥର ପରିବର୍ତ୍ତନ ହୋଇ ମୁହାଣ ପୋତି ହୋଇ ଅଗଭୀର ହୋଇଯିବା, ଜଙ୍ଗଲ କଟା ହେବା ହେତୁ ନଦୀର ପ୍ରଖରତା କମ୍ ହୋଇ ମୁହାଣ ପୋତି ହେବା, ଶାସକମାନଙ୍କ ଉଦାସୀନତା ଇତ୍ୟାଦି। ତେବେ ସଡ଼କ ପଥ, ରେଳପଥ ଆଦିର ବିକାଶ ଯୋଗୁଁ ଲୋକେ ଆଉ ସମୁଦ୍ର ପଥକୁ ଗୁରୁତ୍ୱ ନ ଦେବା ମଧ୍ୟ ବନ୍ଦର ଅକାମୀ ହେବାର ଅନ୍ୟ ଏକ କାରଣ। ବର୍ତ୍ତମାନ କିନ୍ତୁ ସ୍ଥିତି ବଦଳିବାରେ ଲାଗିଛି। ସାମୁଦ୍ରିକ ପଥଗୁଡ଼ିକରେ ପଣ୍ୟଦ୍ରବ୍ୟ କାରବାରକୁ ସୁବିଧାଜନକ ବିବେଚିତ କରାଯାଉଥିବାରୁ ନୂତନ ବନ୍ଦରମାନ ନିର୍ମାଣର ଆବଶ୍ୟକତା ଜରୁରୀ ହୋଇପଡ଼ିଛି। ଓଡ଼ିଶାରେ ଗୋପାଳପୁର ଓ ଧାମରାରେ ବନ୍ଦର ନିର୍ମିତ ହୋଇସାରିଲାଣି ଏବଂ ଆହୁରି ବନ୍ଦର ନିର୍ମାଣର ଯୋଜନା ରହିଛି।

ପାରାଦ୍ୱୀପ ବନ୍ଦର କାର୍ଯ୍ୟକ୍ଷମ ହେବାର ବାଉନ ବର୍ଷ ପୂରି ଗଲାଣି। ଏବେ ନିର୍ମାଣ କୌଶଳ ଉନ୍ନତି ହେବାରେ ଲାଗିଛି। ଏସବୁ ବ୍ୟତୀତ ବିଜୁବାବୁଙ୍କ ଉଦ୍ୟମରେ ବହୁ ଶିକ୍ଷା ତଥା ଶିଳ୍ପ ପ୍ରତିଷ୍ଠାନ ଏବଂ ଜଳସେଚନ ପ୍ରକଳ୍ପମାନ ମଧ୍ୟ ପ୍ରତିଷ୍ଠା ହୋଇଛି। ହେଲେ ଏସବୁ ମଧ୍ୟରେ ପାରାଦ୍ୱୀପ ବନ୍ଦରକୁ ତାଙ୍କର ଶ୍ରେଷ୍ଠ ଅବଦାନ ଭାବେ ବିବେଚନା କରାଯାଏ।

- ୦ -

Digitized by srujanika@gmail.com

## ବିଜୁବାବୁଙ୍କ ବିରୋଧରେ କେତୋଟି ମିଥ୍ୟା ଅଭିଯୋଗ

ବିଜୁ ପଟ୍ଟନାୟକଙ୍କ ବ୍ୟକ୍ତିତ୍ୱ, ବେପରୁଆ ମନୋବୃତ୍ତି, ବେଖାତିର ଭାବ ଓ ନିଜ ପ୍ରତି ରହିଥିବା ଅଦମ୍ୟ ବିଶ୍ୱାସ ଓଡ଼ିଶାର ସାଧାରଣ ଜନତାଙ୍କ ମଧ୍ୟରେ ଆଦୃତ ହେଉଥିଲେ ମଧ୍ୟ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ପ୍ରତି ତାହା ଅସହ୍ୟ ହେଉଥିଲା । ତିନୋଟି ଦୈନିକ ଓଡ଼ିଆ ଖବର କାଗଜ 'ସମାଜ', 'ପ୍ରଜାତନ୍ତ୍ର' ଓ 'ମାତୃଭୂମି' ବିଜୁବାବୁଙ୍କ ସମ୍ବନ୍ଧରେ ସାମାନ୍ୟ ତ୍ରୁଟିକୁ ତିଳକୁ ତାଳ କରି ପ୍ରକାଶ କରୁଥିବାର ଅନେକ କୁହନ୍ତି ।

ଏହି ବିରାଟ ବ୍ୟକ୍ତିଙ୍କୁ ଛୋଟ କରି ଦେଖାଇବାକୁ କିଛି ଲୋକ ୧୯୫୦ ମସିହାଠାରୁ ୧୯୯୭ ମସିହା ପର୍ଯ୍ୟନ୍ତ ଚେଷ୍ଟା କରିଛନ୍ତି । ତାଙ୍କ ବିରୋଧରେ ବାରମ୍ବାର ଦୁର୍ନୀତି ଅଭିଯୋଗ ଅଣାଯାଇଛି ଉଦ୍ଦେଶ୍ୟମୂଳକ ଭାବରେ । ଅଭିଯୋଗ ଆଣିଥିବା ବ୍ୟକ୍ତିମାନେ ନିଜ ନିଜର ଆତ୍ମସମୀକ୍ଷା କଲେ ଜାଣିପାରିବେ ଯେ ସେମାନେ ରାଜନୀତିରେ ଯୋଗଦେବା ପୂର୍ବରୁ ଥିଲେ କ'ଣ ଏବଂ ପରେ ହେଲେ କ'ଣ ?

ବିଜୁବାବୁ ସରକାରୀ ଅର୍ଥ ଅପଚୟ କରିବା କେହି କେବେ କହିନାହିଁ । ଯାହା କରନ୍ତି ସାଧାରଣ ଲୋକଙ୍କ ସ୍ୱାର୍ଥ ନିମନ୍ତେ । ଯେତେ ଅର୍ଥ ଉଦାର ମନରେ ବ୍ୟୟ କରିଛନ୍ତି ତାହା ନିଜ ଦଳ ପାଇଁ, ନିର୍ବାଚନ ଖର୍ଚ୍ଚ ପାଇଁ ଅଥବା ଲୋକଙ୍କୁ ସାହାଯ୍ୟ ଦେବା ପାଇଁ ଏବଂ ଏହାସବୁ ନିଜେ ରୋଜଗାର କରିଥିବା ଅର୍ଥ । ଅନେକ ପ୍ରାୟ ଜାଣିନଥିବେ ଯେ ବିଜୁବାବୁଙ୍କର ଗୋଟିଏ ହାତପାଣ୍ଠି ଥିଲା, ଯେଉଁଥିରୁ ମାସକୁ ମାସ ସେ ଗରିବ ପିଲାଙ୍କୁ ପାଠ ପଢ଼ିବା ପାଇଁ ଅର୍ଥ ପଠାନ୍ତି । ଓଡ଼ିଶା ବିଧାନସଭାରୁ ସେ ଯେଉଁ ଦରମା ପାଆନ୍ତି ତାହା ତାଙ୍କର ପି.ଏ.କୁ ଦେଇଦିଅନ୍ତି ଏବଂ ସେହି ପି.ଏ. ମନିଅର୍ଡ଼ର ମାଧ୍ୟମରେ ପିଲାମାନଙ୍କ ନିକଟକୁ ଟଙ୍କା ପଠାଇ ଥାଆନ୍ତି । ଏହିଭଳି ଜଣେ ମହାନ ବ୍ୟକ୍ତିଙ୍କୁ କିଭଳି ବିଭିନ୍ନ ବିବାଦ ମଧ୍ୟକୁ ଲୋକେ ଟାଣିନିଅନ୍ତି ତାହାର କେତୋଟି ଜ୍ୱଳନ୍ତ ଉଦାହରଣ ଦେବା ଉଚିତ ହେବ ।

୧୯୬୫ ଜୁନ୍ ୧୫ ତାରିଖ ରାତିରେ ଏକ ବିମାନକୁ ଭୁବନେଶ୍ୱର ବିମାନଘାଟିରେ ଅବତରଣ କରିବାରେ ବିଜୁବାବୁ ସାହାଯ୍ୟ କରିଥିବା ଏକ ଖବର

Digitized by srujanika@gmail.com

ଓଡ଼ିଶାର ପ୍ରମୁଖ ଖବରକାଗଜମାନଙ୍କରେ ପ୍ରକାଶ ପାଇଥିଲା । ସେତେବେଳେ ପ୍ରଚାର କରାଗଲା ଯେ ଅନ୍ତର୍ଜାତୀୟ କୁଖ୍ୟାତ ସୁନା ଚୋରା ବେପାରୀ ୱାଲକଟର ବିମାନକୁ ବିଜୁବାବୁ ଭୁବନେଶ୍ୱର ବିମାନ ବନ୍ଦରରେ ଅବତରଣ କରିବାକୁ ନିଜ ଜିପ୍‌ର ଲାଇଟ୍ ପକାଇ ସାହାଯ୍ୟ କରିଥିଲେ । ଇଙ୍ଗିତ ଦିଆଯାଇଥିଲା ଯେ ଏହି ଚୋରା ବେପାରୀ ଓ ବେପାର ସହିତ ବିଜୁବାବୁଙ୍କର ସମ୍ପର୍କ ଥିଲା । କିନ୍ତୁ ସତକଥାଟି ହେଉଛି ସେ ସମୟରେ ଭୁବନେଶ୍ୱର ବିମାନ ବନ୍ଦରରେ ବିମାନଗୁଡ଼ିକର ରାତିରେ ଓହ୍ଲାଇବାର ସୁବିଧା ନଥିଲା । ନୀଳମଣି ରାଉତରାୟ ଅଧରାତିରେ ଗୋଟିଏ ବିମାନ ଭୁବନେଶ୍ୱର ବିମାନ ବନ୍ଦରରେ ଚକର କାଟୁଥିବା ଦେଖି ନବୀନ ନିବାସକୁ ଫୋନ୍‌କରି ଘଟଣାଟି ବିଜୁବାବୁଙ୍କୁ ଜଣାଇଥିଲେ । ବିଜୁବାବୁ ବିମାନ ଚାଳକ ହୋଇଥିବା ଯୋଗୁଁ ବୁଝିପାରିଲେ ବିମାନଟି ଓହ୍ଲାଇବାକୁ ଚେଷ୍ଟା କରୁଛି, କିନ୍ତୁ ଓହ୍ଲାଇପାରୁନାହିଁ । ତେଣୁ ସେ ନିଜେ ଜିପ୍ ଚଳାଇ ବିମାନର ରନ୍‌ୱେକୁ ଚିହ୍ନାଇ ଦେବାଦ୍ୱାରା ବିମାନଟି ସୁରୁଖୁରୁରେ ଓହ୍ଲାଇ ପାରିଥିଲା ଓ ଦୁର୍ଘଟଣାରୁ ବଞ୍ଚି ଯାଇଥିଲା । ପରେ ପୋଲିସ ବିଭାଗ ତଦନ୍ତ କଲେ ଏବଂ ଜଣାପଡ଼ିଲା ଯେ, ବିମାନଟି କରାଚିରୁ କଲିକତା ଯାଉଥିଲା ବେଳେ ପାଗ ଖରାପ ଯୋଗୁଁ ଆକାଶମାର୍ଗରେ ବାଟବଣା ହୋଇଯାଇଥିଲା । ବିମାନରେ ଇନ୍ଧନ ମଧ ସରିଆସୁଥିଲା । ତେଣୁ ବିମାନର ପାଇଲଟ ମିଷ୍ଟର ଡେଭିସ୍ ଭୁବନେଶ୍ୱରରେ ବିମାନକୁ ଅବତରଣ କରିବାକୁ ଚେଷ୍ଟା କରି ବିଫଳ ହେଉଥିଲେ ଏବଂ ବିଜୁବାବୁଙ୍କ ସହଯୋଗ ଯୋଗୁଁ ବିମାନଟି ଅବତରଣ କରିପାରିଥିଲା ଓ ଡେଭିସ୍‌ଙ୍କ ଜୀବନ ରକ୍ଷା ହୋଇଗଲା । କିନ୍ତୁ ସତକଥାଟିକୁ ଚାପିଦେଇ ଖବରକାଗଜଗୁଡ଼ିକ ଚୋରା ସୁନା ବେପାରୀ ସହିତ ବିଜୁବାବୁଙ୍କ ଭଳି ଦେଶପ୍ରେମୀଙ୍କ ନାମକୁ ଯୋଡ଼ିବାରେ ଟିକିଏ ବି ସଙ୍କୋଚ କଲେ ନାହିଁ ।

ବିଜୁ ପଟ୍ଟନାୟକଙ୍କ ବିରୋଧରେ ଅର୍ଥ ତୋଷରପାତ ଓ ଦୁର୍ନୀତି ଅଭିଯୋଗ ଆଣି ଈର୍ଷା ଜର୍ଜରିତ ହୋଇ ୧୯୬୭ ମସିହାରେ ଡକ୍ଟର ହରେକୃଷ୍ଣ ମହତାବ ଓ ରାଜେନ୍ଦ୍ର ନାରାୟଣ ସିଂହଦେଓ ବିଚାରପତି ଏଚ.ଆର. ଖାନ୍ନାଙ୍କ ଅଧ୍ୟକ୍ଷତାରେ ଏକ ତଦନ୍ତ କମିଶନ ବସାଇଥିଲେ । ଖାନ୍ନା କମିଶନଙ୍କ ଇଜାଲାସରେ ମୁଖ୍ୟତଃ ବିଜୁ ପଟ୍ଟନାୟକ ଓ ଅନ୍ୟ ଦୁଇଜଣ ମୁଖ୍ୟମନ୍ତ୍ରୀ ବିରେନ ମିତ୍ର, ସଦାଶିବ ତ୍ରିପାଠୀ ଓ ଅନ୍ୟ ୧୫ଜଣ ପୂର୍ବତନ ମନ୍ତ୍ରୀଙ୍କ ବିରୋଧରେ ୭୦ଟି ଅଭିଯୋଗ ଫର୍ଦ୍ଦ ଦାଖଲ କରାଯାଇଥିଲା । ୧୯୬୯ ମସିହା ଜାନୁଆରୀ ୧୫ ତାରିଖରେ ନ୍ୟାୟମୂର୍ତ୍ତି ଖାନ୍ନା

Digitized by srujanika@gmail.com

ତାଙ୍କ ରିପୋର୍ଟ ଓଡ଼ିଶା ସରକାରଙ୍କ ପାଖରେ ଦାଖଲ କରିଥିଲେ। ପର୍ବତର ମୂଷିକ ପ୍ରସବ ଭଳି ଖାନ୍ନା ସମସ୍ତଙ୍କୁ ଦୁର୍ନୀତି ଓ ଅସଦ୍ ଉପାୟରେ ଅର୍ଥ ଆହରଣ ଅଭିଯୋଗରୁ ମୁକ୍ତ କରି ସେମାନଙ୍କ ମଧ୍ୟରୁ କେତେକ କେବଳ ଶାସନଗତ ଅସଙ୍ଗତି କରିଥିବା ଦର୍ଶାଇଥିଲେ। ଏହା ବିଜୁ ପଟ୍ଟନାୟକଙ୍କୁ ନିନ୍ଦିତ କରିବାକୁ ଚାହୁଁଥିବା ବ୍ୟକ୍ତିମାନଙ୍କୁ ଶକ୍ତ ଧକ୍କା ଦେଇଥିଲା।

୧୯୭୫ ମସିହା ଜୁନ୍ ୨୫ରେ ଇନ୍ଦିରା ଗାନ୍ଧୀଙ୍କ ନିର୍ଦ୍ଦେଶରେ ଦେଶରେ ଜରୁରୀକାଳୀନ ପରିସ୍ଥିତି ଜାରି ହେବା ସମୟରେ ବିଜୁବାବୁଙ୍କୁ ଜେଲ୍‌ରେ ବନ୍ଦୀ କଲାପରେ ବିଜୁବାବୁ ବିପୁଳ କଳାଟଙ୍କା ରଖିଛନ୍ତି ବୋଲି ସନ୍ଦେହରେ ଆୟକର ବିଭାଗକୁ ନିୟୋଜିତ କରି ନବୀନ ନିବାସ ଉପରେ ଚଢ଼ାଉ କରାଯାଇଥିଲା। ସବୁ ଜାଗା ଖୋଜାଖୋଜି ପରେ ନବୀନ ନିବାସର କାନ୍ଥ ଆଲମିରା ସହିତ ମାର୍ବଲ ଚଟାଣର କେତେକ ଅଂଶ ତାଡ଼ି ଚଢ଼ାଉ କରିଥିବା ଅଫିସରମାନେ କିଛି ନ ପାଇ ହତାଶ ହୋଇଥିଲେ।

୧୯୯୨ ମସିହା ଫେବୃଆରୀ ମାସରେ ଜନତା ଦଳର ସଭାପତି ଏସ୍.ଆର୍. ବୋମାଇଙ୍କୁ ରାଜ୍ୟସଭାକୁ ଓଡ଼ିଶାରୁ ପଠାଇବା ପାଇଁ ବିଜୁବାବୁ ଇଚ୍ଛା ପ୍ରକାଶ କଲେ। ଓଡ଼ିଶାର ଭୋଟର ନ ହୋଇଥିବା ଯୋଗୁଁ ବୋମାଇଙ୍କ ନିର୍ବାଚନ ପାଇଁ ସମସ୍ୟା ସୃଷ୍ଟି ହେଲା। କିନ୍ତୁ ଯେନତେନ ପ୍ରକାରେଣ ତାଙ୍କୁ ଓଡ଼ିଶାର କୌଣସି ଏକ ସ୍ଥାନରୁ ବିଜୁବାବୁଙ୍କ ଅଜାଣତରେ ଭୋଟର ତାଲିକାଭୁକ୍ତ କରାଇ ଦିଆଗଲା। ବୋମାଇ ଓଡ଼ିଶାରୁ ରାଜ୍ୟସଭା ପ୍ରାର୍ଥୀ ହୋଇ ଜୟଯୁକ୍ତ ହେଲେ। ରାଜ୍ୟର ବାସିନ୍ଦା ନ ହୋଇ ସେହି ରାଜ୍ୟରୁ ରାଜ୍ୟସଭା ପ୍ରାର୍ଥୀ ହେବା କଂଗ୍ରେସ ଦଳରେ ସମ୍ଭବ ହେଉଥିଲା। କିନ୍ତୁ ଜନତା ଦଳରେ ଏଭଳି ହେବାରୁ ବିଜୁବାବୁଙ୍କୁ କେତେକ ଲୋକ ନ ଜାଣି ଦୋଷ ଦେଇଥିଲେ। ଶୁଣାଯାଏ ସେତେବେଳର ଓଡ଼ିଶା ଜନତା ଦଳର ସଭାପତି ଅଶୋକ ଦାସ ବୋମାଇଙ୍କର ରାଜ୍ୟସଭା ଯିବାପାଇଁ ସମସ୍ତ ଆୟୋଜନ କରିଥିଲେ।

ବିଜୁବାବୁ ୧୯୬୧ରେ ରାଜ୍ୟର ମୁଖ୍ୟମନ୍ତ୍ରୀ ହେବା ସମୟରେ ନବୀନ ନିବାସ ନିର୍ମାଣ ପ୍ରାୟ ଶେଷ ହୋଇଯାଇଥିଲା, କିନ୍ତୁ ସାମ୍ନାରେ ଥିବା ପ୍ରାୟ ଅଧଏକର ଜମି ଭୁବନେଶ୍ୱର ଦେବୋତ୍ତର ବିଭାଗର (ଲିଙ୍ଗରାଜ ଟ୍ରଷ୍ଟ) ଥିଲା। ଏହା ଲିଜ୍ ସୂତ୍ରରେ କିଣା ଯାଇଥିଲା। ୧୯୬୨ରେ ୦.୪୦୦ ଡିସିମିଲ ଜମି (ଦଲିଲ୍ ନଂ.୧୮୨୧, ୨୧.୬୨) ବାବଦ ମୂଲ୍ୟ ଦିଆଯାଇଥିଲା ୨୦୦୦ ଟଙ୍କା। ପରବର୍ତ୍ତୀ ସମୟରେ

Digitized by srujanika@gmail.com

ଖାନ୍ନା କମିଶନ ନିକଟରେ ୨ ୨ ନମ୍ବର ଅଭିଯୋଗ ଥିଲା ଯେ, କ୍ଷମତା ଅପବ୍ୟବହାର କରି ମୁଖ୍ୟମନ୍ତ୍ରୀଙ୍କ ପତ୍ନୀ ଜ୍ଞାନ ପଟ୍ଟନାୟକ ଲିଙ୍ଗରାଜଙ୍କ ଜମି ହଡ଼ପ୍ କରିଛନ୍ତି । ମାତ୍ର ୧ ୯ ୬ ୯ ରେ କମିଶନ ଏହି ଅଭିଯୋଗ ଅଗ୍ରାହ୍ୟ କରିଦେଇଥିଲେ ।

୧ ୯ ୯ ୦ ରେ ବିଜୁବାବୁ ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ ହେବାପରେ କିଛି ଲୋକ ପୁଣି ନବୀନ ନିବାସ ପାଇଁ ଏ୦.୧୦ ସାଧାରଣ ପ୍ରଶାସନ ବିଭାଗର ଜମି ଦଖଲରେ ଅଛି ବୋଲି ଅଭିଯୋଗ କରିଥିଲେ । ଏହି ଦୃଷ୍ଟିରୁ ଶ୍ରୀମତୀ ଜ୍ଞାନ ପଟ୍ଟନାୟକ ଏହି ଏ୦.୧୦ ଜମି ସରକାରଙ୍କଠାରୁ ଲିଜ୍ ନେବାକୁ ଦରଖାସ୍ତ କରିଥିଲେ । ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଦୁଇଲକ୍ଷ ଟଙ୍କା ବିନିମୟରେ ୧୪ ଫେବୃଆରୀ ୧ ୯ ୯ ୨ ରେ ଏହି ଜମିକୁ ସାଧାରଣ ପ୍ରଶାସନ ବିଭାଗ ତରଫରୁ ଜ୍ଞାନ ପଟ୍ଟନାୟକଙ୍କୁ ଲିଜ୍ ସୂତ୍ରରେ ଦେଇଥିଲେ, ଯାହାକି ଆଇନ ସମ୍ମତ ଅଟେ । ତଥାପି ଏ ବିବାଦର ଅନ୍ତ ହେଉନାହିଁ ।

ବିଜୁ ପଟ୍ଟନାୟକ ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବାପରେ ପ୍ୟାରୀମୋହନ ମହାପାତ୍ର ତାଙ୍କର ସଚିବ ଭାବରେ ନିଯୁକ୍ତି ପାଇଥିଲେ । ପ୍ୟାରୀବାବୁ ଜଣେ ପରିଶ୍ରମୀ ଓ ଦୃଢ଼ମନା ବ୍ୟକ୍ତି ଭାବରେ ଜଣାଶୁଣା । କିନ୍ତୁ ସେ ନିରପେକ୍ଷତା ଅବଲମ୍ବନ କରି ସରକାରୀ ନିଷ୍ପତ୍ତି ନେଉନଥିଲେ ବୋଲି ବହୁ ଅଭିଯୋଗମାନ ଶୁଣାଯାଉଥିଲା । ବିଜୁବାବୁ ଜଣେ ଶୃଙ୍ଖଳାପ୍ରିୟ ବ୍ୟକ୍ତି ଥିଲେ । ଏହି ସୁଯୋଗ ନେଇ ପ୍ୟାରୀମୋହନ ମହାପାତ୍ର ନିମ୍ନପ୍ରଦତ୍ତ କେତୋଟି ନିଷ୍ପତ୍ତି ମୁଖ୍ୟମନ୍ତ୍ରୀଙ୍କଠାରୁ କରାଇନେଇ ପ୍ରଚଳନ କରିଥିଲେ, ଯାହା ବିଜୁବାବୁଙ୍କୁ ସରକାରୀ କର୍ମଚାରୀ ମହଲରେ ଅତ୍ୟନ୍ତ ଅପ୍ରିୟ କରାଇ ଦେଇଥିଲା । ପ୍ରଥମଟି ହେଲା, ସଚିବାଳୟର ଅଫିସର ଓ କର୍ମଚାରୀମାନେ ସାଧାରଣତଃ ସମୟାନୁବର୍ତ୍ତିତା ରକ୍ଷା କରନ୍ତି ନାହିଁ ଓ ବିଳମ୍ବରେ କାର୍ଯ୍ୟାଳୟକୁ ଆସନ୍ତି । ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରୁ ଏକ ଆଦେଶ ଜାରି ହେଲା ଯେ, ଦିନ ୧୧ଟା ପରେ ସେକ୍ରେଟାରିଏଟ୍ ଗେଟ୍‌ରେ ତାଲା ପଡ଼ିବ ଏବଂ ବିଳମ୍ବରେ ଆସୁଥିବା କର୍ମଚାରୀମାନେ ସେକ୍ରେଟାରିଏଟ୍ ଭିତରକୁ ଯାଇପାରିବେ ନାହିଁ । ଏହାଦ୍ୱାରା କର୍ମଚାରୀମାନଙ୍କ ମଧ୍ୟରେ ଅସନ୍ତୋଷ ଆରମ୍ଭ ହୋଇଥିଲା ।

ପୁଣି ବିଜୁବାବୁ ଗଭୀର କ୍ଷୋଭର ସହିତ କହିଥିଲେ ଯେ ସରକାରୀ କର୍ମଚାରୀମାନେ ଆଉ ଲୋକହିତକର କାର୍ଯ୍ୟ କରିବାକୁ ଆଗଭର ନୁହଁନ୍ତି । ତେଣୁ ସେ ନଭେମ୍ବର ୨ ୯ ତାରିଖ ୧ ୯ ୯ ୦ ମସିହାରେ ଦୁର୍ନୀତିଗ୍ରସ୍ତ ସରକାରୀ କର୍ମଚାରୀମାନଙ୍କୁ ଲୋକେ ମାଡ଼ ମାରିବାକୁ ଆହ୍ୱାନ ଦେଇଥିଲେ ।

Digitized by srujanika@gmail.com

ସରକାରୀ କର୍ମଚାରୀ ସରକାରୀ କ୍ୱାର୍ଟରରେ ନାମକୁ ମାତ୍ର ଭଡ଼ାଦେଇ ରହୁଥିଲେ। ରାଜଧାନୀରେ ସରକାରୀ କର୍ମଚାରୀମାନେ ନିଜନିଜର ଘର ଭଡ଼ାରେ ଲଗାଇ ସେଥିରୁ ଭଲ ପଇସା ରୋଜଗାର କରୁଥିଲେ। ଯେଉଁ ସରକାରୀ କର୍ମଚାରୀଙ୍କର ରାଜଧାନୀରେ ଘର ଥିବ ସେମାନଙ୍କୁ ସରକାରୀ କ୍ୱାର୍ଟରରୁ ବାହାର କରିବା ପାଇଁ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ନିଷ୍ପତ୍ତି ନେଲେ। ଏହା ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ କର୍ମଚାରୀଙ୍କୁ ବାଧିଲା। ଅଧିକାଂଶ ଆଇ.ଏ.ଏସ୍. ଅଫିସର ଏହି ନିଷ୍ପତ୍ତିକୁ ମାନି ନଥିଲେ। କିନ୍ତୁ ଏଭଳି ନିଷ୍ପତ୍ତି ହୋଇଥିବାରୁ ସରକାରୀ କର୍ମଚାରୀମାନଙ୍କ ମନରେ ଏକ ବିଦ୍ୱେଷ ସୃଷ୍ଟି ହୋଇଥିଲା।

ରାଜ୍ୟ ସରକାରୀ କର୍ମଚାରୀମାନେ ବର୍ଷରେ ଥରେ ରାଜ୍ୟର ଯେ କୌଣସି ସ୍ଥାନକୁ ପରିବାର ସହିତ ବୁଲିଯିବା ପାଇଁ ଲିଭ୍ ଟ୍ରାଭେଲ୍ କନସେସନ୍ (ଏଲ୍‌ଟିସି) ପାଇବାର ଏକ ବ୍ୟବସ୍ଥା ଚାଲିଆସୁଥିଲା। କିନ୍ତୁ ଅଧିକାଂଶ କ୍ଷେତ୍ରରେ କର୍ମଚାରୀମାନେ ବାହାରକୁ ନ ଯାଇ ମିଥ୍ୟା ବିଲ୍ ତିଆରି କରି କିଛି ରୋଜଗାର କରୁଥିଲେ। ସେହିଭଳି ଅର୍ଣ୍ଣ ଲିଭ୍ (ଇଏଲ୍)କୁ ବିକି ସେ ବାବଦରେ କିଛି ଅର୍ଥ ପାଉଥିଲେ। ଆର୍ଥିକ ଶୃଙ୍ଖଳା ଦ୍ୱାହି ଦେଇ ଖର୍ଚ୍ଚକାଟ ନାଁରେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ କର୍ମଚାରୀମାନଙ୍କର ଏ ଦୁଇଟି ସୁବିଧା ଉଚ୍ଛେଦ କରିଥିଲେ।

ଏହି ପୁଂଜିଭୂତ ଅସନ୍ତୋଷମାନ ସଚିବାଳୟ କର୍ମଚାରୀମାନଙ୍କ ମନରେ ବିଦ୍ରୋହ ସୃଷ୍ଟି କରିଥିଲା। ୧୯୯୩ ମସିହା ମେ' ମାସ ୫ ତାରିଖରେ ସଚିବାଳୟର କର୍ମଚାରୀମାନେ ସଂଘବଦ୍ଧ ହୋଇ ମୁଖ୍ୟ ଶାସନ ସଚିବ ଶ୍ରୀ ରବିନାରାୟଣ ଦାସଙ୍କୁ ତାଙ୍କ ଅଫିସ ଭିତରେ ପଶି ଆକ୍ରମଣ କରିଥିଲେ। ତାଙ୍କ ମୁଣ୍ଡରେ ଓ ଅନ୍ୟାନ୍ୟ ସ୍ଥାନରେ ଆଘାତ ଲାଗିଥିଲା ଏବଂ ସେ ମେଡିକାଲ ଯାଇ ଚିକିତ୍ସିତ ହୋଇଥିଲେ। କର୍ମଚାରୀମାନେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ମଧ୍ୟ ଫୁଲକୁଣ୍ଡ ପକାଇ ଆକ୍ରମଣ କରିଥିଲେ। ସୌଭାଗ୍ୟକ୍ରମେ ମୁଖ୍ୟମନ୍ତ୍ରୀଙ୍କର କିଛି କ୍ଷତି ହୋଇନଥିଲା।

ଉପରୋକ୍ତ ନିଷ୍ପତ୍ତିଗୁଡ଼ିକ ଯାହାକି ସରକାରୀ କର୍ମଚାରୀମାନଙ୍କୁ ଉତ୍କ୍ଷିପ୍ତ କରିଥିଲା ତାହା ମୁଖ୍ୟତଃ ପ୍ୟାରୀମୋହନ ମହାପାତ୍ରଙ୍କର ପରାମର୍ଶରେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଗ୍ରହଣ କରିଥିଲେ ବୋଲି ଅନେକ ଲୋକ ବିଶ୍ୱାସ କରନ୍ତି। କିନ୍ତୁ ଅତି ଚତୁରତାର ସହ ପ୍ୟାରୀମୋହନ ମୁଖ୍ୟ ଶାସନ ସଚିବ ରବିନାରାୟଣ ଦାସ ଏହିଭଳି କର୍ମଚାରୀ ବିରୋଧୀ ନିଷ୍ପତ୍ତି ବିଜୁ ପଟ୍ଟନାୟକଙ୍କ ଦ୍ୱାରା କରାଉଛନ୍ତି ବୋଲି ତାଙ୍କର

Digitized by srujanika@gmail.com

ସ୍ଥାବକମାନଙ୍କ ଦ୍ୱାରା ସଚିବାଳୟ କର୍ମଚାରୀମାନଙ୍କ ଭିତରେ ପ୍ରଚାର କରିବାରେ ସମର୍ଥ ହୋଇଥିଲେ ।

ସମସ୍ତେ ଜାଣନ୍ତି ଯେ ବିଜୁ ପଟ୍ଟନାୟକ ଏକ ହୃଦୟବାନ ବ୍ୟକ୍ତି । ସେ ଯେ ସରକାରୀ କର୍ମଚାରୀ ପାଉଥିବା କିଛି ସୁବିଧା ଉଚ୍ଛେଦ କରିବେ ଏହା ଅଚିନ୍ତନୀୟ । କିନ୍ତୁ ଆର୍ଥିକ ଶୃଙ୍ଖଳାର ଦ୍ୱାହିଦେଇ ମିତବ୍ୟୟିତା ପ୍ରଚଳନ କରିବାର ଆଦର୍ଶବାଦ ଓଡ଼ିଶାରୁ ସୃଷ୍ଟି ହେଉ ବୋଲି ତାଙ୍କୁ କହି ପ୍ୟାରୀମୋହନ ମହାପାତ୍ର ଏହିଭଳି ଆଦେଶମାନ ମୁଖ୍ୟମନ୍ତ୍ରୀଙ୍କଠାରୁ କରାଇ ନେଉଥିଲେ ବୋଲି ବହୁ ଲୋକଙ୍କ ମଧ୍ୟରେ ଚର୍ଚ୍ଚା ହେଉଥିଲା । ମୁଖ୍ୟ ଶାସନ ସଚିବ ରବିନାରାୟଣ ଦାସ ମଧ୍ୟ କର୍ମଚାରୀ ବିରୋଧୀ ବୋଲି କର୍ମଚାରୀମାନେ ଆଲୋଚନା କରୁଥିଲେ । ସଚିବାଳୟ ପ୍ରାଙ୍ଗଣରେ ଏହି ଯେଉଁ ଗୁରୁତର ବିଶୃଙ୍ଖଳା ସୃଷ୍ଟି ହେଲା, ମୁଖ୍ୟ ଶାସନ ସଚିବ ଓ ମୁଖ୍ୟମନ୍ତ୍ରୀଙ୍କୁ ଆକ୍ରମଣ ହେଲା, ତାହା ଭାରତର ଅନ୍ୟ କୌଣସି ରାଜ୍ୟରେ କେବେ ବି ହୋଇନଥିଲା ।

ବିଜୁ ପଟ୍ଟନାୟକ ସରକାରୀ କର୍ମଚାରୀମାନଙ୍କୁ ଉତ୍କ୍ଷିପ୍ତ କରିଥିବା ନିଷ୍ପତ୍ତିଗୁଡ଼ିକ ସମ୍ପର୍କରେ ପୁନର୍ବିଚାର କରିବାକୁ ଏକ ମନ୍ତ୍ରୀସ୍ତରୀୟ ସବ୍-କମିଟି ବିଜୟ ମହାପାତ୍ରଙ୍କ ଅଧ୍ୟକ୍ଷତାରେ ଗଠନ କରିଥିଲେ । ଏହି କମିଟି କର୍ମଚାରୀମାନଙ୍କ ସହ ଆଲୋଚନା କରିବା ପରେ ସେମାନେ ପାଉଥିବା ପୂର୍ବର ସୁବିଧାଗୁଡ଼ିକୁ ପୁର୍ନପ୍ରଚଳନ କରିବାକୁ ସୁପାରିଶ କରିଥିଲେ, ଯାହାକୁ କି ବିଜୁ ପଟ୍ଟନାୟକ ଗ୍ରହଣ କରିଥିଲେ ଏବଂ ସଚିବାଳୟର ବାତାବରଣ ଶାନ୍ତିପୂର୍ଣ୍ଣ ହୋଇଯାଇଥିଲା ।

- ୦ -

Digitized by srujanika@gmail.com

# ବିଜୁବାବୁଙ୍କ ସ୍ୱପ୍ନର ଓଡ଼ିଶା

ବିଜୁ ପଟ୍ଟନାୟକ ପିଲାଦିନୁ ଉଚ୍ଚାଭିଳାଷୀ ଥିଲେ। ସବୁକ୍ଷେତ୍ରରେ ଶ୍ରେଷ୍ଠତ୍ୱ ହାସଲ କରିବା ପାଇଁ ସେ ଆପ୍ରାଣ ଉଦ୍ୟମ କରୁଥିଲେ। ସେ ପାଠ ହେଉ ବା ଖେଳ ହେଉ। କେବେହେଲେ ନିଜର ଉନ୍ନତି, ପ୍ରତିଷ୍ଠା, ସୁଖମୟ, ଆରାମଦାୟକ ଜୀବନ ବିଷୟରେ ଚିନ୍ତା କରୁନଥିଲେ। ଛାତ୍ରାବସ୍ଥାରୁ ସ୍ୱାମୀ ବିବେକାନନ୍ଦ, ମହାତ୍ମା ଗାନ୍ଧି ଓ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କର କାର୍ଯ୍ୟାବଳୀ ତାଙ୍କୁ ପ୍ରଭାବିତ କରିଥିଲା। ସମୟର ପ୍ରଭାବ ସଙ୍ଗେ ସଙ୍ଗେ ତାଙ୍କର ଆଶା, ଅଭିଳାଷା, ସ୍ୱପ୍ନ ଓ କାର୍ଯ୍ୟ କେନ୍ଦ୍ରୀଭୂତ ହୋଇଥିଲା କେବଳ ଓଡ଼ିଶାର ସାମୁହିକ ବିକାଶ ଉପରେ। ଦାରିଦ୍ର୍ୟର ତାଡ଼ନାରେ ନିସ୍ତେଜ ହୋଇ ପଡ଼ି ରହିଥିବା ଓଡ଼ିଶା ଲୋକମାନଙ୍କୁ ଦେଖି ସେ ଧୈର୍ଯ୍ୟହରା ହୋଇ ପଡୁଥିଲେ। କିଭଳି ଏ ରାଜ୍ୟବାସୀଙ୍କର ହୃତଗୌରବ ପୁନଃପ୍ରତିଷ୍ଠିତ ହେବ ସେଇ ବିଷୟରେ ସେ ସବୁବେଳେ ଚିନ୍ତା କରୁଥିଲେ। ରାଜ୍ୟ ସୁଜଳା, ସୁଫଳା, ସ୍ୱର୍ଣ୍ଣପ୍ରସୂ ଭାବରେ କିପରି ଦେଶ ବିଦେଶରେ ନିଜକୁ ପ୍ରତିଷ୍ଠା କରିବ, ସେଥିପାଇଁ ସେ ସଦାସର୍ବଦା କାର୍ଯ୍ୟରେ ନିମଗ୍ନ ରହୁଥିଲେ।

୧୯୯୨ ମସିହା ଜାନୁଆରୀ ୨୭ ତାରିଖରେ ଓଡ଼ିଆ ଏନସାଇକ୍ଲୋପେଡିଆ ଜ୍ଞାନମଣ୍ଡଳର ପ୍ରତିଷ୍ଠାତା ସ୍ୱର୍ଗତ ବିନୋଦ କାନୁନଗୋଙ୍କ ସ୍ମୃତିଚାରଣ ନିମନ୍ତେ ଭୁବନେଶ୍ୱର ଜୟଦେବ ଭବନରେ ଆୟୋଜିତ ଏକ ସାଧାରଣ ସଭାରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ତାଙ୍କ ଭାଷଣରେ କହିଥିଲେ– "ବିନୋଦଟା ମୋ ଆଗରୁ ଚାଲିଗଲା, ତା'ଠାରୁ ଓଡ଼ିଶା ବହୁତ ପାଇବାର ଥିଲା। ବରଂ ତା' ଆଗରୁ ମୁଁ ଚାଲିଯାଇଥିଲେ ଭଲ ହୋଇଥାନ୍ତା।" ଏହି ଦି'ପଦ କଥା କହିବାପରେ ଏକବିଂଶ ଶତାବ୍ଦୀରେ ତାଙ୍କ ଦୃଷ୍ଟିରେ ଓଡ଼ିଶା କ'ଣ ହେବ ସେ ସଂପର୍କରେ ସେ ଯେଉଁ କଳନା କରିଥିଲେ ତାହା ନିମ୍ନଲିଖିତ ବକ୍ତବ୍ୟରୁ ସ୍ପଷ୍ଟ ଜଣାପଡ଼େ।

ବିଜୁବାବୁ କହିଥିଲେ– ମୁଁ ସ୍ଥିର କରିଛି ଆଜି କିଛି କହିବି ନାହିଁ। କେବଳ ସ୍ୱପ୍ନ ଖୋଜିବି ଆଉ ମୋ ସ୍ୱପ୍ନର ଓଡ଼ିଶା ସମ୍ପର୍କରେ କିଛି ଆଲୋଚନା କରିବି। ମୋତେ କୁହାଯାଇଛି ଯେ, ମୁଁ ମୋ ସ୍ୱପ୍ନର ଓଡ଼ିଶାର ପରିକଳ୍ପନା ଏଠି ରଖିବି। କି ସ୍ୱପ୍ନ ମୁଁ

Digitized by srujanika@gmail.com

ଦେଖିବି ? ସେ ସ୍ୱପ୍ନର ଆକାର କ'ଣ - ଭିତ୍ତି କ'ଣ ? ଥରେ କବିଗୁରୁ ରବୀନ୍ଦ୍ରନାଥ ଠାକୁର କହିଥିଲେ ମହନୀୟ ତଥା ବିଶାଳ ସ୍ୱପ୍ନ ଦେଖ।

ମୁଁ ଯେତେବେଳେ ଓଡ଼ିଶାକୁ ନେଇ ସ୍ୱପ୍ନ ଦେଖେ, କ'ଣ ଦେଖିବି ? ଓଡ଼ିଶା ଆଜି କ୍ଷୁଦ୍ର ସ୍ଥାନଟିଏ। ଦିନେ ଏହା ଥିଲା ଭାରତର ମହାନତମ ସାମ୍ରାଜ୍ୟ। ଏହାର ସୈନ୍ୟ ଆଲେକ୍‌ଜାଣ୍ଡାର୍‌ଙ୍କ ସୈନ୍ୟବାହିନୀକୁ ପରାସ୍ତ କରିଥିଲେ ଏବଂ ସେମାନଙ୍କୁ ଭାରତର ସୀମା ବାହାରକୁ ତଡ଼ି ଦେଇଥିଲେ। ପୃଥିବୀରେ ଆଗରୁ ଯେତେ ଜଣାଶୁଣା ନୌଶକ୍ତି ଥିଲା, କଳିଙ୍ଗ ଥିଲା ସେଥି ମଧ୍ୟରେ ବୃହତ୍ତମ।

କଳିଙ୍ଗ ସମଗ୍ର ଦକ୍ଷିଣ-ପୂର୍ବ ଏସିଆରେ ତା'ର ସଭ୍ୟତା ବିସ୍ତାର କରିଥିଲା। ଏପରିକି ଆଜି ମଧ୍ୟ ସେଇ ଦେଶ ଗୁଡ଼ିକରେ କଳିଙ୍ଗ ଗୌରବର ମୂକସାକ୍ଷୀ ରୂପେ ଧ୍ୱଂସାବଶେଷମାନ ଦେଖିବାକୁ ମିଳେ। ଯେତେବେଳେ କଳିଙ୍ଗ ଥିଲା ଭାରତର ମହାନତମ ସାମ୍ରାଜ୍ୟ, ଯେତେବେଳେ କଳିଙ୍ଗର ନାବିକମାନେ ଭୟ କ'ଣ ଜାଣି ନ ଥିଲେ, କଳିଙ୍ଗର ମାତାମାନେ 'ବୀରାଙ୍ଗନା' ରୂପେ ଅଭିହିତ ଥିଲେ, ସେ ଦିନର କଳିଙ୍ଗ ଯେମିତି ଥିଲା ସେହିଭଳି କଳିଙ୍ଗ ଆମର କାମ୍ୟ।

ମୋର ଏକବିଂଶ ଶତାବ୍ଦୀର ଓଡ଼ିଶା ସ୍ୱପ୍ନରେ ରାଜ୍ୟର ସ୍ୱାର୍ଥକୁ ନିଜର ମଣୁଥିବା ତରୁଣ-ତରୁଣୀ ଅନ୍ତର୍ଭୁକ୍ତ। ସେମାନେ ନିଜକୁ ମହିମାନ୍ୱିତ ମଣିବା, ନିଜ ଉପରେ ପ୍ରତ୍ୟୟ ରଖିବା ଆବଶ୍ୟକ। ସେମାନେ ନିଜ ଉପରେ ଆସ୍ଥା ରଖିଲେ କାହାର ଅନୁକମ୍ପା ଚାହିବେ ନାହିଁ। ସେମାନଙ୍କ ମସ୍ତିଷ୍କ, ବୁଦ୍ଧି ଓ ଯୋଗ୍ୟତା ମାଧ୍ୟମରେ କଳିଙ୍ଗ ଇତିହାସ ସେମାନେ ପୁନରୁଦ୍ଧାର କରିବା ଉଚିତ। ଏକବିଂଶ ଶତାବ୍ଦୀରେ ମୁଁ ଚାହେ ସୁଯୋଗ୍ୟ ଶିଳ୍ପୀ, ସୁନାମଧନ୍ୟ କାରିଗର ଏବଂ ଭାସ୍କର, ସୁମହାନ ସଙ୍ଗୀତଜ୍ଞ ଓ କବି। ଆମେ ହିଁ କୋଣାର୍କର ସ୍ରଷ୍ଟା। ଓଡ଼ିଶା ଓ କଳିଙ୍ଗ ମାଟିରେ ଦିନେ 'ଗୀତଗୋବିନ୍ଦ' ରଚିତ ହୋଇଥିଲା। ଏଇ ମାଟିରେ ମହାନ ଜ୍ୟୋତିର୍ବିତ୍ ଗଣିତଜ୍ଞ ପଠାଣି ସାମନ୍ତ ଭୂମିଷ୍ଠ ହୋଇଥିଲେ। ତାଙ୍କ ଗଣନା ମାଧ୍ୟମରେ ସେ ଆକାଶକୁ ଚାହିଁ ଜ୍ୟୋତିର୍ବିଜ୍ଞାନର ରହସ୍ୟ ଉଦ୍‌ଘାଟନ କରିଥିଲେ ଏବଂ ବିଶ୍ୱକୁ ବିସ୍ମିତ କରିଥିଲେ। ଏଇ ମାଟିରେ ମହାନ ଗଣିତ ପ୍ରତିଭା, ମହାନ ଭାସ୍କର ଓ ଶିଳ୍ପୀ, ମହାନ ସଙ୍ଗୀତଜ୍ଞ ଓ ନର୍ତ୍ତକ-ନର୍ତ୍ତକୀ ଭୂମିଷ୍ଠ ହୋଇଛନ୍ତି। ମହାନ୍ ସଂସ୍କୃତି ସମ୍ପନ୍ନ ବ୍ୟକ୍ତି ଜନ୍ମଲାଭ କରିଛନ୍ତି। ତେଣୁ ମୋ ସ୍ୱପ୍ନର ଓଡ଼ିଶାରେ ଏହିଭଳି ପ୍ରତିଭା ଉଜ୍ଜୀବିତ ହେବା ଉଚିତ।

Digitized by srujanika@gmail.com

ମୁଁ ଇଂରାଜୀ ଭାଷା କଥା କହୁଛି। ସେ ଭାଷାରେ ଆମ 'କରୁଣା' ଶବ୍ଦର କିଛି ପ୍ରତିଶବ୍ଦ ନାହିଁ। ଜଣେ ତରୁଣୀ ଯେତେବେଳେ ତା'ର ଇଷ୍ଟଦେବଙ୍କୁ ପୂଜା କରୁଛି, ସେତେବେଳେ ଆଶୀର୍ବାଦ ଭିକ୍ଷାକରି କହିଥାଏ– ହେ ପ୍ରଭୁ ମୋ ହୃଦୟକୁ କରୁଣାରେ ଭରିଦିଅ। ମୁଁ ଅନ୍ୟ କିଛି ପାଇଁ ଅଳି କରୁନାହିଁ। ମୋ ସ୍ୱପ୍ନର ଓଡ଼ିଶାର ସଂସ୍କୃତିରେ ଏହି ଭାବ ପରିପ୍ରକାଶ ହେଉ।

କି ପୁରୁଷ କି ମହିଳା ଆମେ ଆଜି ସମସ୍ତେ ସଙ୍କୁଚିତ। କୌଣସି ପ୍ରକାର ମହାନ ଅଭିଳାଷ ପୋଷଣ କରୁ ନ ଥିବାରୁ ଆମକୁ କ୍ଷୁଦ୍ରତା ଗ୍ରାସ କରି ଯାଉଛି। ଛୋଟ ଛୋଟ ସମସ୍ୟା, ଛୋଟଧରଣର ମାରପେଞ୍ଚ, ଛୋଟିଆ ଅନୁରାଗ ଓ ବିରାଗ, ଛୋଟିଆ ଲାଭ ବା କ୍ଷତି ହୋଇଯାଇଛନ୍ତି ଆମ ସହଚର। ଓଡ଼ିଶାର ପ୍ରଗତି ସାଧିତ ହୋଇପାରିବ କେବଳ ସାମୂହିକ ଇଚ୍ଛାଶକ୍ତି ବା ସଂକଳ୍ପ ଦ୍ୱାରା। ଆମର ପୂର୍ବପୁରୁଷ ଥିଲେ ମହାନ - ଆମେ ସେମାନଙ୍କ ଦାୟାଦ। ଏଇ ଯେଉଁ ସୁନ୍ଦର ପର୍ବତ, ନଦନଦୀ, ପ୍ରଶାନ୍ତ ସମୁଦ୍ର ତଥା ସବୁଜିମାଭରା ଅରଣ୍ୟ ମୁଁ ଦେଖୁଛି ସେ ସବୁ ହେଲେ ଆମକୁ ଈଶ୍ୱରଙ୍କର ଅମୂଲ୍ୟ ଦାନ, ଆମ ଜାତିର ସମ୍ପତ୍ତି। ମୁଁ ଆଶା କରୁଛି ମୋ ଭାଇ ଓ ଭଉଣୀମାନେ ମୋ ରାଜ୍ୟର ତରୁଣ ପିଢ଼ି ଆଗାମୀ ବର୍ଷ ଗୁଡ଼ିକରେ ଈଶ୍ୱରଙ୍କର ଏହି ଦାନକୁ ଉପଯୁକ୍ତ ଭାବରେ କାମରେ ଲଗାନ୍ତୁ। ଏଭଳି କଳକାରଖାନା ସବୁ ବସାନ୍ତୁ ଯାହା ସମସ୍ତଙ୍କ ପାଇଁ ଐଶ୍ୱର୍ଯ୍ୟ ଆଣିଦେବ। ସମସ୍ତଙ୍କୁ ଜୀବିକା ତଥା କାମ ଯୋଗାଇଦେବ।

ମୋ ସ୍ୱପ୍ନର ଓଡ଼ିଶାରେ କୌଣସି କୃଷକର କ୍ଷେତ ଶୁଷ୍କ-ଶ୍ରୀହୀନ ରହିବ ନାହିଁ। ଆମ ମାଟିକୁ ସିକ୍ତ କରୁଥିବା ପ୍ରତିଟି ଜଳବିନ୍ଦୁ ସବୁଜ ସମ୍ଭାରର ଉପହାର ଅଜାଡ଼ି ଦେଉ। ମୋ ସ୍ୱପ୍ନର ଆଗାମୀ କାଲିର ଓଡ଼ିଶାରେ ମୁଁ ନାରୀ ନିର୍ଯାତନା ସମ୍ପର୍କରେ ପଦୁଟାଏ କାନକୁହା କଥା ବି ଶୁଣିବାକୁ ଚାହେନାହିଁ। ନାରୀ ପୁରୁଷ ସହିତ ସମାନ ଭୂମିକାରେ ଅବତୀର୍ଣ୍ଣା ହେବାର ସୁଦିନ କେମିତି ଶୀଘ୍ର ଆସିବ, ମୁଁ ଆଜି ସେଇ ସ୍ୱପ୍ନ ଦେଖୁଛି। ସେମାନେ ପୁରୁଷ ସହିତ ସମାନ ଅଧିକାର ଲାଭ କରିବେ। ସମାନ ସୁବିଧା ସୁଯୋଗ ଉପଭୋଗ କରିବେ। ଏହା ହିଁ ମୋର ଆଗାମୀ କାଲିର ସ୍ୱପ୍ନ, ଏକବିଂଶ ଶତାବ୍ଦୀର ସ୍ୱପ୍ନ। ସେତେବେଳକୁ ମୋ ରାଜ୍ୟର କୌଣସି ଶିଶୁ ଖାଦ୍ୟାଭାବର କ୍ଲେଶ ଭୋଗ କରିବ ନାହିଁ। କ୍ଷୁଧିତ ରହିବ ନାହିଁ କିମ୍ବା ଅପୁଷ୍ଟିର ଶିକାର ହେବ ନାହିଁ। ନିରକ୍ଷରତା ବା ଅଜ୍ଞତା ମୋ ରାଜ୍ୟର ସୀମା ମାଡ଼ିବ ନାହିଁ।

Digitized by srujanika@gmail.com

ମୋ କୃଷିଜୀବୀମାନଙ୍କ ପାଇଁ ମୁଁ ସ୍ୱପ୍ନ ଦେଖୁଛି ଯେ, ଜଳାଭାବରେ ସେମାନଙ୍କ କ୍ଷେତରୁ ଶସ୍ୟ କେବେ ନଷ୍ଟ ନ ହେଉ। ପ୍ରତିଟି ଜଳବିନ୍ଦୁ ସଂରକ୍ଷିତ ହେଉ, ଉତ୍ପାଦନ ପାଇଁ ନିୟୋଜିତ ହେଉ। ପ୍ରାକୃତିକ ଦୁର୍ବିପାକ ଓଡ଼ିଶାର ଅଭିଶାପ। କିନ୍ତୁ ଏହା ହେଉ ଅତୀତର ଅଧ୍ୟାୟ। କବର ତଳେ ରହୁ। ଯେତେବେଳେ ନଦୀଧାରା ନିୟନ୍ତ୍ରିତ ହେବ, ଜଳ ସଂରକ୍ଷଣ ନିର୍ମାଣ ପ୍ରକଳ୍ପମାନ କାର୍ଯ୍ୟକାରୀ ହେବ, ଆବଶ୍ୟକ ବେଳେ ଶୁଷ୍କ କ୍ଷେତରେ ଆଉ ଜଳାଭାବ ରହିବ ନାହିଁ।

ଗତକାଲି ମୁଁ ଆଦିବାସୀମାନଙ୍କ ଉପରେ ହୋଇଥିବା ଗୋଟିଏ ପ୍ରଦର୍ଶନୀ ଉଦ୍‌ଘାଟନ କରିବାକୁ ଯାଇଥିଲି। ଆପଣମାନଙ୍କ ଭିତରୁ ଯେଉଁମାନେ ସେଠିକି ଯାଇ ନାହାଁନ୍ତି ସେମାନଙ୍କୁ ମୁଁ ଅନୁରୋଧ କରିବି ସେଠି କିଛି ସମୟ କଟାଇ ଆଦିବାସୀମାନଙ୍କର ଜୀବନଧାରଣ ରୀତିନୀତି ଅନୁଧ୍ୟାନ କରନ୍ତୁ ବୋଲି। ଫଳରେ ଆପଣମାନେ ଜାଣିପାରିବେ ଆମ ଭିତରୁ ଶତକଡ଼ା ୨୫ ଭାଗ ଲୋକ କିଭଳି କାଳାତିପାତ କରୁଛନ୍ତି। ମୁଁ କାମନା କରୁଛି ମୋ ରାଜ୍ୟର ପ୍ରତ୍ୟେକ ନାଗରିକ ପାଖରେ ମୁଣ୍ଡ ଗୁଞ୍ଜିବାକୁ ବାସ ଥିବ, ସେ ନିରୋଳା ପାନୀୟ ଜଳ ପାଉଥିବ, ତଥା ସବୁଦିନିଆ ନିରାପଦତା ଲାଭ କରୁଥିବ। ସବୁଦିନିଆ ରାସ୍ତା, ଦକ୍ଷ ଶିକ୍ଷୟିତ୍ରୀଙ୍କ ଦ୍ୱାରା ପରିଚାଳିତ ସ୍କୁଲ୍ ଏବଂ ଅଭିଜ୍ଞ ଡାକ୍ତର ଥିବା ଡାକ୍ତରଖାନା ସେମାନଙ୍କ ନିମନ୍ତେ ଉପଲବ୍ଧ ହେଉଥିବ। ଏସବୁର ସୁନିଶ୍ଚିତ ବ୍ୟବସ୍ଥା ମୋ ସ୍ୱପ୍ନର ଓଡ଼ିଶାରେ କରାଯାଇପାରିଥିବ। ଶିକ୍ଷା, ସ୍ୱାସ୍ଥ୍ୟ, ପରିବହନ ଦିଗରୁ ରାଜ୍ୟର କୌଣସି ଅଞ୍ଚଳ ଅବହେଳିତ ଅବସ୍ଥାରେ ନ ଥିବ। ଆଧୁନିକ ବିଜ୍ଞାନର ଦାନ ବୋଲି ଗଣାଯାଉଥିବା ଟେଲିଫୋନ୍ ଇଲେକ୍ଟ୍ରୋନିକ୍ସ ଭଳି ସଞ୍ଚାର ବ୍ୟବସ୍ଥା ସବୁର ଉପଯୋଗ ଜଣେ ସାଧାରଣ ଗ୍ରାମବାସୀ ମଧ୍ୟ ସେତେବେଳେ କରିପାରୁଥିବ।

ଯେଉଁ ପ୍ରକୃତିଦତ୍ତ ଖଣିଜସଂପଦଦ୍ୱାରା ଆମେ ଆଜି ସମୃଦ୍ଧ, ଆସନ୍ତା ଅନେକ ବର୍ଷ ନିମନ୍ତେ ତାହା ବହୁ ପ୍ରମୁଖ ଉଦ୍ୟୋଗକୁ ଚଳାଇ ରଖିପାରିବ। ଇସ୍ପାତ ହେଉ, କୋଇଲାରୁ ବିଦ୍ୟୁତଶକ୍ତି ଉତ୍ପାଦନ ହେଉ, ଆଲୁମିନିୟମ ହେଉ ତୈଳ ବିଶୋଧନାଗାର ହେଉ ବା ପେଟ୍ରୋକେମିକାଲ ଶିଳ୍ପ ହେଉ ଏସବୁ ନିମନ୍ତେ କଞ୍ଚାମାଲର ଅଭାବ ରହିବ ନାହିଁ। ଏସବୁ ଉଦ୍ୟୋଗକୁ ଆମେ ଚଳାଇପାରିଲେ ପୃଥିବୀର ସବୁ ଅଞ୍ଚଳରେ ଲୋକଙ୍କ ପାଇଁ ଆମ ରାଜ୍ୟ ଆକର୍ଷଣୀୟ ହୋଇଉଠିବ। ସାଂପ୍ରତିକ ଭାରତରେ ସାମାଜିକ କ୍ଷେତ୍ରରେ ସମନ୍ୱୟତା ଦେଖାଯାଉନାହିଁ, ଧାର୍ମିକ ଅସହିଷ୍ଣୁତା ଭରି ରହିଛି। ସହନଶୀଳ ଜାତିପ୍ରଥା ନାହିଁ। ଏ କଥା ନିଶ୍ଚିତ ଯେ, ଏତେପ୍ରକାର ମତଭେଦକୁ ନେଇ କେବେ

Digitized by srujanika@gmail.com

ସମୃଦ୍ଧିପଥରେ ଆଗେଇ ହେବନାହିଁ। ତେଣୁ ମୋ ସ୍ୱପ୍ନର ଓଡ଼ିଶାରେ ମହାନୁଭବତା, ସାମ୍ୟ, ସହନଶୀଳ ମନୋଭାବ ତଥା ପଡ଼ୋଶୀ ପଡ଼ୋଶୀ ଭିତରେ ଭ୍ରାତୃତ୍ୱର ସଦ୍‌ଭାବ ସବୁଆଡ଼େ ବିଛାଇ ହୋଇ ରହିଥିବ। ସେଠି କେହି କ୍ଷୁଦ୍ରତାର ଅଭିଶାପ ପାଇ ନ ଥିବେ କିମ୍ବା ଅହିତର ବୀଜବପନ କରିବାକୁ କେହି ନ ଥିବେ।

ଉପସଂହାରରେ ମୁଁ ବହୁ ଦିନ ତଳେ ମେକ୍‌ସମୁଲାର କହିଥିବା ବାକ୍ୟ ଉଦ୍ଧାର କରୁଛି- "If I have to look after the whole world to find out the country that nature has bestowed its best. I would point to India", "ମୁଁ ଯଦି ସମଗ୍ର ପୃଥିବୀ ଉପରେ ଦୃଷ୍ଟିପାତ କରେ, ପ୍ରକୃତି କେଉଁ ଦେଶକୁ ଶ୍ରେଷ୍ଠ ରୂପେ ଗଢ଼ିଛି ବୋଲି ଅନୁସନ୍ଧାନ କରେ, ମୁଁ ଆଙ୍ଗୁଠି ନିର୍ଦ୍ଦେଶ କରି ଦେଖାଇବି... ଭାରତବର୍ଷକୁ।" ଆମେ ସମସ୍ତେ ଆମ ରାଜ୍ୟକୁ ମିଳିମିଶି ଏପରି ଗଢ଼ିବା ଯେ ସମଗ୍ର ପୃଥିବୀ ଦିନେ କହିବ, "ଓଡ଼ିଶା ଆମ ସ୍ୱପ୍ନର ରାଜ୍ୟ।"

ବିଜୁ ପଟ୍ଟନାୟକଙ୍କର ଏହି କାଳଜୟୀ ବକ୍ତୃତାକୁ ସେ ସମୟରେ ଦୂରଦର୍ଶନରେ ସମ୍ବାଦ ପରିବେଷଣ ପାଇଁ କର୍ମରତ ବରିଷ୍ଠ ଅଧିକାରୀ ଶ୍ରୀଯୁକ୍ତ ଅଶୋକ ଚନ୍ଦ୍ର ପଣ୍ଡା ଏଭଳି ସୁନ୍ଦର ଭାବରେ ପ୍ରସାରଣ କରିଥିଲେ ଯେ ତାହା ରାଜ୍ୟବାସୀଙ୍କୁ ବିମୋହିତ କରିଥିଲା। କେବଳ ସେହି ବକ୍ତୃତା ନୁହେଁ, ବିଜୁବାବୁଙ୍କ ଦ୍ୱିତୀୟ ଥର ପାଇଁ ପାଞ୍ଚବର୍ଷର ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଯେଉଁ ଗଠନମୂଳକ କାର୍ଯ୍ୟ ସବୁ ହେଉଥିଲା, ତାହାର ସକାରାତ୍ମକ ଦିଗଟିକୁ ଶ୍ରୀଯୁକ୍ତ ପଣ୍ଡା ଅତି ନିପୁଣତା ସହିତ ପ୍ରସାରଣ କରୁଥିଲେ। ଆଉ ଏକ ଘଟଣା ଏଠାରେ ଅବତାରଣା କରିବା ଉଚିତ ହେବ। ୧୯୯୨ ମସିହା ଡିସେମ୍ବର ୬ ତାରିଖରେ ଉତ୍ତରପ୍ରଦେଶର ଅଯୋଧ୍ୟାରେ ଥିବା ବାବ୍ରି ମସ୍‌ଜିଦ୍ ହିନ୍ଦୁ କରସେବକଙ୍କ ଦ୍ୱାରା ଭଙ୍ଗା ଯାଇଥିଲା। ଅଶୋକ ପଣ୍ଡା ବିଜୁ ପଟ୍ଟନାୟକଙ୍କଠାରୁ ଏହି ଘଟଣାର ପ୍ରତିକ୍ରିୟା ଜାଣିବାକୁ ଚାହିଁଲେ। ଶ୍ରୀଯୁକ୍ତ ପଣ୍ଡା ଏକ ଆଲେଖ୍ୟରେ ଲେଖିଛନ୍ତି, "ବାବ୍ରି ମସ୍‌ଜିଦ୍ ଭଙ୍ଗା ଘଟଣାରେ ବିଜୁବାବୁଙ୍କ ଠାରୁ ପ୍ରତିକ୍ରିୟା କିପରି ଆଣିବି ସେ ସମ୍ପର୍କରେ ମନେ ମନେ ଭାବିଲି। ପ୍ରଥମେ ବିଜୁ ପଟ୍ଟନାୟକଙ୍କ ଘନିଷ୍ଠ ବୋଲି ଚର୍ଚ୍ଚା ହେଉଥିବା ବିଜୟ ମହାପାତ୍ରଙ୍କୁ ଫୋନ୍ କଲି। ବିଜୟ ମହାପାତ୍ର କିନ୍ତୁ ବିଜୁ ପଟ୍ଟନାୟକଙ୍କୁ ସେ ସମୟରେ ମୋ ସଂପର୍କରେ କଥା ହେବାପାଇଁ କେଜାଣି କାହିଁକି ଭୟ କଲେ, ଆଉ ମୋତେ କହିଲେ- ମୁଁ ଏଇନା ବିଜୁବାବୁଙ୍କୁ ଫୋନ୍ କଲେ ସେ ମୋତେ ଗାଳିଦେବେ। ବରଂ ତମେ ସିଧାସଳଖ ଟେଲିଫୋନ୍ ଯୋଗେ କଥା ହୋଇଯାଅ। ଅନ୍ୟ କିଛି

Digitized by srujanika@gmail.com

ଉପାୟ ନ ପାଇ ମୁଁ ମନରେ ସାହସ ସଞ୍ଚୟ କଲି ଆଉ ଟେଲିଫୋନ୍ ନମ୍ବର-୫୯୦୦୦୬କୁ ଫୋନ୍ କଲି। ମାତ୍ର ଗୋଟିଏ ଥର ରିଂ ପରେ ଜଣେ କିଏ ଟେଲିଫୋନ୍ ଧରି ଗମ୍ଭୀର ସ୍ୱରରେ କହିଲେ ହ୍ୟାଲୋ- କିଏସ୍। ମୁଁ ସ୍ୱରରୁ ଜାଣିପାରିଲି ବିଜୁ ପଟ୍ଟନାୟକ ଟେଲିଫୋନ୍ ଧରିଛନ୍ତି। ମୁଁ ସଙ୍ଗେ ସଙ୍ଗେ କହିଲି- ସାର୍ ମୁଁ ଅଶୋକ ପଣ୍ଡା କହୁଛି ଦୂରଦର୍ଶନରୁ। ସଙ୍ଗେସଙ୍ଗେ ବିଜୁ ପଟ୍ଟନାୟକ କହିଲେ- ଓଃ ବ୍ଲଡି ଦୂରଦର୍ଶନ। ଦ୍ୟାଟ୍ ଇଜ୍ ନଟ୍ ଦୂରଦର୍ଶନ। ବ୍ଲଡି ରାଜୀବ ଦର୍ଶନ। ମୁଁ ଭୟରେ ବିଜୁବାବୁଙ୍କୁ ପ୍ରତିକ୍ରିୟା ଦେବାପାଇଁ କହିଲି- ବିଜୁବାବୁ କହିଲେ- ହ୍ୱାଟ୍ ପ୍ରତିକ୍ରିୟା। ଦ୍ୟାଟ୍ ଇଜ୍ ଆକ୍ଟ ଅଫ୍ କାଓ୍ୱାର୍ଡସ୍ ଆଣ୍ଡ ଫାନାଟିକ୍ସ। ଆଇ ଷ୍ଟ୍ରଙ୍ଗଲି କଣ୍ଡେମ୍ ଇଟ୍। ବିଜୁବାବୁ ଆଉ କିଛି ନ କହି ଫୋନ୍ ଥୋଇଦେଲେ। ମୁଁ କିନ୍ତୁ ଫୋନ୍ ଧରିଥିଲି। ବିଜୁବାବୁ ଏତେ ଶୀଘ୍ର ଦୁଇପଦ କହି ଫୋନ୍ ରଖିଦେବେ ବୋଲି ମୁଁ ଆଦୌ ଭାବି ନ ଥିଲି। କିନ୍ତୁ ବିଜୁବାବୁଙ୍କ ସେଇ ଦୁଇପଦ ପ୍ରତିକ୍ରିୟା ସାରା ଦେଶରେ ସେତେବେଳେ ଚହଳ ପକାଇ ଦେଇଥିଲା। ମୁଁ ଅତ୍ୟନ୍ତ ଖୁସି ହୋଇଯାଇଥିଲି ଯେ, ସେଇ ଦୁଇପଦ ପ୍ରତିକ୍ରିୟା ମୁଁ ବିଜୁବାବୁଙ୍କ ଠାରୁ ନେଇଥିଲି ପରେ ଅନେକ ସାମ୍ବାଦିକ ବିଜୁବାବୁଙ୍କ ଠାରୁ ପ୍ରତିକ୍ରିୟା ନେବାପାଇଁ ଫୋନ୍ କରିଥିଲେ। କିନ୍ତୁ ବିଜୁବାବୁ ସମସ୍ତଙ୍କୁ କହିଥିଲେ- ମୁଁ ଦୂରଦର୍ଶନର ଅଶୋକ ପଣ୍ଡାଙ୍କୁ କହିଦେଇଛି, ତାଙ୍କଠାରୁ ନେଇଯାଅ।" ଶ୍ରୀଯୁକ୍ତ ପଣ୍ଡା ଏବେ ଓଡ଼ିଶା ସରକାରଙ୍କର ପର୍ଯ୍ୟଟନ ଓ ସଂସ୍କୃତି ବିଭାଗର ରାଷ୍ଟ୍ରମନ୍ତ୍ରୀ (ସ୍ୱାଧୀନ) ଭାବେ କାର୍ଯ୍ୟରତ।

ଓଡ଼ିଶାର ନବଯୁବକଙ୍କୁ ପାଇଲଟ କରିବା ପାଇଁ ସେ ଭୁବନେଶ୍ୱରରେ 'ଓଡ଼ିଶା ଫ୍ଲାଇଙ୍ଗ୍ କ୍ଲବ ଲିମିଟେଡ୍' ଓ କଟକର ରେଭେନ୍ସା କଲେଜ ପ୍ରାଙ୍ଗଣରେ 'ଓୟାରଲେସ ଟ୍ରେନିଂ ସ୍କୁଲ' ପ୍ରତିଷ୍ଠା କରିଥିଲେ। ସେଠାରେ ଜଣେ ବିଶିଷ୍ଟ ପ୍ରଫେସର ଏନ୍.କେ. ଟାନାଙ୍କୁ ନିଯୁକ୍ତି ଦେଇଥିଲେ। ସେ ନିଜ ଉଦ୍ୟମରେ କଳିଙ୍ଗ ଏୟାର ଲାଇନ୍ସ ପ୍ରତିଷ୍ଠା କରିଥିଲେ। ଏହି ଏୟାର ଲାଇନ୍‌ସ ଦ୍ୱାରା ସ୍ୱାଧୀନତା ପରେ ସେ ବହୁ ଅସାଧ୍ୟ କାମ ସାଧନ କରିପାରିଥିଲେ। ଭାରତର ସେ ଅନ୍ୟତମ ବ୍ୟକ୍ତି ଯାହାଙ୍କ ନାଁରେ ସାତଟି ଉଡ଼ାଜାହଜ ପଞ୍ଜିକୃତ ହୋଇଥିଲା।

ଯେମିତି ଆଧୁନିକ ଭାରତର ପରିକଳ୍ପନା ନେହେରୁଙ୍କ ବିନା ଅସମ୍ଭବ ଥିଲା, ଠିକ୍ ସେଇଭଳି ଆଧୁନିକ ଓଡ଼ିଶାର ପରିକଳ୍ପନା ବିଜୁବାବୁଙ୍କ ବିନା ଅସମ୍ଭବ ଥିଲା। ବିଜୁବାବୁଙ୍କର ଲକ୍ଷ୍ୟ ଥିଲା ଓଡ଼ିଶାକୁ ଦାରିଦ୍ର୍ୟ କଷାଘାତରୁ ମୁକ୍ତ କରିବା। ସେଥିପାଇଁ

Digitized by srujanika@gmail.com

ସେ ଜୀବନ ତମାମ ସଂଘର୍ଷରତ ରହିଥିଲେ। ୧୯୬୨ ମସିହାରେ ବିଜୁବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲାବେଳେ ପାରାଦ୍ୱୀପରେ ବନ୍ଦର କରିବାପାଇଁ କେନ୍ଦ୍ର ସରକାରଙ୍କ ସ୍ୱୀକୃତି ପାଇଥିଲେ। ସେହି ସମୟରେ ଓଡ଼ିଶାକୁ କେନ୍ଦ୍ର ସରକାର ଅଧିକ ଅନୁଦାନ ଦେବା ଫଳରେ ପଣ୍ଡିତ ନେହେରୁ ବହୁ ସମାଲୋଚନାର ଶିକାର ହୋଇଥିଲେ। ଏହି ସମାଲୋଚନାର ଉତ୍ତର ଦେବାକୁ ଯାଇ ବିଜୁବାବୁ କହିଥିଲେ, "ବିଜୁ ପଟ୍ଟନାୟକର ସାହସ, ଦକ୍ଷତା ଓ ସ୍ପର୍ଦ୍ଧା ଅଛି କାମ କରିବା ପାଇଁ। ସେଥିପାଇଁ ଓଡ଼ିଶାକୁ ଅଧିକ ଅନୁଦାନ ଦେବାରେ କିଛି କ୍ଷତି ନାହିଁ।"

ଅସାଧାରଣ ପ୍ରତିଭାର ଅଧିକାରୀ ବିଜୁବାବୁଙ୍କର ଓଡ଼ିଶାକୁ ନେଇ ଅନେକ ସ୍ୱପ୍ନ ଥିଲା। ତାଙ୍କର ସବୁଠାରୁ ପ୍ରିୟ ସ୍ୱପ୍ନ ଥିଲା ଓଡ଼ିଶାର ଯୁବକମାନଙ୍କୁ ନେଇ। ସେ ଚାହୁଁଥିଲେ ଖାରବେଳଙ୍କର ଦାୟାଦ ଭାବେ ଓଡ଼ିଶାର ଯୁବକମାନେ ସବୁସ୍ତରରେ ସଫଳତାର ଶୀର୍ଷକୁ ଯାଆନ୍ତୁ।

ବିଜୁବାବୁ ଓଡ଼ିଶାର ଦ୍ରୁତ ଶିଳ୍ପାୟନ ପାଇଁ ନିଷ୍ଠାର ସହିତ ଉଦ୍ୟମ କରୁଥିଲେ। ଓଡ଼ିଶାର ରାସ୍ତାଘାଟ, ସେତୁ, ବନ୍ଦର, କଳକାରଖାନାର ଉନ୍ନତିରେ ବିଜୁ ପଟ୍ଟନାୟକଙ୍କର ପ୍ରମୁଖ ଭୂମିକା ରହିଛି। ରାଜ୍ୟରେ ଦ୍ୱିତୀୟ ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ ଥିବା ତାଙ୍କର ସ୍ୱପ୍ନକୁ ସାର୍ଥକ କରିବା ନିମନ୍ତେ ବିଜୁବାବୁ ଲଣ୍ଡନର ବିଶିଷ୍ଟ ଶିଳ୍ପପତି ସ୍ୱରାଜ ପାଲଙ୍କୁ ଓଡ଼ିଶା ଡାକି ଆଲୋଚନା କରିଥିଲେ। ସ୍ୱରାଜ ପାଲ ଓଡ଼ିଶାରେ ଏକ ଇସ୍ପାତ ପ୍ରକଳ୍ପ କରିବା ପାଇଁ ପ୍ରଥମାବସ୍ଥାରେ ରାଜି ହୋଇଥିଲେ ମଧ ଶେଷ ମୁହୂର୍ତ୍ତରେ ସେ ଏଥିରୁ ଓହରି ଯାଇଥିଲେ। ବିଜୁବାବୁଙ୍କୁ ଏହା ଘୋର ମର୍ମାହତ କରିଥିଲା।

ଜୀବନରେ ବିଜୁ ପଟ୍ଟନାୟକ ବହୁ ବ୍ୟକ୍ତିଙ୍କ ଦ୍ୱାରା ପ୍ରତାରିତ ହୋଇଛନ୍ତି। ନଚେତ୍ ଏଚ୍.ଡି. ଦେବେଗୌଡ଼ାଙ୍କ ସ୍ଥାନରେ ସେ ଭାରତର ପ୍ରଧାନମନ୍ତ୍ରୀ ହୋଇପାରିଥାନ୍ତେ। ତାଙ୍କ ଜୀବଦ୍ଦଶା ଭିତରେ ତାଙ୍କୁ 'ଭାରତ ରତ୍ନ' ସମ୍ମାନରେ ବିଭୂଷିତ କରାଗଲା ନାହିଁ। ମୃତ୍ୟୁ ପରେ ମଧ ତାଙ୍କୁ ଏହି ସମ୍ମାନ ପ୍ରଦାନ କରିବାକୁ ସରକାରଙ୍କ ପ୍ରଚେଷ୍ଟାର ଘୋର ଅଭାବ ପରିଲକ୍ଷିତ ହୁଏ। ତାଙ୍କ ଜନ୍ମ ଦିବସ ପାଳନର ସାର୍ଥକତା ହେବ, ଯଦି ଓଡ଼ିଶାର ଯୁବକମାନେ ତାଙ୍କ ଜୀବନୀକୁ ଅନୁଧ୍ୟାନ କରି ତାଙ୍କ ଭଳି ସ୍ୱାଭିମାନୀ ଓ ଦେଶପ୍ରେମୀ ହୋଇ ଓଡ଼ିଶାର ଦରିଦ୍ର ଜନସାଧାରଣଙ୍କ ସେବାରେ ନିଜକୁ ନିୟୋଜିତ କରିବାକୁ ସଂକଳ୍ପବଦ୍ଧ ହେବେ।

Digitized by srujanika@gmail.com

ଓଡ଼ିଶାର ନବନିର୍ମାଣର ବିଶ୍ୱକର୍ମା ଥିଲେ ବିଜୁବାବୁ। ଏକ ସମୃଦ୍ଧ ଓଡ଼ିଶା ଗଠନ ପାଇଁ ସେ ପ୍ରତିଜ୍ଞାବଦ୍ଧ ଥିଲେ। କଳିଙ୍ଗର ଦାୟାଦ ଭାବେ ସେ ଗର୍ବ ଅନୁଭବ କରୁଥିଲେ। କଳିଙ୍ଗର ଦାୟାଦ କେବେ ଅଭୁକ୍ତ ରହିବେ ନାହିଁ ବୋଲି ସେ ପଣ କରିଥିଲେ। କଳିଙ୍ଗର ଦାୟାଦମାନେ ଶିଳ୍ପ, ବାଣିଜ୍ୟ, ଶିକ୍ଷା, ସାହିତ୍ୟ, ସଂସ୍କୃତି ଓ ବିଜ୍ଞାନରେ ସଫଳତାର ଶିଖର ଚଢ଼ିବାର ସ୍ୱପ୍ନ ସେ ଦେଖୁଥିଲେ। କେବଳ ସ୍ୱପ୍ନ ଦେଖୁନଥିଲେ, ବରଂ ସ୍ୱପ୍ନକୁ କାର୍ଯ୍ୟରେ ପରିଣତ କରିବା ପାଇଁ ସେ ଜୀବନତମାମ ଚେଷ୍ଟା କରିଥିଲେ।

– ୦ –

Digitized by srujanika@gmail.com

# ବିଜୁବାବୁଙ୍କ ସହିତ ମୋର ସଂପର୍କ

ବିଜୁ ପଟ୍ଟନାୟକଙ୍କର ଶତବାର୍ଷିକୀ ମହା ଧୁମ୍‌ଧାମ୍‌ରେ ପାଳିତ ହୋଇଯାଇଛି। ବିଜୁବାବୁ କଟକ ସହରରେ ବଢ଼ିଛନ୍ତି, ପଢ଼ିଛନ୍ତି, ଖେଳିଛନ୍ତି। ଆଦ୍ୟଜୀବନ କଟାଇଛନ୍ତି। କଟକର ଦୁଇ ପାର୍ଶ୍ୱରେ ପ୍ରବାହିତ ହେଉଥିବା ମହାନଦୀ ଓ କାଠଯୋଡ଼ି ନଦୀରେ ସେ ପହଁରିଛନ୍ତି। ତାଙ୍କ ଘର ପାର୍ଶ୍ୱରେ ଅବସ୍ଥିତ ବାରବାଟୀ ଦୁର୍ଗକୁ ଦେଖି ଓଡ଼ିଶାର ଐତିହ୍ୟ, ପରଂପରା ତଥା ଓଡ଼ିଶାବାସୀଙ୍କ ବୀରତ୍ୱକୁ ମନେପକାଇ ଉଲ୍ଲସିତ ହୋଇଛନ୍ତି।

କଟକରେ ଥିବା କିଲ୍ଲା ମଇଦାନରେ ଫୁଟବଲ ଖେଳି ଜଣେ ବିଶିଷ୍ଟ ଖେଳୁଆଡ଼ ଭାବେ ସେ ଭାରତରେ ଖ୍ୟାତି ଅର୍ଜନ କରିଛନ୍ତି। ବିଜୁବାବୁ ରେଭେନ୍ସା କଲେଜିଏଟ୍ ସ୍କୁଲ୍‌ରେ ପାଠ ପଢ଼ିବା ପରେ ରେଭେନ୍ସା କଲେଜରେ ପାଠ ପଢ଼ିଲେ। ତାଙ୍କ ଜୀବନରେ ଘଟିଥିବା ସବୁ ଘଟଣା ଆଜି ଖୁବ୍ ଚର୍ଚ୍ଚିତ ହେଉଛି ଏବଂ ରାଜ୍ୟବାସୀ ତାଙ୍କ ପ୍ରିୟ ନେତାଙ୍କ ବିଷୟରେ ଅଧିକ ଜାଣିବାକୁ ଚାତକ ଭଳି ଚାହିଁ ବସିଛନ୍ତି। ତାଙ୍କ ସ୍ମୃତିକୁ ମନେପକାଇ ମନ ବଳାଇଲି ସେହି ମହାନ ନେତାଙ୍କ ବିଷୟରେ ମୋର ସୀମିତ ବ୍ୟକ୍ତିଗତ ସଂପର୍କ ସମ୍ବନ୍ଧରେ ଉଲ୍ଲେଖ କରିବି।

ମୁଁ ପିଲାଦିନ ମଧ ହଜାରବର୍ଷର କଟକ ସହରରେ ବିତାଇଛି। ମୁଁ କଟକ ସହରର ଜୋବ୍ରା ଅପର ପ୍ରାଇମେରି ସ୍କୁଲରେ ପାଠ ଆରମ୍ଭ କରିଥିଲି। ସେତେବେଳେ ସେ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ଉପେନ୍ଦ୍ର ପରିଡ଼ା। ରାଣୀହାଟ ହାଇସ୍କୁଲରେ ପଞ୍ଚମ ଶ୍ରେଣୀରୁ ଏକାଦଶ ଶ୍ରେଣୀଯାଏ ପଢ଼ିଛି। ସେତେବେଳେ ଏହି ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ବାଞ୍ଛାନିଧି ଶତପଥି। ୧୯୫୩ ମସିହାରେ ଏହି ସ୍କୁଲରୁ ମୁଁ ମାଟ୍ରିକୁଲେସନ୍ ପାସ୍ କରିଛି। ମନେପଡୁଛି, ୧୯୫୧ ମସିହାରେ ଧୁମ୍‌ଧାମ୍‌ରେ ନଭେମ୍ବର ୧୪ ତାରିଖରେ କିଲ୍ଲା ମଇଦାନରେ କଟକ ସହରର ସବୁ ସ୍କୁଲ ପିଲାମାନେ ଏକତ୍ରିତ ହୋଇ ଶିଶୁଦିବସ ପାଳନ କରୁଥିଲୁ। ସେଠାରେ ବିଭିନ୍ନ ସ୍କୁଲର ଛାତ୍ରଛାତ୍ରୀମାନେ ନୃତ୍ୟ-ସଂଗୀତ, ମ୍ୟାଜିକ୍ ସୋ' ପ୍ରଭୃତି ପ୍ରଦର୍ଶନ କରିବାର କାର୍ଯ୍ୟକ୍ରମ ରହିଥାଏ। ଆମ ଉପ-ପ୍ରଧାନ ଶିକ୍ଷକ କାଶୀନାଥ ମହାପାତ୍ର ସ୍କୁଲ ତରଫରୁ ମୋତେ 'ମ୍ୟାଜିକ୍ ସୋ' ପ୍ରଦର୍ଶନ କରିବାକୁ ଚୟନ କରିଥିଲେ। ମୁଁ ଶିଖିଥିବା କେତୋଟି ଚିତ୍ତାକର୍ଷକ

Digitized by srujanika@gmail.com

ମ୍ୟାଜିକ୍ ନିର୍ଭୀକ ଭାବରେ ପ୍ରଦର୍ଶନ କଲି। ପିଲାମାନଙ୍କର ତାଳି ମାଡ଼ରେ ଫାଟି ପଡୁଥାଏ କିଲ୍ଲା ପଡ଼ିଆ। ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନଙ୍କ ମଧ୍ୟରେ ମୁଖ୍ୟ ଅତିଥି ଭାବେ ଉପସ୍ଥିତ ଥାଆନ୍ତି ବିଜୁ ପଟ୍ଟନାୟକ। ସେତେବେଳେ ସେ କଟକ ସହରର ବିଧାୟକ ଥାଆନ୍ତି। ଚୌଦ୍ୱାରରେ ଓଡ଼ିଶା ଟେକ୍ସଟାଇଲ ମିଲ୍ସ ପ୍ରତିଷ୍ଠା କରି ଜଣେ ଶିଳ୍ପପତି ଭାବରେ କଟକର ଆବାଳବୃଦ୍ଧବନିତାଙ୍କ ପାଖରେ ଜଣେ ସମ୍ମାନିତ ବ୍ୟକ୍ତି ରୂପେ ଖ୍ୟାତି ଅର୍ଜନ କରିଥାଆନ୍ତି। ପୁରସ୍କାର ବିତରଣ ଉତ୍ସବରେ ବିଜୁବାବୁ ମୋତେ ପୁରସ୍କାର ପ୍ରଦାନ କଲାବେଳେ ମୋ ସହିତ ହାତ ମିଳାଇ ପିଠି ଥାପୁଡ଼େଇଦେଲେ ଏବଂ ସେତେବେଳର ଶିକ୍ଷା ବିଭାଗରେ କାର୍ଯ୍ୟରତ ଯୁଗ୍ମ-ନିର୍ଦ୍ଦେଶକ ଗୋକୁଳ ଚନ୍ଦ୍ର ଶତପଥୀ ମୋତେ ବିଜୁବାବୁଙ୍କ ସହିତ ପରିଚୟ କରାଇଦେଇ କହିଥିଲେ ଯେ, ଏଇ ପିଲା ଭଲ ଫୁଟବଲ ଖେଳେ ଓ ଜଣେ ଭଲ ଏନ୍.ସି.ସି କ୍ୟାଡେଟ୍। ବିଜୁ ପଟ୍ଟନାୟକ କେବଳ ଗୋଟିଏ ଧାଡ଼ି କହିଲେ, "ଓଡ଼ିଶାର ସବୁ ପିଲା ଏଇ ପିଲା ପରି ଚମକିବା ଦରକାର।" ସେହି ଥିଲା ମୋର ବିଜୁ ପଟ୍ଟନାୟକଙ୍କ ସାଙ୍ଗରେ ପ୍ରଥମ ଭେଟ। ବିଜୁ ପଟ୍ଟନାୟକଙ୍କ ଏହି ଗୋଟିଏ ବାକ୍ୟ ମୋତେ ପୁରସ୍କାର ପାଇବାଠାରୁ ବେଶି ଉତ୍ସାହିତ କରିଥିଲା।

ଦ୍ୱିତୀୟଥର ମୋର ବିଜୁବାବୁଙ୍କ ସହିତ ଭେଟ ହୋଇଥିଲା ଓଡ଼ିଶାର ଉପ-ସ୍ୱାସ୍ଥ୍ୟମନ୍ତ୍ରୀ ଥିବା ରଣପୁରର ରାଜମାତା ବସନ୍ତମଞ୍ଜରୀ ଦେବୀଙ୍କ କ୍ୟାଣ୍ଟନମେଣ୍ଟରୋଡ଼ସ୍ଥିତ ସରକାରୀ ବାସଭବନରେ ୧୯୫୨ ମସିହା ଏପ୍ରିଲ ମାସରେ। ବସନ୍ତମଞ୍ଜରୀ ଦେବୀ ତାଙ୍କ ସରକାରୀ ବାସଭବନରେ ଏକ ବନ୍ଧୁ ମିଳନର ଆୟୋଜନ କରିଥାନ୍ତି। ସେଠାରେ ନୃତ୍ୟ-ସଙ୍ଗୀତ ପରିବେଷଣର ବ୍ୟବସ୍ଥା ହୋଇଥାଏ। ସେତେବେଳେ କଟକ ରେଡ଼ିଓ ଷ୍ଟେସନରେ ସ୍ୱନାମଧନ୍ୟା ଗାୟିକା ଥିବା କେତେକଙ୍କ ମଧ୍ୟରୁ ସୁନନ୍ଦା ପଟ୍ଟନାୟକ, ସୁଲକ୍ଷଣା ମହାନ୍ତି, ସଂଯୁକ୍ତା ମହାନ୍ତି, ମିନତୀ ଦେବୀ ପ୍ରଭୃତି ଥିଲେ ଅନ୍ୟତମ। ସଙ୍ଗୀତଗୁରୁ ବାଳକୃଷ୍ଣ ଦାଶ, ପଲ୍ଲୀ ସଙ୍ଗୀତର ଶ୍ରେଷ୍ଠ ଗାୟକ ରାଧାକୃଷ୍ଣ ଭଞ୍ଜ ସେଠାରେ ସଙ୍ଗୀତ ପରିବେଷଣ କରିଥିଲେ। ମୁଁ ମ୍ୟାଜିକ୍ ସୋ' ପ୍ରଦର୍ଶନ କରିବାକୁ ସେଠାକୁ ଯାଇଥିଲି ଏବଂ ଦୁଇ ତିନୋଟି ତାସ୍ ଖେଳର ହାତ ସଫେଇ ଦେଖାଇ ସମସ୍ତଙ୍କୁ ମୁଗ୍ଧ କରିଥିଲି। ବିଜୁ ପଟ୍ଟନାୟକ ମୋତେ ଦେଖି ଖୁସି ହୋଇଥିଲେ ଏବଂ ପିଠି ଥାପୁଡ଼େଇ କହିଥିଲେ– 'କିପ୍ ଇଟ୍ ଅପ୍'। ସେହି ପିଠି ଥାପୁଡ଼ାଟା ଆଜି ପର୍ଯ୍ୟନ୍ତ ମଧ୍ୟ ମୋ ପିଠିରେ ମୁଁ ଅନୁଭବ କରୁଛି। ତାଙ୍କ ଉତ୍ସାହ-

Digitized by srujanika@gmail.com

ଉଦ୍ଦୀପକ କଥା ତ ଅପାଶୋରା। ଶେଷରେ ବିଜୁବାବୁ ସମସ୍ତଙ୍କୁ ନଗଦ ଅର୍ଥରେ ପୁରସ୍କାର ପ୍ରଦାନ କରିଥିଲେ। ମୁଁ ମଧ୍ୟ ପ୍ରଥମଥର ପାଇଁ ପଚାଶ ଟଙ୍କାର ପୁରସ୍କାର ରାଶି ପାଇ ଅତ୍ୟନ୍ତ ଖୁସି ହୋଇଥିଲି।

୧୯୫୩ ମସିହା ମେ' ମାସ ଖରାଦିନ ଛୁଟି ସମୟରେ ମୁଁ ଓ ମୋର ଅନ୍ୟ ତିନିଜଣ ସାଙ୍ଗ ସାଇକେଲରେ କଟକରୁ ଚୌଦ୍ୱାର 'ଓଡ଼ିଶା ଟେକ୍ସଟାଇଲ ମିଲ୍ସ ଓ କଳିଙ୍ଗ ଟ୍ୟୁବ୍ସ କାରଖାନା ଦେଖିବାକୁ ଯାଇଥିଲୁ। ଖରାଦିନ ଯୋଗୁଁ ଭୀଷଣ ଶୋଷ ହେବାରୁ କଳିଙ୍ଗ ଟ୍ୟୁବ୍ସର ଗେଷ୍ଟ ହାଉସ୍ ପରିସରକୁ ପାଣି ପିଇବାକୁ ଆମେ ଗଲୁ। ଗେଟ୍‌ରେ ଦରଓ୍ୱାନ ଆମକୁ ଭିତରକୁ ଯିବାକୁ ବାରଣ କରୁଥିଲା ବେଳେ ଦେଖିଲୁ ବିଜୁ ପଟ୍ଟନାୟକ ଗେଷ୍ଟ ହାଉସ ବାରଣ୍ଡାରେ ଠିଆ ହୋଇ ଦରଓ୍ୱାନକୁ ଆମକୁ ଭିତରକୁ ଛାଡ଼ିବାକୁ କହିଲେ। ତାଙ୍କ ବଦାନ୍ୟତାରୁ ଆମର କ୍ଷୁଧା ଓ ତୃଷା ଉଭୟ ମେଣ୍ଟିଗଲା। କିନ୍ତୁ ଗୋଟିଏ କଥା ସେଠାରେ ଦେଖିଥିଲି, ସେଦିନ ସେହି ଗେଷ୍ଟ ହାଉସରେ ଜଣେ ଅପୂର୍ବ ସୁନ୍ଦରୀ ଯୁବତୀ ଉପସ୍ଥିତ ଥିଲେ। ଦରଓ୍ୱାନକୁ ପଚାରିବାରୁ ସେ ଆମକୁ ଏହି ଯୁବତୀ ଜଣକ ଜବାହରଲାଲ ନେହେରୁଙ୍କ କନ୍ୟା ଇନ୍ଦିରା ଗାନ୍ଧୀ ବୋଲି କହିଥିଲେ। ବହୁବର୍ଷ ପରେ ଭୁବନେଶ୍ୱରରେ 'ହିନ୍ଦୁସ୍ତାନ ଟାଇମ୍ସ'ର ପ୍ରତିନିଧି ରୂପେ କାର୍ଯ୍ୟ କରୁଥିବା ବଙ୍କିମ ଚରଣ ଦାସଙ୍କୁ ଚୌଦ୍ୱାର ଗେଷ୍ଟହାଉସରେ ଦେଖିଥିବା କଥା ବର୍ଣ୍ଣନା କରିବାରୁ ସେ କହିଥିଲେ ଯେ ସେ ବିଜୁବାବୁଙ୍କର ବ୍ୟକ୍ତିଗତ ସଚିବ ଥିଲାବେଳେ ଥରେ ନୁହେଁ, ବହୁବାର ଇନ୍ଦିରା ଗାନ୍ଧୀଙ୍କୁ ବିଜୁବାବୁଙ୍କ ସହିତ ଚୌଦ୍ୱାର ଗେଷ୍ଟହାଉସରେ ଦେଖିଛନ୍ତି। ଇନ୍ଦିରା ଗାନ୍ଧୀଙ୍କର ବିଜୁବାବୁଙ୍କ ସହିତ ଅତି ନିବିଡ଼ ସମ୍ପର୍କ ଥିଲେ ମଧ୍ୟ ପରବର୍ତ୍ତୀ ଜୀବନରେ ସେ ବିଜୁବାବୁଙ୍କର ଯେଭଳି ବିରାଟ କ୍ଷତିସାଧନ କରିଥିଲେ ତାହା ମୋତେ ଆଶ୍ଚର୍ଯ୍ୟାନ୍ୱିତ କରେ।

୧୯୫୫ ମସିହା ମେ' ମାସରେ ଗୋପାଳପୁର ନିକଟବର୍ତ୍ତୀ ରଙ୍ଗେଇଲୁଣ୍ଡାଠାରେ ଓଡ଼ିଶାର ଏନ୍.ସି.ସି. କ୍ୟାଡେଟ୍‌ମାନଙ୍କ ପାଇଁ ଏକ ଦଶ ଦିନିଆ ଶ୍ରମ ଶିବିର ଅନୁଷ୍ଠିତ ହୋଇଥିଲା। ଯେଉଁଥିରେ ଫକୀର ମୋହନ କଲେଜ, ବାଲେଶ୍ୱରରୁ ଅନ୍ୟ କେତେକ ଏନ୍.ସି.ସି. କ୍ୟାଡେଟ୍‌ଙ୍କ ସହିତ ମୁଁ ମଧ୍ୟ ଯୋଗ ଦେଇଥିଲି। ଏହି ଗ୍ରୀଷ୍ମ ଶିବିରର ଶେଷ ଦିବସରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ ବିଜୁ ପଟ୍ଟନାୟକ। ମୁଁ ଓ ଅନ୍ୟ କେତେଜଣ କ୍ୟାଡେଟ୍ ଆମର ବିଶେଷ କୃତିତ୍ୱ ପାଇଁ ତାଙ୍କ ହାତରୁ ପୁରସ୍କାର ଗ୍ରହଣ କରିଥିଲୁ। ମନେଅଛି, ଏହି ପୁରସ୍କାର ବ୍ୟତୀତ ସେ ଖୁସିରେ

Digitized by srujanika@gmail.com

ଆମ ସମସ୍ତଙ୍କୁ ପଚାଶ ଟଙ୍କା ଲେଖାଏଁ ତାଙ୍କ ତରଫରୁ ପୁରସ୍କାର ଦେଇଥିଲେ। ସେତେବେଳେ ବିଜୁ ପଟ୍ଟନାୟକ ଏମ୍.ଏଲ୍.ଏ. ଥିଲେ। ସନ୍ଧ୍ୟା ସମୟରେ ପୁରସ୍କାର ବିତରଣ କାର୍ଯ୍ୟକ୍ରମ ଶେଷ ହେବାପରେ ଅଫିସର୍ ଓ କ୍ୟାଡେଟ୍‌ମାନଙ୍କର ଅନୁରୋଧ ରକ୍ଷା କରି ସେ ତାଙ୍କ ଜୀବନର ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ ସମ୍ପର୍କରେ କିଛି ଅନୁଭୂତି ବର୍ଣ୍ଣନା କରିଥିଲେ। ତାଙ୍କ ଭାଷଣରେ ଦେଶମାତୃକାକୁ ଗଭୀର ଭାବରେ ଭଲପାଇବା ବାରି ହୋଇପଡୁଥିଲା। ତାଙ୍କ ଭାଷଣ ଆମମାନଙ୍କ ହୃଦୟ ସ୍ପର୍ଶ କରିଥିଲା। ନେତାଜୀ ସୁଭାଷ ବୋଷଙ୍କ ଭଳି ସେ ମଧ୍ୟ ଭାରତର ସ୍ୱାଧୀନତା ସଂଗ୍ରାମରେ ନିଜ ଜୀବନକୁ ବାଜି ଲଗାଇ କାର୍ଯ୍ୟମାନ ସମ୍ପାଦନ କରିଥିଲେ।

ମୁଁ ରେଭେନ୍ସା କଲେଜରେ ପଢ଼ିବା ସମୟରେ ବିଜୁବାବୁଙ୍କୁ ବହୁବାର ଦେଖିଥିଲି। ୧୯୫୯ ମସିହାରେ ମୁଁ ରେଭେନ୍ସା କଲେଜରେ ଇତିହାସର ସ୍ନାତକୋତ୍ତର ଶ୍ରେଣୀର ଛାତ୍ର ଥିଲି ଓ ସେମିନାର ସେକ୍ରେଟାରୀ ଥିଲି। ସମସ୍ତ ଛାତ୍ରଛାତ୍ରୀମାନେ ନିଷ୍ପତ୍ତି ନେଲୁ ଇତିହାସ ସେମିନାର ପକ୍ଷରୁ ଭୁବନେଶ୍ୱରରେ ଥିବା ବିଭିନ୍ନ ମନ୍ଦିର ସହିତ କୋଣାର୍କ ମନ୍ଦିର ଓ ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ଦେଖିବାକୁ ଏକ ତିନିଦିନିଆ ଗସ୍ତରେ ବସ୍ ଭଡ଼ା କରି ଯିବୁ। ଆମର ବିଭାଗୀୟ ମୁଖ୍ୟ ପ୍ରଫେସର ମନ୍ମଥ ନାଥ ଦାସଙ୍କୁ ଏ ବିଷୟରେ ଜଣାଇଲୁ। ସେ ଆମ ପ୍ରସ୍ତାବରେ ସମ୍ମତ ହେଲେ। ଆମେ ସମସ୍ତେ ବ୍ୟକ୍ତିଗତ ଭାବରେ ୧୦୦ଟଙ୍କା ଲେଖାଏଁ ଚାନ୍ଦା ଦେବାକୁ ସ୍ଥିର କଲୁ। ହିସାବ କରି ଦେଖିଲୁ ୫ହଜାର ଟଙ୍କା ନିଅଣ୍ଟ ପଡ଼ିଲା। ସେତେବେଳକୁ ବିଜୁ ପଟ୍ଟନାୟକ ଖୋଲା ହାତରେ ନିଃସଙ୍କୋଚରେ ଛାତ୍ରମାନଙ୍କୁ ଆର୍ଥିକ ସାହାଯ୍ୟ ଦେଉଥିବା କଥା କଟକରେ ସମସ୍ତେ ଜଣା ଅଧିକେ ଜାଣିଥିଲେ। ତେଣୁ ନିଅଣ୍ଟ ପଡୁଥିବା ଟଙ୍କା ବିଜୁ ପଟ୍ଟନାୟକଙ୍କଠାରୁ ସାହାଯ୍ୟ ଆକାରରେ ପାଇବାକୁ ମୁଁ ଓ ଅନ୍ୟ ତିନିଜଣ ସାଙ୍ଗ ତାଙ୍କୁ ତୁଳସୀପୁର ବାସଭବନ (ଆନନ୍ଦ ଭବନ)ରେ ସାକ୍ଷାତ କରିବାକୁ ଗଲୁ। ବିଜୁ ପଟ୍ଟନାୟକ ଆମକୁ ଦେଖା କରିବାକୁ ବାହାରକୁ ଆସିଲେ। ଆମଠାରୁ ଆସିବାର କାରଣ ସମ୍ପର୍କରେ ବୁଝିବା ପରେ ଟିକେ ବିରକ୍ତି ଭାବ ପ୍ରକାଶ କରି କହିଲେ, ଯେତେ ଅର୍ଥ ମାଗୁଛ ମୁଁ ଦେବି। କିନ୍ତୁ ପୁଅପିଲାମାନେ ସାଇକେଲରେ, ଅଧ୍ୟାପକ ଓ ଛାତ୍ରୀମାନେ କାର୍ ଭଡ଼ା କରି ଯିବେ। ଆମେ ଆସି ଏକଥା ସେମିନାରରେ କହିବାରୁ ଅନେକ ଛାତ୍ର ବିଭିନ୍ନ ଆଳ ଦେଖାଇ ଏହି ପରିଦର୍ଶନ କାର୍ଯ୍ୟକ୍ରମରୁ ଓହରି ଗଲେ। ଆମେ ସାତ/ଆଠ ଜଣ ଛାତ୍ର ସାଇକେଲରେ କୋଣାର୍କ ଗଲୁ ଓ ତିନିଦିନିଆ କାର୍ଯ୍ୟକ୍ରମ ପାଞ୍ଚଦିନ ହୋଇଗଲା। ଏହି

Digitized by srujanika@gmail.com

ଷ୍ଟଡି ଟୁର୍ ଶେଷହେବା ପରେ ବିଜୁ ପଟ୍ଟନାୟକଙ୍କୁ ଦେଖା କଲୁ ଏବଂ ସେ ଖୁବ୍ ଆନନ୍ଦିତ ହୋଇ ସବୁବେଳେ ପିଲାମାନେ କଷ୍ଟସହିଷ୍ଣୁ ହେବା ଉଚିତ ବୋଲି ଆମ୍ଭମାନଙ୍କୁ କହିଥିଲେ।

ପୁଣି ଥରେ ସୁଯୋଗ ମିଳିଥିଲା ୧୯୬୨ ମସିହା ଜାନୁଆରୀ ମାସ ପ୍ରଥମ ସପ୍ତାହରେ ରେଭେନ୍ସା କଲେଜ ପ୍ରାଙ୍ଗଣରେ ଆୟୋଜିତ ହୋଇଥିବା ଭାରତୀୟ ବିଜ୍ଞାନ କଂଗ୍ରେସର ଅଧିବେଶନରେ। ସେତେବେଳେ ମୁଁ ଷ୍ଟୁଆର୍ଟ ସାଇନ୍ସ କଲେଜରେ ଅଧ୍ୟାପକ ଥିଲି ଓ ଏନ୍.ସି.ସି. ଅଫିସର୍ ମଧ୍ୟ ଥିଲି। ଏହି ଅଧିବେଶନକୁ ଆସିବା ସମୟରେ ଏନ୍.ସି.ସି. କ୍ୟାଡେଟମାନଙ୍କ ଦ୍ୱାରା ମୁଖ୍ୟମନ୍ତ୍ରୀ ଓ ରାଜ୍ୟପାଳଙ୍କୁ ଗାର୍ଡ଼-ଅଫ୍-ଅନର ଦେବାର ବ୍ୟବସ୍ଥା ହୋଇଥିଲା। ସେହି ଏନ୍.ସି.ସି. ଛାତ୍ରମାନଙ୍କର ମୁଁ ଥିଲି ଗାର୍ଡ଼ କମାଣ୍ଡର। ସାଲ୍ୟୁଟ ନେବାକୁ ପ୍ରଥମେ ଆସିଲେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ। ବିଜୁବାବୁଙ୍କ ପାଖେ ପାଖେ ଥିଲେ ମନସ୍ତତ୍ତ୍ୱ ବିଭାଗର ମୁଖ୍ୟ ଡକ୍ଟର ରାଧାନାଥ ରଥ। ବିଜୁବାବୁ ଏହି ପ୍ୟାରେଡ୍ ଦେଖି ଖୁସି ହୋଇଥିଲେ ଏବଂ ମୋତେ ବ୍ୟକ୍ତିଗତ ଭାବେ ଡାକି ମୋ ସହିତ ହାତ ମିଳାଇ ଆର୍ମିରେ କମିଶନ୍ଡ ଅଫିସର ଭାବରେ ଯୋଗଦେବାକୁ ପରାମର୍ଶ ଦେଇଥିଲେ।

୧୯୬୨ ମସିହା ଅକ୍ଟୋବର ମାସ ପ୍ରଥମ ସପ୍ତାହରେ ଚୀନ ସେନା ଭାରତ ଆକ୍ରମଣ କଲା। ଭାରତରେ ଯୁଦ୍ଧର ମୁକାବିଲା ପାଇଁ ଜରୁରୀ ପରିସ୍ଥିତି ଘୋଷଣା କରାଯାଇଥିଲା। ସେହି ସମୟରେ ସିନିଅର ଡିଭିଜନ୍ ଏନ୍.ସି.ସି. ଅଫିସର, ଯେଉଁମାନେ ପ୍ରତିରକ୍ଷା ବାହିନୀରେ ଯୋଗଦେବାକୁ ଇଚ୍ଛୁକ, ସେମାନଙ୍କ ପାଇଁ ଏକ ଛଅମାସିଆ ତାଲିମ କାର୍ଯ୍ୟକ୍ରମର ଆୟୋଜିତ ହୋଇଥିଲା। ମୁଁ ଏହି ଯୋଜନାରେ ପ୍ରତିରକ୍ଷା ବାହିନୀ (ଏନ୍.ସି.ସି.)ରେ କାର୍ଯ୍ୟ କରିବାର ସୁଯୋଗ ପାଇଲି। ଏନ୍.ସି.ସି.ର ବାର୍ଷିକ ତାଲିମ ଶିବିରରେ ବିଜୁ ପଟ୍ଟନାୟକଙ୍କୁ ବାରମ୍ବାର ଅତିଥି ଭାବରେ ଯୋଗଦେବାକୁ ନିମନ୍ତ୍ରଣ କରାଯାଇଥାଏ। ଏନ୍.ସି.ସି. ଛାତ୍ରମାନଙ୍କୁ ସେ ଯେଉଁଳି ଭାବରେ ନିଜ ବ୍ୟକ୍ତିଗତ ଅନୁଭୂତିରୁ ଦେଶମାତୃକାର ସୁରକ୍ଷା ପାଇଁ ପ୍ରତିରକ୍ଷା ବାହିନୀରେ ଯୋଗଦେବାକୁ ପ୍ରୋତ୍ସାହିତ କରନ୍ତି, ତାହା ଜେନେରାଲ କେ.ଏମ୍. କାରିଆପ୍ପା, ଫିଲ୍ଡ ମାର୍ଶାଲ ମାନେକସାଙ୍କ ବକ୍ତବ୍ୟ ସହିତ କେବଳ ତୁଳନୀୟ। ଏହି ଏନ୍.ସି.ସି. କ୍ୟାମ୍ପମାନଙ୍କରେ ମୋର ବହୁଥର ବିଜୁ ପଟ୍ଟନାୟକଙ୍କ ସହିତ ବ୍ୟକ୍ତିଗତ ସାକ୍ଷାତ ଓ ଆଲୋଚନା ହୁଏ। ବିଶେଷକରି ହୀରାକୁଦ, ରଙ୍ଗେଇଲୁଣ୍ଡା, ଜଟଣି ଆଦି ସ୍ଥାନରେ

Digitized by srujanika@gmail.com

ହୋଇଥିବା ସିନିଅର ଡିଭିଜନ ଏନ୍.ସି.ସି. କ୍ୟାମ୍ପରେ ସେ ଘଣ୍ଟା ଘଣ୍ଟା ଧରି ମୋ ଭଳି ପ୍ରତିରକ୍ଷା ବାହିନୀରେ ଯୋଗ ଦେଉଥିବା ଏନ୍.ସି.ସି. ଅଫିସର ମେଜର ଧିରେନ୍ଦ୍ର କୁମାର ନନ୍ଦ, ମେଜର ବଟକୃଷ୍ଣ ମହାନ୍ତି, ମେଜର ଗୁରୁପ୍ରସାଦ ମହାନ୍ତି, ମେଜର ପି.କେ. ଦାଶ, କ୍ୟାପଟେନ ପ୍ରବୋଧ କୁମାର ମିଶ୍ର, କ୍ୟାପଟେନ୍ ବି.ଟି. ରେଡ୍ଡୀ, କ୍ୟାପଟେନ ପ୍ରଭାକର ଶତପଥି ପ୍ରଭୃତିଙ୍କ ସହିତ ଆଲୋଚନା କରନ୍ତି ଏବଂ ଓଡ଼ିଶା ଏନ୍.ସି.ସି. କ୍ୟାଡେଟ୍‌ମାନେ ଯେଭଳି ବହୁ ସଂଖ୍ୟାରେ ପ୍ରତିରକ୍ଷା ବାହିନୀରେ ଯୋଗଦେବେ ସେଥିପାଇଁ ପଦକ୍ଷେପ ନେବାକୁ ନିର୍ଦ୍ଦେଶ ଦିଅନ୍ତି। ସବୁବେଳେ କୁହନ୍ତି କିଛି ଅସୁବିଧା ହେଲେ ସିଧା ମୋ ପାଖକୁ ଆସିବ, ମୁଁ ତା'ର ସମାଧାନ କରିବି। ଆମ୍ଭମାନଙ୍କର ମିଳିତ ପ୍ରଚେଷ୍ଟାରୁ ସେ ସମୟରେ ଶତାଧିକ ଏନ୍.ସି.ସି. ଛାତ୍ର କମିଶନ୍ଡ ଅଫିସର ରୂପେ ପ୍ରତିରକ୍ଷା ବାହିନୀରେ ଯୋଗ ଦେଇଥିଲେ। ଏହି ସମୟରେ ଓଡ଼ିଶାରେ ସୈନିକ ସ୍କୁଲ ଆରମ୍ଭ ହୋଇଥିଲା। ଏନ୍.ସି.ସି. ଡାଇରେକ୍ଟୋରେଟ୍‌ରେ ମୁଁ ସେତେବେଳେ ଷ୍ଟାଫ୍ ଅଫିସର ଥିଲି ଏବଂ ଓଡ଼ିଶାର ଏନ୍.ସି.ସି. ଡାଇରେକ୍ଟରମାନଙ୍କ ସହିତ ବିଜୁ ପଟ୍ଟନାୟକଙ୍କୁ ଆମେ ବହୁ ସମୟରେ ସାକ୍ଷାତ କରିବାକୁ ଯାଉଥିଲୁ। ସବୁବେଳେ ସେ ଅତ୍ୟନ୍ତ ଆଗ୍ରହର ସହିତ ଆମ ସାଙ୍ଗରେ କଥାବାର୍ତ୍ତା କରନ୍ତି ଓ କିଛି ସମସ୍ୟା ଥିଲେ ତାହାର ସମାଧାନ କରିଦିଅନ୍ତି। ମୁଁ ୧୯୬୮ ମସିହା ଜାନୁଆରୀ ୧୦ ତାରିଖରେ ଏନ୍.ସି.ସି. ଚାକିରିରୁ ଅବ୍ୟାହତି ନେଇ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟରେ ଛାତ୍ରକଲ୍ୟାଣ ବିଭାଗର ଡିନ୍ ଭାବରେ ଯୋଗଦେଲି। ଏହି ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା ହେଉଛନ୍ତି ବିଜୁ ପଟ୍ଟନାୟକ। ୧୯୬୨ ମସିହା ଅଗଷ୍ଟ ୨୪ ତାରିଖରେ ଏହି ବିଶ୍ୱବିଦ୍ୟାଳୟର ଶୁଭ ଦିଆଯାଇଥିଲା।

ତା'ପରେ କର୍ମମୟ ଜୀବନରେ ଏକାଧିକ ଘଟଣାରେ ଏହି ମହାପୁରୁଷଙ୍କ ସହିତ ମୋର ଦେଖାସାକ୍ଷାତ ହୋଇଛି। ମୁଁ ଯେତେବେଳେ ତାଙ୍କୁ ଭେଟିଛି, ତାଙ୍କ ବ୍ୟକ୍ତିତ୍ୱ ଦ୍ୱାରା ପ୍ରଭାବିତ ହୋଇଛି। ବିନା କାମରେ ତାଙ୍କ ପାଖକୁ ଯାଇ ତାଙ୍କଭଳି ବ୍ୟସ୍ତବହୁଳ ଜୀବନ ବିତାଉଥିବା ଲୋକଙ୍କର ସମୟ ଅପଚୟ କରିବାକୁ ମୁଁ ଭଲପାଉ ନଥିଲି। ବିମାନବନ୍ଦରରେ ତାଙ୍କୁ ଯେତେବେଳେ ବି ଦେଖିଛି ସେ ହାତରେ ଖଣ୍ଡେ ବହି ଧରି ଚାଲିଥିବେ ବା ବସିକରି ପଢୁଥିବେ। ତାଙ୍କୁ ନମସ୍କାର କଲେ ପ୍ରତି ନମସ୍କାର କରି ସେ କୋଉଠି ଅଛ ଓ କ'ଣ କରୁଛ ଆଦି ପ୍ରଶ୍ନମାନ ପଚାରନ୍ତି। ସବୁବେଳେ ତାଙ୍କ ମୁହଁଟି ଗାମ୍ଭୀର୍ଯ୍ୟପୂର୍ଣ୍ଣ ଥିଲେ ମଧ୍ୟ ତୃପ୍ତିର ଆଭାସ ତାଙ୍କ ମୁହଁରୁ ଝଲସି ଉଠୁଥାଏ।

Digitized by srujanika@gmail.com

୧୯୯୦ ମସିହା ମାର୍ଚ୍ଚ ୫ ତାରିଖରେ ସେ ଦ୍ୱିତୀୟଥର ପାଇଁ ମୁଖ୍ୟମନ୍ତ୍ରୀ ଆସନରେ ଅଧିଷ୍ଠିତ ହେଲେ । ତାହା ମୋତେ ବହୁତ ଖୁସି ଲାଗିଥିଲା । ସେତେବେଳେ ମୁଁ ଜାଭିୟର ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମ୍ୟାନେଜମେଣ୍ଟର ରେଜିଷ୍ଟ୍ରାର ଭାବରେ କାର୍ଯ୍ୟରତ ଥିଲି । ୧୯୯୦ ମସିହା ମେ' ମାସରେ ସେଠାରେ ସମାବର୍ତ୍ତନ ଉତ୍ସବ ହେବାର ସ୍ଥିର ହେଲା । ସେତେବେଳର ଏହି ଅନୁଷ୍ଠାନର ନିର୍ଦ୍ଦେଶକ ଥିବା ଫାଦର ଡି'ସୁଜା ଓ ମୁଁ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ସମାବର୍ତ୍ତନ ଉତ୍ସବକୁ ମୁଖ୍ୟ ଅତିଥି ଭାବରେ ନିମନ୍ତ୍ରଣ କଲୁ । ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲାପରେ ବିଜୁ ପଟ୍ଟନାୟକ ପ୍ରଥମଥର ପାଇଁ ଏହି କ୍ୟାମ୍ପସ ଭିତରକୁ ଆସିଥିଲେ । ଏହି ଅନୁଷ୍ଠାନର ପରିସର ଦେଖି ସେ ଖୁସି ହେଲେ । ଏହି ଅନୁଷ୍ଠାନରେ ଶିଳ୍ପ ଓ ବ୍ୟବସାୟିକ ସଂସ୍ଥାମାନଙ୍କରେ କାର୍ଯ୍ୟ କରିବାକୁ ଛାତ୍ରଛାତ୍ରୀମାନଙ୍କୁ ଦୁଇ ବର୍ଷିଆ ପି.ଜି.ଡି.ବି.ଏମ୍. ଡିଗ୍ରୀ ପାଇଁ ଶିକ୍ଷା ପ୍ରଦାନ କରାଯାଉଥିଲା । ବିଜୁ ପଟ୍ଟନାୟକ ଉତ୍ସାହିତ ହୋଇ ପିଲାମାନଙ୍କୁ ସେମାନଙ୍କ ଦାୟିତ୍ୱ ସମ୍ପର୍କରେ ଏକ ସାରଗର୍ଭକ ଦୀକ୍ଷାନ୍ତ ଭାଷଣ ପ୍ରଦାନ କରିଥିଲେ । କାର୍ଯ୍ୟକ୍ରମ ଶେଷରେ ବିଜୁ ପଟ୍ଟନାୟକଙ୍କୁ ଆମର ନିର୍ଦ୍ଦେଶକ ଏକ ଚା' ଭୋଜିରେ ଆପ୍ୟାୟିତ କରିଥିଲେ । ସେହି ଚା' ଭୋଜିରେ ବିଜୁ ପଟ୍ଟନାୟକ ତାଙ୍କ ପାଖକୁ ଡାକି ମୋତେ ପଚାରିଲେ, ତୁ ମେଜର୍ ମହାନ୍ତି ନା ! ମୁଁ ହଁ କହିବାରୁ ସେ ମୋତେ କହିଲେ, ତୋତେ ତ ମୁଁ ବହୁବର୍ଷରୁ ଭଲଭାବରେ ଜାଣେ । ମୁଁ ମୁଖ୍ୟମନ୍ତ୍ରୀ ହେଲାପରେ ତୁ କାହିଁକି ମୋତେ ଦେଖା କଲୁନି ? ଏହା କହି ସେ ମୋତେ ମୃଦୁ ଭର୍ତ୍ସନା କଲେ ଏବଂ ତୁରନ୍ତ ତାଙ୍କୁ ଯାଇ ଦେଖା କରିବାକୁ ଆଦେଶ ଦେଲେ । ମୁଁ ତାଙ୍କୁ ଦେଖା କରିବାରୁ ସେ ମୋତେ ରାଜ୍ୟର କ୍ରୀଡ଼ା ନିର୍ଦ୍ଦେଶକ ଭାବରେ ନିଯୁକ୍ତି କରିବାକୁ ମନସ୍ଥ କରିଛନ୍ତି ବୋଲି ପ୍ରକାଶ କଲେ । ଏ ସମ୍ବନ୍ଧରେ ପୂର୍ବରୁ ମୋତେ ସୂଚନା, ଲୋକସଂପର୍କ ଓ କ୍ରୀଡ଼ା ବିଭାଗର ମନ୍ତ୍ରୀ ଶ୍ରୀଯୁକ୍ତ ଶରତ କୁମାର କର ସୂଚନା ଦେଇସାରିଥିଲେ । ମୋର ଆନନ୍ଦର ସୀମା ନଥିଲା । କ୍ରୀଡ଼ା ନିର୍ଦ୍ଦେଶକ ଭାବରେ ମୁଁ ୧୯୯୧ ମସିହାରୁ ୧୯୯୪ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କଲି । ଏହି ସମୟରେ ବିଜୁ ପଟ୍ଟନାୟକ ଓଡ଼ିଶାକୁ କେତେ ନିବିଡ଼ ଭାବରେ ଭଲପାଆନ୍ତି ଏବଂ ତା'ର ପ୍ରଗତି ପାଇଁ କୌଣସି ବାଧାବିଘ୍ନ ମାନିବାକୁ ପ୍ରସ୍ତୁତ ନୁହଁନ୍ତି ଏ କଥା ମୁଁ ଜାଣିବାକୁ ପାଇଲି । ସେ ଜଣେ ଅନନ୍ୟ କ୍ରୀଡ଼ାପ୍ରେମୀ ଏବଂ ଯୁବସମାଜକୁ ସବୁବେଳେ କ୍ରୀଡ଼ାନିପୁଣ ଓ ସାହସୀ କରିବାକୁ ସେ କେତେ ଆଗ୍ରହାନ୍ୱିତ ସେକଥା ମଧ୍ୟ ଜାଣିବାକୁ ପାଇଲି । ତାଙ୍କ ବ୍ୟକ୍ତିତ୍ୱ ମୋତେ ଏତେ ପ୍ରଭାବିତ କରିଥିଲା ଯେ ମୁଁ

Digitized by srujanika@gmail.com

ଦିନରାତି ଏକ କରି, ଭୋକଶୋଷ ଭୁଲିଯାଇ ଓଡ଼ିଶାରେ କ୍ରୀଡ଼ାର କିଭଳି ଉନ୍ନତି ହେବ ଓ କ୍ରୀଡ଼ାବିତ୍‌ମାନେ କିଭଳି ଭାବରେ ସରକାରୀ ସହାୟତା ପାଇବେ ସେଥିପାଇଁ ଲାଗିପଡ଼ିଲି। ବିଭିନ୍ନ କ୍ରୀଡ଼ାର ଆସୋସିଏସନ୍‌ମାନଙ୍କୁ ଚଳଚଞ୍ଚଳ କରାଇ ତାଙ୍କୁ ଆଶାନୁରୂପ ଆର୍ଥିକ ସହାୟତା ପ୍ରଦାନ କରିବାର ବ୍ୟବସ୍ଥା କରିଥିଲି। ଓଡ଼ିଶା ଅଲମ୍ପିକ୍ ଆସୋସିଏସନ୍‌ର ସକ୍ରିୟ ସହଯୋଗ ପାଇବାରେ ସମର୍ଥ ହେଲି। ଓଡ଼ିଶା ଅଲମ୍ପିକ୍ ଆସୋସିଏସନ୍‌ର ସମ୍ପାଦକ ଶ୍ରୀଯୁକ୍ତ ଆଶୀର୍ବାଦ ବେହେରା ଜଣେ ସୁଦକ୍ଷ କ୍ରୀଡ଼ା ସଂଗଠକ। ତାଙ୍କର ପରାମର୍ଶ ଓ ସହାୟତା ଦ୍ୱାରା କ୍ରୀଡ଼ା ବିଭାଗକୁ ଏକ ଲୋକାଭିମୁଖୀ ଅନୁଷ୍ଠାନରେ ପରିଣତ କରିବା ସମ୍ଭବପର ହୋଇଥିଲା। ଏଠାରେ ଗୋଟିଏ କଥା କହିବା ଉଚିତ ମନେକରୁଛି। ଆଶୀର୍ବାଦ ବେହେରା ଜଣେ କଂଗ୍ରେସର ଆଗଧାଡ଼ିର ନେତା। ମୋର ଆଶୀର୍ବାଦଙ୍କ ସହିତ ସମ୍ପର୍କ ବିଷୟରେ କେତେକ କାନକୁହା ଲୋକ ବିଜୁବାବୁଙ୍କ ନଜରକୁ ଆଣିଲେ। କହିବାକୁ ଗର୍ବ ଲାଗୁଛି ଯେ ବିଜୁ ପଟ୍ଟନାୟକ କହିଲେ, କ୍ରୀଡ଼ା କ୍ଷେତ୍ରରେ ଦଳମତର କିଛି ବିଚାର ରହିବ ନାହିଁ, କେବଳ ଦକ୍ଷତାର ହିଁ ବିଚାର ରହିବ। ମୋତେ ତାଙ୍କ ସମର୍ଥନ ଅବ୍ୟାହତ ରଖିଲେ। ମହିଳାମାନେ କ୍ରୀଡ଼ା କ୍ଷେତ୍ରରେ ବହୁ ସଂଖ୍ୟାରେ ଭାଗ ନିଅନ୍ତୁ ଓ ପୁଅପିଲାଙ୍କ ସମକକ୍ଷ ହୁଅନ୍ତୁ ବୋଲି ବିଜୁବାବୁ ସବୁବେଳେ ଚାହୁଁଥିଲେ। ଏ ବିଷୟରେ ପଦକ୍ଷେପ ନେବାକୁ ସେ ବାରମ୍ବାର ମୋତେ ତାଗିଦ କରୁଥିଲେ।

ଏହି ତିନିବର୍ଷ ତାଙ୍କ ଅଧୀନରେ କ୍ରୀଡ଼ା ଓ ଯୁବସେବା ନିର୍ଦ୍ଦେଶକ ଭାବରେ କାର୍ଯ୍ୟ କରିବା ସମୟରେ ସପ୍ତାହରେ ଅନ୍ୟୁନ ତିନି/ଚାରିଥର ତାଙ୍କ ସହିତ ଦେଖାହୁଏ। ସେ ସକାଳ ପାଞ୍ଚଟାରୁ ଉଠି ଯାଆନ୍ତି ଏବଂ ରାତି ଦଶଟା ଯାଏ କାର୍ଯ୍ୟରତ ଥାଆନ୍ତି। ଅଧିକାଂଶ ସମୟରେ ସେ ଖୁବ୍ ସକାଳୁ ନିଜେ ଫୋନ୍ କରନ୍ତି ଓ ମୋତେ ଡକାଇ ପଠାନ୍ତି। ଓଡ଼ିଶାର ଚାରିଆଡ଼େ ବିଶେଷକରି ପଶ୍ଚିମାଞ୍ଚଳ ଓ ଦକ୍ଷିଣାଞ୍ଚଳରେ କିଭଳି କ୍ରୀଡ଼ାର ବାତାବରଣ ସୃଷ୍ଟି ହେବ ସେ ସମ୍ବନ୍ଧରେ ମୋତେ ପରାମର୍ଶ ଦିଅନ୍ତି। ମାସରେ ପ୍ରାୟ ପନ୍ଦର ଦିନ କାଳ ମୁଁ ରାଜ୍ୟସାରା ବୁଲି କ୍ରୀଡ଼ା କାର୍ଯ୍ୟକ୍ରମ ଆୟୋଜନ କରୁଥାଏ। ରାଉରକେଲା ହେଉ, ସମ୍ବଲପୁର ହେଉ, ବଲାଙ୍ଗିର ହେଉ, ବ୍ରହ୍ମପୁର ହେଉ, କୋରାପୁଟ ହେଉ କିମ୍ବା କଳାହାଣ୍ଡି ହେଉ ସବୁଠାରେ କ୍ରୀଡ଼ା ଛାତ୍ରାବାସମାନ ଖୋଲିଲା ଓ କ୍ରୀଡ଼ା ପ୍ରତିଯୋଗିତାମାନ ଅନୁଷ୍ଠିତ ହେଲା। ଝିଅମାନଙ୍କ ପାଇଁ ସବୁଠାରେ ବିଶେଷ ସୁବିଧା ସୁଯୋଗ ସରକାରଙ୍କ ତରଫରୁ ଯୋଗାଇ ଦିଆଗଲା। ଏହିସବୁ ବିଷୟ ସେ ଟିକିନିଖି

Digitized by srujanika@gmail.com

ଭାବରେ ଘଣ୍ଟା ଘଣ୍ଟା ଧରି ମୋ ସହିତ ଆଲୋଚନା କରନ୍ତି ଏବଂ ତାଙ୍କ ଆଦେଶକୁ ମୁଁ ତତ୍‌କ୍ଷଣାତ୍ ପାଳନ କରେ। ଯେଉଁଥିପାଇଁ ସେ ମୋତେ ବିଶେଷ ଶ୍ରଦ୍ଧା କରୁଥିଲେ। ବେଳେବେଳେ ସେ ସମୟରେ କ୍ରୀଡ଼ା ବିଭାଗର ମନ୍ତ୍ରୀ ଥିବା ଶରତ କୁମାର କରଙ୍କୁ ମୁଁ ସବୁକଥା ଟିକିନିଖି ଭାବେ ଅବଗତ କରାଉଥିଲି। କ୍ରୀଡ଼ା ବିଭାଗର ଶାସନ ସଚିବ ଅଶୋକ ମିଶ୍ର ଓ ଧିରେନ କୁମାର ପାଢ଼ୀ କ୍ରୀଡ଼ା ବିଭାଗର ଉନ୍ନତିକରଣ ଓ ସୁଦୃଢ଼ୀକରଣରେ ବିଜୁ ପଟ୍ଟନାୟକଙ୍କର ଦିଗ୍‌ଦର୍ଶନକୁ କାର୍ଯ୍ୟରେ ପରିଣତ କରିବା ପାଇଁ ମୋତେ ସହାୟତା କରୁଥିଲେ। ଏଠାରେ ଉଲ୍ଲେଖ କରିବା ଉଚିତ ହେବ ଯେ ମୋର କ୍ରୀଡ଼ା ନିର୍ଦ୍ଦେଶକ ନିଯୁକ୍ତିକୁ ବିଜୁବାବୁଙ୍କର ବ୍ୟକ୍ତିଗତ ସଚିବ ଥିବା ପ୍ୟାରୀମୋହନ ମହାପାତ୍ର ପସନ୍ଦ କରୁନଥିଲେ। ତଥାପି ବିଜୁବାବୁଙ୍କ ନିଷ୍ପତ୍ତିକୁ ସେ ବିରୋଧ କରିବାକୁ ସାହସ କରିନଥିଲେ। ମୁଁ କାର୍ଯ୍ୟରତ ସମୟରେ ସେ ବହୁ ବାଧାବିଘ୍ନ ସୃଷ୍ଟି କରିବାକୁ ପ୍ରୟାସ କରିଥିଲେ ମଧ୍ୟ ସଫଳ ହୋଇନଥିଲେ।

୧୯୯୪ ମସିହାରେ ସଂସ୍କୃତି ବିଭାଗର ନିର୍ଦ୍ଦେଶକ ଭାବରେ ଅବସ୍ଥାପିତ ହେବାପରେ ବିଜୁ ପଟ୍ଟନାୟକଙ୍କର ଓଡ଼ିଶାର ଇତିହାସ, ଐତିହ୍ୟ, ପରମ୍ପରା ଓ ସଂସ୍କୃତି ସମ୍ପର୍କରେ ଅଗାଧ ଜ୍ଞାନ ଓ ଏହି ବିଭାଗକୁ ଚଳଚଞ୍ଚଳ କରାଇବାକୁ ତାଙ୍କର ଉତ୍ସାହ ଦେଖି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହେଲି। ମୁଁ ସଂସ୍କୃତି ବିଭାଗରେ ଯୋଗଦେଲାବେଳକୁ ବି.କେ. କଲେଜ ଅଫ୍ ଆର୍ଟସ୍ ବହୁବର୍ଷ ଧରି ଗୋଟିଏ ଭଡ଼ାଘରେ କାର୍ଯ୍ୟ କରୁଥିଲା। କିନ୍ତୁ ସେହି କଲେଜର ନିଜସ୍ୱ ଗୃହ ସରକାର ଏକ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ବ୍ୟୟ କରି ଖଣ୍ଡଗିରି ପାଦଦେଶରେ ନିର୍ମାଣ କରିଥିଲେ, ଯାହା ଅବ୍ୟବହୃତ ଅବସ୍ଥାରେ ରହିଥିଲା। ଛାତ୍ରଛାତ୍ରୀମାନେ ଭୁବନେଶ୍ୱର ମଧ୍ୟସ୍ଥଳରୁ ଖଣ୍ଡଗିରିରେ ସେମାନଙ୍କ କଲେଜ ପାଇଁ ନିର୍ମିତ ସ୍ୱତନ୍ତ୍ର ଅଟ୍ଟାଳିକାକୁ ଯିବାପାଇଁ ଅନିଚ୍ଛୁକ ଥିଲେ। ମୁଁ ୧୯୯୪ ଜୁଲାଇରୁ ବି.କେ. କଲେଜ ଅଫ୍ ଆର୍ଟସ୍ ସ୍ଥାୟୀ ଗୃହରେ କାର୍ଯ୍ୟ କରିବ ବୋଲି କଲେଜର ପ୍ରିନ୍ସିପାଲ ଡକ୍ଟର ଦୀନନାଥ ପାଠୀଙ୍କୁ ଜଣାଇଦେଲି। ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ସେହି ନୂତନ ଗୃହ ଉଦ୍‌ଘାଟନ କରିବାକୁ ନିମନ୍ତ୍ରଣ କଲି। ଏହି ଉଦ୍‌ଘାଟନୀ ଉତ୍ସବରେ ବିଜୁ ପଟ୍ଟନାୟକ ଖଣ୍ଡିଗିରିଠାରେ ହୋଇଥିବା କ୍ୟାମ୍ପସର ପରିବେଶ ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ। ଭୁବନେଶ୍ୱର ସାଂସଦ, ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବିଦ୍ୱାନ ବ୍ୟକ୍ତି ଡକ୍ଟର ପ୍ରସନ୍ନ ପାଟଶାଣୀ, ବିଜୁ ପଟ୍ଟନାୟକଙ୍କୁ ଖାରବେଳଙ୍କ ସମୟର ଇତିହାସ ଏବଂ ହାତୀଗୁମ୍ଫାରେ ବିଦ୍ୟମାନ ଥିବା ସେସମୟର ଶିଳାଲିପି ଓ କାରୁକାର୍ଯ୍ୟ

Digitized by srujanika@gmail.com

ବିଷୟରେ କହି ଏଠାରେ ଏକ ସଂସ୍କୃତି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବା ଯୁଗୋପଯୋଗୀ ହେବ ବୋଲି କହିଥିଲେ। ବିଜୁ ପଟ୍ଟନାୟକ ଏଥିରେ ସମ୍ପୂର୍ଣ୍ଣ ସହମତ ଥିଲେ। ମୁଁ ମଧ୍ୟ ଏକ ଲିଖିତ ପ୍ରସ୍ତାବ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଦାନ କରିଥିଲି। କିନ୍ତୁ ସେ ସମୟରେ ସେଠାରେ ସଂସ୍କୃତି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହୋଇପାରିଲା ନାହିଁ। ୧୯୯୯ ମସିହାରେ ଡକ୍ଟର ଗିରିଧର ଗମାଙ୍ଗଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ସଂଯୋଗକୁ ମୁଁ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲି ଓ ଏହାର ପ୍ରଥମ କୁଳପତି ହୋଇଥିଲି।

ବିଜୁ ପଟ୍ଟନାୟକ ଓଡ଼ିଆ ଭଲ ଭାବରେ ପଢ଼ି ଜାଣନ୍ତି ଓ ଓଡ଼ିଶାର ଇତିହାସ ବିଷୟରେ ତାଙ୍କର ଗଭୀର ଜ୍ଞାନ ଥିଲା। ସେ ଗୌତମ ବୁଦ୍ଧଙ୍କ ଜନ୍ମବୃତ୍ତାନ୍ତଠାରୁ ଆରମ୍ଭ କରି ଖ୍ରୀଷ୍ଟପୂର୍ବ ୨୬୧ ମସିହାରେ ହୋଇଥିବା କଳିଙ୍ଗ ଯୁଦ୍ଧ ବିଷୟରେ ଟିକିନିଖି ବିବରଣୀ ଜାଣିଥିଲେ। ମୋତେ ବାରମ୍ବାର କୁହନ୍ତି ଯେ, ଅଶୋକ ଦି ଗ୍ରେଟ୍ ବୋଲି ସମସ୍ତେ କହୁଛନ୍ତି; କିନ୍ତୁ ଯେଉଁ ଅଶୋକ କେଉଁ ରାଜା ବିପକ୍ଷରେ ଲଢ଼ିଥିଲା, ତା' ନାମ ଉଲ୍ଲେଖ କରୁନାହିଁ ଏବଂ କଳିଙ୍ଗର କେତେ ସେନା ମୃତ୍ୟୁବରଣ କଲେ, ତାହାର ହିସାବ ଦେଉଛି; କିନ୍ତୁ ନିଜ ସେନାର କେତେ ହତାହତ ହେଲେ, ତାହା କେଉଁଠାରେ ଉଲ୍ଲେଖ କରୁନାହିଁ, ସେ କିଭଳି ଗ୍ରେଟ୍ ହେବ। କଳିଙ୍ଗର ରାଜା, ସୈନ୍ୟ, ଲୋକେ ସବୁବେଳେ ଗ୍ରେଟ୍। ଖାରବେଳଙ୍କ କଥା କହି, ତାଙ୍କ ବୀରତ୍ୱ ବିଷୟରେ ବାରମ୍ବାର ଚର୍ଚ୍ଚା କରି ସେ ଗର୍ବ ଅନୁଭବ କରୁଥିଲେ। ସଂସ୍କୃତି ବିଭାଗ ତରଫରୁ ସେତେବେଳେ ଅନେକଗୁଡ଼ିଏ ସଂପାନ ତାଙ୍କ ନିର୍ଦ୍ଦେଶରେ ଅନୁଷ୍ଠିତ ହୋଇଥିଲା। କେତେକ ସଂପାନରେ ସେ ନିଜେ ମଧ୍ୟ ଯୋଗ ଦେଉଥିଲେ। ଲେଖକ, ସଙ୍ଗୀତଜ୍ଞ, ନୃତ୍ୟଶିଳ୍ପୀ, ପଥର ମୂର୍ତ୍ତି ତିଆରି କରୁଥିବା କାରିଗର, ଚାରୁକଳା, କାରୁକଳାର ଶିଳ୍ପୀ ଆଦି ସମସ୍ତଙ୍କ ପ୍ରତି ତାଙ୍କର ସମ୍ମାନ ଓ ଶ୍ରଦ୍ଧା ଥିଲା। ଥରେ ସନ୍ଧ୍ୟା ସମୟରେ ଜଣେ ବିଖ୍ୟାତ କବି ମୋ ବିଷୟରେ ବିଜୁବାବୁଙ୍କ ପାଖରେ କିଛି ଅଭିଯୋଗ କଲେ। ବିଜୁବାବୁ ମୋତେ ତତ୍‌କ୍ଷଣାତ୍ ଡକାଇଲେ। ମୁଁ ସେଠାରେ ସେହି କବିଙ୍କୁ ଦେଖି ଟିକିଏ ଅପ୍ରତିଭ ହୋଇଗଲି। ବିଜୁବାବୁ ମୋତେ ଅତି ନମ୍ର ଭାବରେ କହିଲେ, ଏହି କବି, ଲେଖକ, କଳାକାରମାନଙ୍କ ସୃଷ୍ଟି କାଳଜୟୀ। ସେମାନଙ୍କ ତ୍ରୁଟି, ଅବହେଳା ସବୁବେଳେ ଅଣଦେଖା କରିବା ଉଚିତ। ଏମାନେ ଆମ ରାଜ୍ୟ ପାଇଁ ଗୌରବ ଆଣିଦେଉଛନ୍ତି। ତେଣୁ ତାଙ୍କ ମନରେ ଆଘାତ

Digitized by srujanika@gmail.com

ଦେବାଭଳି କୌଣସି କାର୍ଯ୍ୟ କେବେ କରିବା ଉଚିତ ନୁହେଁ। ମୋତେ ହସିହସି ସେଠାରୁ ବିଦାୟ ଦେଲେ ଏବଂ କହିଲେ ତୁ ୟାଙ୍କୁ ନେଇ ବସ୍‌ଷ୍ଟାଣ୍ଡରେ ଛାଡ଼ିଦେବୁ। ବିଜୁବାବୁ ପକେଟରୁ ବାହାର କରି କିଛି ଶହେଟଙ୍କିଆ ନୋଟ୍ କବିଙ୍କୁ ଧରାଇ ଦେବାର ମୁଁ ଦେଖିଲି।

ବିଜୁବାବୁଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ମୁଁ ସଂସ୍କୃତି ବିଭାଗର ନିର୍ଦ୍ଦେଶକ ଥିଲି। ସେ ବହୁ ସାଂସ୍କୃତିକ କାର୍ଯ୍ୟକ୍ରମରେ ଆସି ଯୋଗ ଦିଅନ୍ତି। ଶିଳ୍ପୀମାନଙ୍କ ସହିତ ମିଶିଲା ବେଳେ ସେମାନଙ୍କ ସହ ଏକାତ୍ମ ହୋଇଯାଆନ୍ତି। କାହାର କିଛି ଓଜର ଆପତ୍ତି ଥିଲେ ସେହିଠାରେ ତାର ସମାଧାନ କରିବାକୁ ସେ ସର୍ବଦା ନିର୍ଦ୍ଦେଶ ଦିଅନ୍ତି। ଏହିଭଳି ଜଣେ ସଂସ୍କୃତିମନସ୍କ ମୁଖ୍ୟମନ୍ତ୍ରୀଙ୍କ ପାଖରେ କ୍ରୀଡ଼ା ବିଭାଗ ଓ ସଂସ୍କୃତି ବିଭାଗର ନିର୍ଦ୍ଦେଶକ ଭାବରେ କାର୍ଯ୍ୟ କରିବାର ମୋତେ ସୁଯୋଗ ମିଳିଥିଲା।

- ୦ -

Digitized by srujanika@gmail.com

# ବିଜୁବାବୁ ଓଡ଼ିଆ ଜାତିର ଏକ ଅପ୍ରତିମ ପ୍ରତୀକ

ବିଜୁ ପଟ୍ଟନାୟକ ଥିଲେ ଗଣନେତା। ତାଙ୍କର ସଂକୀର୍ଣ୍ଣ ମନୋବୃତ୍ତି ନ ଥିଲା। ସେ କୌଣସି ନିର୍ଦ୍ଦିଷ୍ଟ ଶ୍ରେଣୀ, ବର୍ଗ ବା ଗୋଷ୍ଠୀର ନେତା ନ ଥିଲେ। ତେଣୁ ତାଙ୍କୁ ଜୀବନରେ ବହୁ ଲୋକଙ୍କର ଅସହିଷ୍ଣୁତାର ଶିକାର ହେବାକୁ ପଡ଼ିଥିଲା। ୧୯୬୦ ମସିହାରେ ବିଜୁ ପଟ୍ଟନାୟକ ଓ ଡକ୍ଟର ହରେକୃଷ୍ଣ ମହତାବଙ୍କ ମଧ୍ୟରେ ଘୋର ମତପାର୍ଥକ୍ୟ ଦେଖାଦେଇଥିଲା। ଡକ୍ଟର ମହତାବ ପ୍ରତିଶୋଧପରାୟଣ ହୋଇ ବିଜୁ ପଟ୍ଟନାୟକଙ୍କର କୋଇଲାରୁ ପେଟ୍ରୋଲ ଉତ୍ପାଦନ ଯୋଜନା ଓ ଓଡ଼ିଶା ଟେକ୍ସଟାଇଲ୍ ମିଲ୍ସ କାର୍ଯ୍ୟକାରିତା ସମ୍ପର୍କରେ ଦୁର୍ନୀତି ହୋଇଛି ବୋଲି ଅଭିଯୋଗ ଆଣି ବିଜୁଙ୍କ ବିରୋଧରେ କମିଶନ ବସାଇବାର ସମ୍ଭାବନା ସମ୍ପର୍କରେ ମତାମତ ଦେବାକୁ ଆଇନ ସଚିବ ବୀରେନ ଦାସଙ୍କୁ ନିର୍ଦ୍ଦେଶ ଦେଇଥିଲେ। ମାତ୍ର ଆଇନ ସଚିବ ସମସ୍ତ ନଥିପତ୍ର ଯାଞ୍ଚ କରି କହିଥିଲେ ଯେ ତଦନ୍ତ କମିଶନ ବସିଲେ ଡକ୍ଟର ମହତାବ ନିଜେ ଅସୁବିଧାରେ ପଡ଼ିବେ। କାରଣ ପୂର୍ବରୁ ସେ ବିଧାନସଭାରେ ସ୍ୱୀକାର କରିଥିଲେ ଯେ କୋଇଲାରୁ ପେଟ୍ରୋଲ ବା ଓଟିଏମ୍ ବ୍ୟାପାରରେ ବିଜୁ ପଟ୍ଟନାୟକଙ୍କର କୌଣସି ତ୍ରୁଟି ନାହିଁ। ଫଳରେ ସେତେବେଳେ ଡକ୍ଟର ମହତାବ ଅନନ୍ୟୋପାୟ ହୋଇ ଚୁପ୍ ରହିବାକୁ ଶ୍ରେୟ ମଣିଥିଲେ।

ଚତୁର୍ଥ ଓଡ଼ିଶା ବିଧାନସଭା ପାଇଁ ମାର୍ଚ୍ଚ ୧୯୬୭ ମସିହାରେ ଯେଉଁ ନିର୍ବାଚନ ହୋଇଥିଲା, ଏକାଧିକ କାରଣରୁ କଂଗ୍ରେସ ଦଳ ସେଥିରେ ଶୋଚନୀୟ ପରାଜୟ ବରଣ କରିଥିଲା। ନିର୍ବାଚନ ପରେ ନବଗଠିତ 'ଜନକଂଗ୍ରେସ' ଓ 'ସ୍ୱତନ୍ତ୍ର' ଦଳ ମିଳିତ ଭାବରେ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ। ୧୯୬୧ ଓ ୧୯୬୭ ମଧ୍ୟରେ ମନ୍ତ୍ରୀମାନଙ୍କ ବିରୋଧରେ ଯେତେ ନୁହେଁ ବିଜୁ ପଟ୍ଟନାୟକଙ୍କ ବିରୋଧରେ ତଦନ୍ତ କମିଶନ ବସାଇବା ପାଇଁ ଅତ୍ୟଧିକ ଉତ୍ସାହୀ ଥିଲେ ଡକ୍ଟର ହରେକୃଷ୍ଣ ମହତାବ। ଏଠାରେ ଉଲ୍ଲେଖଯୋଗ୍ୟ ଯେ ବିଜୁ ପଟ୍ଟନାୟକଙ୍କ ଯୋଗୁଁ ହିଁ ମହତାବ ଓ ମହାରାଜାଙ୍କ ମନ୍ତ୍ରିମଣ୍ଡଳ ୧୯୬୧ରେ ଭାଙ୍ଗିଯାଇଥିଲା। ବିଜୁ ପଟ୍ଟନାୟକ, ବିରେନ ମିତ୍ର ଓ ସଦାଶିବ ତ୍ରିପାଠୀଙ୍କ ସମେତ ପନ୍ଦରଜଣ ପୂର୍ବତନ ମନ୍ତ୍ରୀଙ୍କ ବିରୋଧରେ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର

Digitized by srujanika@gmail.com

ନାରାୟଣ ସିଂହଦେଓ ଗୋଟିଏ ତଦନ୍ତ କମିଶନ ବସାଇଥିଲେ। ଏଥିପାଇଁ ସରକାରୀ ଭାବରେ ୧୯୬୭ ଅକ୍ଟୋବର ୧୪ ତାରିଖ ଏବଂ ଡିସେମ୍ବର ୧୪ ତାରିଖ ଦିନ ଦୁଇଟି ବିଜ୍ଞପ୍ତି ପ୍ରକାଶ ପାଇଥିଲା। ଦିଲ୍ଲୀ ହାଇକୋର୍ଟର ନ୍ୟାୟମୂର୍ତ୍ତି ଏଚ.ଆର. ଖାନ୍ନା ଏହି ତଦନ୍ତ କମିଶନର ଅଧ୍ୟକ୍ଷ ଥିଲେ। ସରକାରଙ୍କ ପକ୍ଷରୁ କଂଗ୍ରେସ ନେତାମାନଙ୍କ ବିରୋଧରେ ସତୁରିଟି ଅଭିଯୋଗ ଫର୍ଦ୍ଦ ଦାଖଲ କରାଯାଇଥିଲା। ରାଜ୍ୟ ସରକାର ସେତେବେଳର ଆଡଭୋକେଟ ଜେନେରାଲ ଅଶୋକ ଦାସଙ୍କୁ ସହାୟତା କରିବା ପାଇଁ ୨୦ଜଣ ଅନ୍ୟ ବିଶିଷ୍ଟ ଆଡଭୋକେଟଙ୍କୁ ନିଯୁକ୍ତ କରିଥିଲେ। ବାରିଷ୍ଟର ବୀରେନ୍ଦ୍ର ମୋହନ ପଟ୍ଟନାୟକ, ବିଶିଷ୍ଟ ଆଇନଜୀବୀ ଦୀନବନ୍ଧୁ ସାହୁ, ବିଭୁଦେନ୍ଦୁ ମିଶ୍ର, କାମିନୀକାନ୍ତ ପଟ୍ଟନାୟକ ଓ ୱାଇ ସନ୍ନ୍ୟାସୀ ରାଓ ବିଜୁ ପଟ୍ଟନାୟକ ଓ ଅନ୍ୟମାନଙ୍କ ସପକ୍ଷରେ ଲଢୁଥିଲେ।

ଶ୍ରୀ ଗୌରମୋହନ ଷଡ଼ଙ୍ଗୀ ତାଙ୍କ ପୁସ୍ତକ 'ମହାନାୟକ : ବିଜୁ ପଟ୍ଟନାୟକ ଏକ ଆଲେଖ୍ୟ'ରେ ବର୍ଣ୍ଣନା କରିଥିବା କଥା ଏଠାରେ ଉଦ୍ଧାର କରିବା ସମୀଚୀନ ହେବ। "ପ୍ରତିପକ୍ଷ ବିଜୁ ପଟ୍ଟନାୟକ-ବୀରେନ୍ ମିତ୍ର, ନୀଳମଣି ରାଉତରାୟଙ୍କ ପକ୍ଷରୁ ତାଙ୍କ ଓକିଲମାନେ କମିଶନଙ୍କ ନିକଟରେ ସବୁ ଅଭିଯୋଗର ଜବାବ ଓ ପ୍ରାରମ୍ଭିକ ଯୁକ୍ତି ଉପସ୍ଥାପନ କରିସାରିବା ପରେ ବିଜୁ ପଟ୍ଟନାୟକ ନିଷ୍ପତ୍ତି ନେଇଥିଲେ ଯେ ସେ ନିଜେ କମିଶନଙ୍କ ନିକଟରେ ହାଜର ହୋଇ ପ୍ରତିପକ୍ଷଙ୍କ ନେତା ଭାବରେ ସବୁ ଅଭିଯୋଗ ସମ୍ବନ୍ଧରେ ବକ୍ତବ୍ୟ ରଖିବା ଉଚିତ ହେବ।

୧୯୬୮ ଡିସେମ୍ବର ୨୮ ତାରିଖରେ ବିଜୁବାବୁ, ବୀରେନ ମିତ୍ର, ନୀଳମଣି ରାଉତରାୟ ପ୍ରମୁଖ କମିଶନଙ୍କ ଆଗରେ ଉପସ୍ଥିତ ହୋଇଥିଲେ। ଷ୍ଟେଟ୍ ଲାଇବ୍ରେରୀ ହଲଟି ଭରପୂର ହୋଇଯାଇଥିଲା ଏବଂ ସ୍ଥାନ ଅଭାବରୁ ବହୁ ଲୋକ ବାହାରେ ମଧ୍ୟ ଠିଆହୋଇ ଶୁଣାଣିକୁ ଅପେକ୍ଷା କରିଥିଲେ। ଏ ସଂପର୍କରେ ନୀଳମଣି ରାଉତରାୟ ଲେଖିଛନ୍ତି– ବିଜୁ ପଟ୍ଟନାୟକ ଉଠି କମିଶନଙ୍କୁ ସମ୍ବୋଧନ କରି ଅତି ଆବେଗପୂର୍ଣ୍ଣ ଭାଷା ଓ ଭଙ୍ଗୀରେ ଭାଷଣ ଦେଇ କଂଗ୍ରେସ ସରକାର ସମୟରେ ଓଡ଼ିଶାର ଆର୍ଥିକ ସ୍ଥିତି ଦେବାଳିଆ ହୋଇଥିବା ଅଭିଯୋଗ କିପରି ଭିତ୍ତିହୀନ ଓ ଅଭିସନ୍ଧିମୂଳକ-ଅନୁନ୍ନତ ଓଡ଼ିଶାକୁ ଅନ୍ୟ ଉନ୍ନତ ରାଜ୍ୟର ସମକକ୍ଷ କରିବା ପାଇଁ କି ପ୍ରକାର ପରିକଳ୍ପନା ଓ ପଦକ୍ଷେପ ଆବଶ୍ୟକ ସେ କଥା ଅତି ସୁନ୍ଦର ଭାବରେ କମିଶନଙ୍କ ହୃଦ୍‌ବୋଧ ହେବାଭଳି ତଥ୍ୟ ସହ ଉପସ୍ଥାପିତ କରିଥିଲେ। ଓଡ଼ିଶାର ଦୈବୀଦତ୍ତ ସଂପତ୍ତି, ଖଣିଜ ସଂପଦ,

Digitized by srujanika@gmail.com

ନଦନଦୀ, ଜଳସଂପଦ ଓ ସୁଦୀର୍ଘ ଉପକୂଳକୁ ଲୋକମାନଙ୍କ କାର୍ଯ୍ୟରେ ଲଗାଇ ସେମାନଙ୍କୁ ଉନ୍ନତ କରିବାକୁ ହେଲେ ପରମ୍ପରାଗତ ସନାତନୀ ପନ୍ଥା ଛାଡ଼ି ଦ୍ରୁତ ପ୍ରଗତିଶୀଳ ପନ୍ଥା ଅନୁସରଣ କରିବାକୁ ପଡ଼ିବ। ତାହା ହିଁ କରିବାକୁ ଯାଇ ସେ ଯଦି କୌଣସି ଅପରାଧ କରିଥାନ୍ତି ତା' ହେଲେ ତାଙ୍କୁ ଦୋଷୀ ବୋଲି ଘୋଷଣା କରିବାକୁ ସେ କମିଶନଙ୍କୁ ଅନୁରୋଧ କରିଥିଲେ। ସରକାରଙ୍କ ଆଡଭୋକେଟ ଜେନେରାଲଙ୍କୁ ଲକ୍ଷ୍ୟକରି ସେ କହିଥିଲେ ଯେ ସେ କୋଟି କୋଟି ଟଙ୍କା ଖାଇ ଯାଇଛନ୍ତି ବୋଲି ଅଭିଯୋଗ ହୋଇଛି। ଏକରେ କେତୋଟି ଶୂନ ଦେଲେ କୋଟିଏ ହେବ ସେ କଥା ସେ କହିପାରିବେ କି? ସେ କିଛି ସମୟ ଅପେକ୍ଷା କଲେ କିନ୍ତୁ କୌଣସି ଉତ୍ତର ପାଇନଥିଲେ। ବିଜୁ ପଟ୍ଟନାୟକଙ୍କ ଇଂରାଜୀରେ ବାଗ୍ମୀତା ସମସ୍ତଙ୍କୁ ତଟସ୍ଥ କରିଦେଇଥିଲା, କମିଶନ ଗମ୍ଭୀର ଭାବରେ ଧୈର୍ଯ୍ୟର ସହିତ ମନ୍ତ୍ରମୁଗ୍ଧ ହେବାପରି ସବୁ ଶୁଣିଥିଲେ। କୋଟିଏରେ କେତୋଟି ଶୂନ୍ ପ୍ରଶ୍ନଟି ବହୁବର୍ଷଧରି ଚର୍ଚ୍ଚାର ଖୋରାକ ପାଲଟି ଯାଇଥିଲା। (ସ୍ମୃତି ଓ ଅନୁଭୂତି, ପୃ.୪୬୪ ଓ ୪୬୫)

ବିଚାରପତି ଖାନ୍ନା ସରଜମିନ୍ ତଦନ୍ତ ପ୍ରସଙ୍ଗରେ କେନ୍ଦୁଝର ଜିଲ୍ଲା ବଡ଼ବିଲର କଳିଙ୍ଗ ଆଇରନ୍ ୱାର୍କସ୍ ଓ ଖଣିଜ ଅଚଂଳ ସହିତ ପାରାଦ୍ୱୀପ ବନ୍ଦର ମଧ୍ୟ ଦେଖିବାକୁ ଯାଇଥିଲେ ଏବଂ ସେଠାରେ ଦୁଇଦିନରହି ପାରାଦ୍ୱୀପ ବନ୍ଦର ନିର୍ମାଣ ସଂକ୍ରାନ୍ତୀୟ ନାନାକଥା ଅନୁଧ୍ୟାନ କରିଥିଲେ। ବିଚାରପତି ଖାନ୍ନା କମିଶନଙ୍କ ରିପୋର୍ଟ ୧୯୬୯ ମସିହା ଜାନୁଆରୀ ୧୫ ତାରିଖରେ ଓଡ଼ିଶା ସରକାରଙ୍କୁ ମିଳିଥିଲା।

ଖାନ୍ନା କମିଶନଙ୍କ ନିକଟରେ ଯେଉଁ ୧୫ ଜଣ କଂଗ୍ରେସ ନେତାଙ୍କ ବିରୁଦ୍ଧରେ ବିଭିନ୍ନ ଅଭିଯୋଗ ଆଗତ ହୋଇଥିଲା ସେମାନଙ୍କ ମଧ୍ୟରୁ ନୀଳମଣି ରାଉତରାୟଙ୍କ ସମେତ ୧୨ଜଣଙ୍କୁ ସଂପୂର୍ଣ୍ଣ ଦୋଷମୁକ୍ତ କରିବା ବେଳେ ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ର ଓ ପୂର୍ବତନ ପୂର୍ତ୍ତମନ୍ତ୍ରୀ ହରିହର ସିଂ ମର୍ଦ୍ଦରାଜଙ୍କୁ 'ଦୁର୍ନୀତି ଓ ଅସଦ୍ ଉପାୟରେ ଅର୍ଥ ଆଦାୟ ଅଭିଯୋଗରୁ ମୁକ୍ତ' କରି ସେମାନଙ୍କ କାର୍ଯ୍ୟରେ କେବଳ 'ଶାସନଗତ ଅସଂଗତି' ଥିବାର କମିଶନ ଦର୍ଶାଇଥିଲେ। ଯେଉଁ ପାଞ୍ଚଟି ଅଭିଯୋଗରେ ଶାସନଗତ ଅସଂଗତି ଥିଲା ବୋଲି କମିଶନ ମନ୍ତବ୍ୟ ଦେଇଥିଲେ ସେଗୁଡ଼ିକ ହେଲା ଚୌଦ୍ୱାରସ୍ଥିତ ଓଟିଏମ୍‌ର ଜମି କାରବାର, କଳିଙ୍ଗ ଆଇରନ ୱାର୍କ୍ସ ବିକ୍ରି, କଳିଙ୍ଗ ଟ୍ୟୁବ୍‌ସର ଟ୍ରକ କିଣା, ସୁନ୍ଦରଗଡ଼ର ସରକାରୀ ଓକିଲ ନିଯୁକ୍ତି ଏବଂ ଦୟାନଦୀ ପୋଲର ଠିକା। ନବୀନ ନିବାସର ଜମିକିଣା ପ୍ରସଙ୍ଗ ମଧ୍ୟ କମିଶନଙ୍କ ତଦନ୍ତ ପରିସରରେ ଥିଲା।

Digitized by srujanika@gmail.com

ବିଜୁ ପଟ୍ଟନାୟକଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବା କଂପାନୀ ଓ ବ୍ୟବସାୟ ପ୍ରତିଷ୍ଠାନଗୁଡ଼ିକରେ ରାଜ୍ୟ ସରକାରଙ୍କ ସହ କାରବାରକୁ କମିଶନ ଅସଂଗତ କହିଥିବା ବେଳେ ଏସବୁ କାରବାରରେ ସରକାରଙ୍କ କୌଣସି ଆର୍ଥିକ କ୍ଷତି ହୋଇ ନ ଥିବା ସ୍ପଷ୍ଟ କରିଦେଇଥିଲେ। କିନ୍ତୁ ଶ୍ରୀ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିବାରୁ ଏପ୍ରକାର କାର୍ଯ୍ୟ ତାଙ୍କର ବିରୋଧୀଙ୍କୁ ତାଙ୍କ ବିରୁଦ୍ଧରେ ପ୍ରଚାର କରିବାର ସୁଯୋଗ ଦେଇଥିଲା। ଏହି ଅପପ୍ରଚାର ତାଙ୍କ ବ୍ୟକ୍ତିତ୍ୱରେ କାଳିମା ଲଗାଇଥିଲା ଏବଂ ସେ ନିର୍ବାଚନରେ ପରାଜିତ ହୋଇଥିଲେ।

ବିଚାରପତି ଶ୍ରୀ ଖାନ୍ନା ଅଭିଯୋଗଗୁଡ଼ିକୁ ତଦନ୍ତ କରି ତା' ଉପରେ ନିଷ୍ପତ୍ତି ଦେବାପାଇଁ ଦୀର୍ଘ ପନ୍ଦରମାସ ସମୟ ନେଇଥିଲେ। ଶେଷରେ ୧୫ ଜାନୁଆରୀ ୧୯୬୯ରେ ସେ ରାଜ୍ୟ ସରକାରଙ୍କୁ ଯେଉଁ ରିପୋର୍ଟ ଦେଇଥିଲେ, ସେଥିରେ ବିଜୁ ପଟ୍ଟନାୟକଙ୍କୁ ଦୋଷୀ ସାବ୍ୟସ୍ତ କରିବା ପରିବର୍ତ୍ତେ କେତେକ ସାହସିକ ପଦକ୍ଷେପ ନିମନ୍ତେ ତାଙ୍କୁ ଭୂୟସୀ ପ୍ରଶଂସା କରିଥିଲେ। ନ୍ୟାୟମୂର୍ତ୍ତି ଶ୍ରୀ ଖାନ୍ନା ତାଙ୍କ ରିପୋର୍ଟରେ ପ୍ରକାଶ କରିଥିଲେ, "ଶ୍ରୀ ପଟ୍ଟନାୟକ ଜଣେ ଦୃଢ଼ମନା ବ୍ୟକ୍ତି ଓ କାମ କରିବାପାଇଁ ତାଙ୍କ ଶରୀରରେ ଯୁବକର ଉଦ୍ଦାମ ଶକ୍ତି ରହିଛି ଏବଂ ସର୍ବୋପରି ସେ ଜଣେ ବିରାଟ ବ୍ୟକ୍ତିତ୍ୱ। ସେଥିପାଇଁ ଏ ରାଜ୍ୟର ଭୋଟଦାତା ତାଙ୍କୁ ବିଧାନସଭାରେ ଏକ ନିରଙ୍କୁଶ ସଂଖ୍ୟାଗରିଷ୍ଠ ସମର୍ଥନ ଜ୍ଞାପନ କରିଥିଲେ। ଶ୍ରୀ ପଟ୍ଟନାୟକ ପ୍ରଶାସନରେ ପ୍ରଗତିଶୀଳ ପରିବର୍ତ୍ତନ ଆଣି କେତେକ କ୍ଷେତ୍ରରେ ଅପୂର୍ବ ସାଫଲ୍ୟ ଅର୍ଜ୍ଜନ କରିଥିଲେ। ପାରାଦ୍ୱୀପରେ ଏକ ବନ୍ଦର ନିର୍ମାଣର ସ୍ୱପ୍ନକୁ ସେ ଯେଭଳି ଭାବରେ ସାକାର କରିପାରିଲେ ତାହା ଓଡ଼ିଶାର ଇତିହାସ ଏବଂ ଭବିଷ୍ୟତର ଉନ୍ନୟନ ପାଇଁ ନିଶ୍ଚିତ ଭାବରେ ଏକ ସ୍ୱାକ୍ଷର ବହନ କରିବ। ୧୯୬୧ ମସିହାରେ ନିଜ ଦଳକୁ ବିଜୟର ମୁକୁଟ ପିନ୍ଧାଇଥିବା ବିନ୍ଧାଣୀ ବିଜୁ ପଟ୍ଟନାୟକ ୧୯୬୭ ମସିହାରେ ନିଜେ ନିର୍ବାଚନରେ ହାରିଯାଇଥିଲେ। ଶ୍ରୀ ପଟ୍ଟନାୟକଙ୍କ ରାଜନୈତିକ ପତନ କେବଳ ତାଙ୍କ ପାଇଁ ଏକ କ୍ଷତି ନ ଥିଲା, ତାଙ୍କ ଉପରେ ଗଭୀର ଆସ୍ଥା ପ୍ରକଟ କରି ତାଙ୍କୁ ନେଇ ନୂତନ ଓଡ଼ିଶାର ଗଠନ ପାଇଁ ସ୍ୱପ୍ନ ଦେଖିଥିବା ଓଡ଼ିଶାର ଅଗଣତି ଜନତାଙ୍କ ପାଇଁ ଏକ ଅପୂରଣୀୟ କ୍ଷତି ଥିଲା।"

ବିଜୁ ପଟ୍ଟନାୟକ ୧୯୬୩ ମସିହାରେ ମୁଖ୍ୟମନ୍ତ୍ରୀ ପଦରୁ ଓହରି ଯାଇଥିଲେ ମଧ୍ୟ କଂଗ୍ରେସ ସଂଗଠନ ଉପରେ ତାଙ୍କର ଅଖଣ୍ଡ ପ୍ରଭାବ ଥିଲା। ତାଙ୍କରି ନେତୃତ୍ୱରେ ୧୯୬୪ ମସିହା ମେ' ମାସରେ ଭୁବନେଶ୍ୱରଠାରେ ନିଖିଳ ଭାରତ କଂଗ୍ରେସ କମିଟିର

Digitized by srujanika@gmail.com

ସାଧାରଣ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ସେହି ଅବସରରେ ଓଡ଼ିଶାର ଜାତୀୟ ଆନ୍ଦୋଳନର ଭଗୀରଥ, କଂଗ୍ରେସର ପ୍ରାଣପ୍ରତିଷ୍ଠାତା ଉତ୍କଳମଣି ଗୋପବନ୍ଧୁଙ୍କ ନାମରେ ରାଜଧାନୀରେ ଗଢ଼ି ଉଠିଥିଲା ଆଜିର ଗୋପବନ୍ଧୁ ନଗର । କଂଗ୍ରେସର ସେହି ଅଧିବେଶନରେ ଭାରତବର୍ଷର ଯୁଗାନ୍ତକାରୀ ଅର୍ଥନୈତିକ ଓ ରାଜନୈତିକ ପ୍ରସ୍ତାବ ଗ୍ରହଣ କରାଯାଇଥିଲା ।

ଦୀର୍ଘ ୨୭ ବର୍ଷର ବ୍ୟବଧାନ ପରେ ବିଜୁ ପଟ୍ଟନାୟକ ଫେବୃଆରୀ ୧୯୯୦ ମସିହାରେ ହୋଇଥିବା ନିର୍ବାଚନରେ ଜୟଯୁକ୍ତ ହୋଇ ଦ୍ୱିତୀୟଥର ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ । ଏହି ନିର୍ବାଚନ କାର୍ଯ୍ୟ ତୁଲାଉଥିଲେ ରାଜ୍ୟ ମୁଖ୍ୟ ନିର୍ବାଚନ କମିଶନର ପ୍ୟାରୀମୋହନ ମହାପାତ୍ର । ସାଧାରଣରେ ଆଲୋଚନା ହୁଏ ଯେ ସେ ସମୟରେ ପ୍ୟାରୀବାବୁ ଜନତା ଦଳର ତୁଙ୍ଗ ନେତାମାନଙ୍କ ସହିତ ଘନିଷ୍ଠ ସମ୍ପର୍କରେ ଥିଲେ । ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବାପରେ ଶ୍ରୀ ପଟ୍ଟନାୟକ ତାଙ୍କ ଦଳର ନେତା ବିଜୟ ମହାପାତ୍ର, ହରିଶ୍ଚନ୍ଦ୍ର ବକ୍ସିପାତ୍ର, ବେଦପ୍ରକାଶ ଅଗ୍ରୱାଲ, ନଳିନୀ ମହାନ୍ତି ପ୍ରମୁଖଙ୍କ ସହିତ ପରାମର୍ଶ କରି ପ୍ୟାରୀମୋହନ ମହାପାତ୍ରଙ୍କୁ ତାଙ୍କର ପ୍ରମୁଖ ସଚିବ ଭାବରେ ନିଯୁକ୍ତ କରିଥିଲେ । ମାତ୍ର ଶ୍ରୀ ମହାପାତ୍ରଙ୍କର ଅନେକ ପରାମର୍ଶ ବହୁ ମନ୍ତ୍ରୀଙ୍କୁ କ୍ଷୁବ୍ଧ କରିଥିଲା । ଏପରିକି ବିଜୟ ମହାପାତ୍ର ତାଙ୍କ ବିଭାଗର ସମସ୍ତ ଫାଇଲ ନିଜେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ନେଇ କରାଇ ଆଣୁଥିଲେ ।

ଶ୍ରୀଯୁକ୍ତ ମହାପାତ୍ରଙ୍କର ଭୁଲ୍ ପରାମର୍ଶ ଯୋଗୁଁ ସଚିବାଳୟ ମଧ୍ୟରେ ଯେଉଁ ଅଭାବନୀୟ ଘଟଣା ଘଟିଥିଲା ଓ ମୁଖ୍ୟମନ୍ତ୍ରୀ ତାହାର ଶିକାର ହୋଇଥିଲେ ତାହା ପୂର୍ବରୁ ବର୍ଣ୍ଣନା କରାଯାଇଛି । ଦୀର୍ଘ ଦୁଇଘଣ୍ଟାରୁ ଅଧିକ କାଳ ସଚିବାଳୟରେ ଅରାଜକତା ଚାଲିଥିଲା ଏବଂ ସେଥିରେ ବହୁ ସରକାରୀ ସମ୍ପତ୍ତି ନଷ୍ଟ ହୋଇଥିଲା । କେଉଁମାନେ ସେ ଗଣ୍ଡଗୋଳର ନେତୃତ୍ୱ ନେଇଥିଲେ ସେମାନଙ୍କ ସମ୍ପର୍କରେ ପୁଲିସ ପାଖରେ ତଥ୍ୟ ଥିଲା ଏବଂ ପୁଲିସ ସେମାନଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ପାଇଁ ପ୍ରସ୍ତୁତ ହେଉଥିଲେ । ମାତ୍ର ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ କାହାରି ବିରୋଧରେ କୌଣସି ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ ନ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଏହାର କିଛିଦିନ ପରେ ଶ୍ରୀ ମହାପାତ୍ର ମୁଖ୍ୟ ଶାସନ ସଚିବ ପଦକୁ ଉନ୍ନୀତ ହୋଇଥିଲେ । ମୁଖ୍ୟମନ୍ତ୍ରୀ ଇଚ୍ଛା କରିଥିଲେ ତାଙ୍କ ପ୍ରମୁଖ ସଚିବ ପଦବୀକୁ ମୁଖ୍ୟ ଶାସନ ସଚିବ ପଦବୀରେ ପରିଣତ କରି ଶ୍ରୀ ମହାପାତ୍ରଙ୍କୁ ନିଜ ଦପ୍ତରରେ ରଖି ପାରିଥାନ୍ତେ । କିନ୍ତୁ ସେ ତା' ନ କରି

Digitized by srujanika@gmail.com

ତାଙ୍କୁ 'ଉନ୍ନୟନ କମିଶନର' ଭାବରେ ନିଯୁକ୍ତ କରିଥିଲେ। ଶ୍ରୀ ମହାପାତ୍ର ଉନ୍ନୟନ କମିଶନର ଥିବା ସମୟରେ ମୁଖ୍ୟ ଶାସନ ସଚିବ ଶ୍ରୀ ଦାସଙ୍କର ଅବସର ଗ୍ରହଣ କରିବାର ସମୟ ହୋଇଯାଇଥିଲା। ବରିଷ୍ଠତା ଦୃଷ୍ଟିରୁ ଶ୍ରୀ ମହାପାତ୍ରଙ୍କୁ ମୁଖ୍ୟ ଶାସନ ସଚିବ ପଦରେ ବସାଇବାରେ କିଛି ଅସୁବିଧା ନ ଥିଲା। କିନ୍ତୁ ମୁଖ୍ୟମନ୍ତ୍ରୀ ଅବସର ନେଉଥିବା ଶ୍ରୀ ଦାସଙ୍କ କାର୍ଯ୍ୟକାଳ ଛଅମାସ ପାଇଁ ବୃଦ୍ଧି କରିଥିଲେ ଏବଂ ଥରକୁ ଥର ବୃଦ୍ଧି କରି ଅବସର ପରେ ଦୁଇବର୍ଷ କାଳ ତାଙ୍କୁ ମୁଖ୍ୟ ଶାସନ ସଚିବ ଦାୟିତ୍ୱରେ ରଖିଥିଲେ।

ବିଜୁ ପଟ୍ଟନାୟକଙ୍କ ରାଜନୈତିକ ଜୀବନ ଘଟଣାବହୁଳ ଥିଲା। ଦଳମତନିର୍ବିଶେଷରେ ଜାତୀୟସ୍ତରର ସବୁ ନେତାମାନେ ତାଙ୍କୁ ଯଥେଷ୍ଟ ସମ୍ମାନ ଦେଉଥିଲେ। ସେମାନେ ତାଙ୍କୁ ଶ୍ରଦ୍ଧାରେ 'ବିଜୁଦା' ବୋଲି ସମ୍ବୋଧନ କରୁଥିଲେ। ସାଧାରଣତଃ ଦେଶର ପ୍ରଧାନମନ୍ତ୍ରୀ କୌଣସି ରାଜ୍ୟକୁ ସରକାରୀ ଗସ୍ତରେ ଗଲେ ସମ୍ପୃକ୍ତ ରାଜ୍ୟର ମୁଖ୍ୟମନ୍ତ୍ରୀ ପ୍ରୋଟୋକଲ ନିୟମ ଦୃଷ୍ଟିରୁ ତାଙ୍କ ସହିତ ରହିବା କଥା। କିନ୍ତୁ ବିଜୁ ପଟ୍ଟନାୟକଙ୍କ କ୍ଷେତ୍ରରେ ତା'ର ବ୍ୟତିକ୍ରମ ଦେଖାଦେଇଥିଲା। ୧୯୯୧ ମସିହାରେ ପ୍ରଧାନମନ୍ତ୍ରୀ ଚନ୍ଦ୍ରଶେଖର ଭୁବନେଶ୍ୱର ଗସ୍ତରେ ଆସିଥିବା ସମୟରେ ଶ୍ରୀ ପଟ୍ଟନାୟକ ତାଙ୍କ ସହିତ ନ ରହି ଅନ୍ୟତ୍ର ବ୍ୟସ୍ତ ରହିଥିଲେ। ସେ ସମ୍ପର୍କରେ ପ୍ରଧାନମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିବାରୁ ଶ୍ରୀ ଚନ୍ଦ୍ରଶେଖର କହିଥିଲେ, "ମୁଁ ଯେପରି ମୋ କାମରେ ବ୍ୟସ୍ତ ଅଛି, ମୁଖ୍ୟମନ୍ତ୍ରୀ ମଧ୍ୟ ତାଙ୍କ କାମରେ ବ୍ୟସ୍ତ ରହିଥିବେ। ମୋ ସହିତ ଆସିବାର କ'ଣ ଆବଶ୍ୟକ ଅଛି ? ସେ ମୋ ବଡ଼ଭାଇ। ତାଙ୍କ ସମ୍ପର୍କରେ ମୋ ମୁହଁରୁ କୌଣସି ମନ୍ତବ୍ୟ ଶୁଣିବା ପାଇଁ ଚେଷ୍ଟା କଲେ ତମେମାନେ ବିଫଳ ହେବ।" କେବଳ ଚନ୍ଦ୍ରଶେଖର କାହିଁକି, ତାଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଯେତେ କେନ୍ଦ୍ରୀୟ ନେତା ଓଡ଼ିଶା ଆସିଥିଲେ ବିଜୁ ପଟ୍ଟନାୟକଙ୍କର ଉଚ୍ଚ ପ୍ରଶଂସା କରିବାକୁ କେହି ଭୁଲି ନ ଥିଲେ।

ଶ୍ରୀ ପଟ୍ଟନାୟକଙ୍କର ଦେହାନ୍ତ ପରେ ତାଙ୍କ ମରଶରୀର ସହିତ ଭାରତବର୍ଷର ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଚନ୍ଦ୍ରଶେଖର, ଅଟଳବିହାରୀ ବାଜପେୟୀ, ଏଚ.ଡି. ଦେବେଗୌଡ଼ାଙ୍କ ସମେତ କ୍ରିଷ୍ଣକାନ୍ତ, ଏସ.ଆର. ବୋମାଇ, ମଧୁ ଦଣ୍ଡବତେ, ଭୈରବ ସିଂ ଶେଖାଓ୍ୱତ, ଲାଲକୃଷ୍ଣ ଆଡ଼ଭାନୀ, ଲାଲୁପ୍ରସାଦ ଯାଦବ, ସାହେବ ସିଂ ବର୍ମା ପ୍ରମୁଖ ସବୁ ରାଜନୈତିକ ଦଳର ନେତୃବୃନ୍ଦ ଭୁବନେଶ୍ୱର ଆସି ପ୍ରବାଦପୁରୁଷଙ୍କ ପ୍ରତି

Digitized by srujanika@gmail.com

ଶେଷ ସମ୍ମାନ ଜଣାଇଥିଲେ । ସେହିପରି ସ୍ୱର୍ଗତ ପଟ୍ଟନାୟକଙ୍କ ଏକାଦଶାହ ଉପଲକ୍ଷେ ଆୟୋଜିତ ଶୋକସଭାରେ ମଧ୍ୟ ଜାତୀୟସ୍ତରର ବହୁନେତା ଯୋଗ ଦେଇଥିଲେ । ସେହି ଶୋକସଭାରେ ଯୋଗଦେଇ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ସମସ୍ତ ରାଜନୈତିକ ବିରୋଧ ସତ୍ତ୍ୱେ ସ୍ୱର୍ଗତ ପଟ୍ଟନାୟକଙ୍କୁ ଯଥାର୍ଥରେ 'ଝଡ଼ର ଇଗଲ ଓ ମାଟିର ମୂର୍ତ୍ତିକାର' ବୋଲି ବର୍ଣ୍ଣନା କରିଥିଲେ ।

- ୦ -

Digitized by srujanika@gmail.com

# ବିଜୁଙ୍କ ଆଦର୍ଶରେ ଅନୁପ୍ରାଣିତ ଅଚ୍ୟୁତ ସାମନ୍ତ

ବିଜୁ ପଟ୍ଟନାୟକ ଓଡ଼ିଶାବାସୀଙ୍କ ସର୍ବାଙ୍ଗୀନ ଉନ୍ନତି ସ୍ୱପ୍ନରେ ବିଭୋର ହୋଇ ସାରାଜୀବନ କାର୍ଯ୍ୟ କରିଥିଲେ । ସେ ଆଶା କରିଥିଲେ ତାଙ୍କ ଆଦର୍ଶରେ ଅନୁପ୍ରାଣୀତ ହୋଇ ଶହଶହ ଯୁବକ ଯୁବତୀ ଏ ରାଜ୍ୟର ଉନ୍ନତି ପାଇଁ ନିଃସ୍ୱାର୍ଥପର ଭାବରେ ଲାଗିପଡ଼ିବେ । କିନ୍ତୁ ତାଙ୍କ ଆଦର୍ଶକୁ ପାଥେୟ କରି ଓଡ଼ିଶାର ଉନ୍ନତି ପାଇଁ ଚେଷ୍ଟିତ ଖୁବ୍ କମ୍ ବ୍ୟକ୍ତି ଦୃଷ୍ଟିଗୋଚର ହେଉଛନ୍ତି । ନିଃସନ୍ଦେହ ଭାବରେ ଜଣେ ବ୍ୟକ୍ତି ନିଜର ସବୁ ସୁଖ ସ୍ୱାଛନ୍ଦ୍ୟକୁ ବଳି ଦେଇ ପୂର୍ବତନ ରାଷ୍ଟ୍ରପତି ଏ.ପି.ଜେ. ଅବଦୁଲ କଲାମଙ୍କ ଭଳି ଅବିବାହିତ ରହି ଓଡ଼ିଶାର ଉନ୍ନତି ପାଇଁ ବିଗତ ୨୫ ବର୍ଷ ଧରି ଲାଗିପଡ଼ିଛନ୍ତି, ସେ ହେଉଛନ୍ତି ଡକ୍ଟର ଅଚ୍ୟୁତ ସାମନ୍ତ । ଓଡ଼ିଶାରେ ଶିକ୍ଷା, ସମାଜସେବା ଓ ଅନ୍ୟାନ୍ୟ କ୍ଷେତ୍ରରେ ଉନ୍ନତି ପାଇଁ କର୍ମରତ ଅଚ୍ୟୁତ ସାମନ୍ତ ବିଜୁ ପଟ୍ଟନାୟକଙ୍କ ଆଦର୍ଶର ଢାଞ୍ଚାରେ ଗଠନ କରିଛନ୍ତି କଳିଙ୍ଗ ନାମ ବହନ କରୁଥିବା ଅନେକ ଅନୁଷ୍ଠାନ ।

ଡକ୍ଟର ଅଚ୍ୟୁତ ସାମନ୍ତ ତାଙ୍କଦ୍ୱାରା ପ୍ରତିଷ୍ଠିତ ଅନୁଷ୍ଠାନଗୁଡ଼ିକର ନାମକରଣରେ ପୂର୍ବରୁ ବିଜୁବାବୁଙ୍କ ଭଳି କଳିଙ୍ଗ ନାମଟିକୁ ଯୋଡ଼ିଛନ୍ତି, ଯଥା– କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇଣ୍ଡଷ୍ଟ୍ରିଆଲ ଟେକ୍ନୋଲୋଜି, କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ ଅଫ୍ ସୋସିଆଲ ସାଇନ୍ସେସ୍, କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡିକାଲ ସାଇନ୍ସେସ୍, କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଡେଣ୍ଟାଲ୍ ସାଇନ୍ସେସ୍, କିଟ୍ ଲ' ସ୍କୁଲ, କିଟ୍ ଇଣ୍ଟରନ୍ୟାଶନାଲ ସ୍କୁଲ, କଳିଙ୍ଗ ଟି.ଭି. ପ୍ରଭୃତି ।

ବିଜୁ ପଟ୍ଟନାୟକ ଚାହୁଁଥିଲେ ଶିଳ୍ପାୟନକୁ ଓଡ଼ିଶାରେ ପ୍ରାଧାନ୍ୟ ଦେବାକୁ । ଶିଳ୍ପ ପ୍ରତିଷ୍ଠା ବିନା ଦାରିଦ୍ର୍ୟ ଦୂରୀକରଣ ସମ୍ଭବପର ନୁହେଁ ଏହା ସେ ହୃଦୟଙ୍ଗମ କରିଥିଲେ । ଶିଳ୍ପାନୁଷ୍ଠାନମାନଙ୍କରେ ବୈଷୟିକ ଜ୍ଞାନସମ୍ପନ୍ନ ଯୁବକମାନଙ୍କର ଆବଶ୍ୟକତା ଉପଲବ୍ଧ କରି ସେ ବୈଷୟିକ ଶିକ୍ଷା ଉପରେ ବିଶେଷ ଗୁରୁତ୍ୱ ଆରୋପ କରୁଥିଲେ । ଡକ୍ଟର ଅଚ୍ୟୁତ ସାମନ୍ତ ଏହି ବୈଷୟିକ ଜ୍ଞାନ କୌଶଳସମ୍ପନ୍ନ ଯୁବସମାଜ ପ୍ରସ୍ତୁତ କରିବାକୁ ୧୯୯୨ ମସିହାରେ ଆରମ୍ଭ କରିଥିଲେ 'କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇଣ୍ଡଷ୍ଟ୍ରିଆଲ ଟେକ୍ନୋଲୋଜି' । ତାହା କାଳକ୍ରମେ ନିଜର କାୟା ବିସ୍ତାର କରି ୨୦୦୪ ମସିହାରୁ

Digitized by srujanika@gmail.com

କିଟ୍ ବିଶ୍ୱବିଦ୍ୟାଳୟରେ ପରିଣତ ହୋଇଛି। ଏହି ବିଶ୍ୱବିଦ୍ୟାଳୟରେ ଦେଶ-ବିଦେଶରୁ ମେଡ଼ିକାଲ୍, ଇଞ୍ଜିନିୟରିଂ ଓ ମ୍ୟାନେଜମେଣ୍ଟ ପାଠ୍ୟକ୍ରମରେ ପ୍ରାୟ ୨୭ ହଜାର ଛାତ୍ରଛାତ୍ରୀ ଅଧ୍ୟୟନ କରୁଛନ୍ତି।

ବିଜୁବାବୁ ଯେଭଳି ଓଡ଼ିଶାକୁ ଆନ୍ତର୍ଜାତିକ କ୍ଷେତ୍ରରେ ପରିଚିତ କରାଇବାକୁ ସମାଜର କଲ୍ୟାଣ ନିମନ୍ତେ କାର୍ଯ୍ୟ କରୁଥିବା ଶ୍ରେଷ୍ଠ ବୈଜ୍ଞାନିକମାନଙ୍କ ପାଇଁ ୧୯୫୧ ମସିହାରୁ ୟୁନେସ୍କୋ (ମିଳିତ ଜାତିସଂଘର ଶିକ୍ଷା, ବିଜ୍ଞାନ ଓ ସଂସ୍କୃତି ପ୍ରସାର କରିବାର ସଂସ୍ଥା) ଜରିଆରେ ପ୍ରତିବର୍ଷ 'କଳିଙ୍ଗ ପୁରସ୍କାର' ଦେବାର ବ୍ୟବସ୍ଥା କରିଥିଲେ, ସେହିଭଳି ଡକ୍ଟର ସାମନ୍ତ ୨୦୦୮ ମସିହାରୁ ମାନବିକ ସେବାରେ ନିଜକୁ ଉତ୍ସର୍ଗୀକୃତ କରୁଥିବା ଶ୍ରେଷ୍ଠ ବ୍ୟକ୍ତିଙ୍କୁ ଆନ୍ତର୍ଜାତିକ ସ୍ତରରେ 'କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ ଅଫ୍ ସୋସିଆଲ ସାଇନ୍ସେସ୍ ହ୍ୟୁମାନିଟାରିଆନ୍ ଆୱାର୍ଡ଼' ପ୍ରଦାନ କରିବାର ବ୍ୟବସ୍ଥା କରିଛନ୍ତି।

ବିଜୁ ପଟ୍ଟନାୟକ ଥିଲେ ବିଜ୍ଞାନର ଛାତ୍ର। ବିଜ୍ଞାନ ଶିକ୍ଷାକୁ ଆକର୍ଷଣୀୟ କରିବାକୁ ସେ ବହୁ କାର୍ଯ୍ୟକ୍ରମ ତାଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ହାତକୁ ନେଇଥିଲେ। ୧୯୬୨ ମସିହାରେ ନିଖିଳ ଭାରତୀୟ ବିଜ୍ଞାନ କଂଗ୍ରେସର ୪୯ତମ ଅଧିବେଶନ ରେଭେନ୍ସା କଲେଜରେ ଆୟୋଜନ କରିବାକୁ ବିଜୁବାବୁ ସମସ୍ତ ପ୍ରକାର ସାହାଯ୍ୟ ଯୋଗାଇ ଦେଇଥିଲେ। ଏହି ବିଜ୍ଞାନ କଂଗ୍ରେସରେ ପ୍ରାୟ ୧୨ ହଜାର ଲୋକଙ୍କର ସମାଗମ ହୋଇଥିଲା। ମନସ୍ତତ୍ତ୍ୱ ବିଭାଗର ମୁଖ୍ୟ ପ୍ରଫେସର ଡକ୍ଟର ରାଧାନାଥ ରଥ ଏହାର କାର୍ଯ୍ୟକାରୀ ସଂପାଦକ ଥିଲେ ଏବଂ ଏହି ଅଧିବେଶନରେ ସଭାପତିତ୍ୱ କରିଥିଲେ ଡକ୍ଟର ବି. ମୁଖାର୍ଜୀ। ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁ ଏହି ବିଜ୍ଞାନ କଂଗ୍ରେସକୁ ଉଦ୍‌ଘାଟନ କରିଥିଲେ। ଦ୍ୱିତୀୟଥର ପାଇଁ ଡକ୍ଟର ପ୍ରାଣକୃଷ୍ଣ ପରିଜା ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିବା ସମୟରେ ଭୁବନେଶ୍ୱରଠାରେ ୧୯୭୭ ମସିହାରେ ୬୪ତମ ଭାରତୀୟ ବିଜ୍ଞାନ କଂଗ୍ରେସର ଅଧିବେଶନ ଅନୁଷ୍ଠିତ ହୋଇଥିଲା। ବିଜୁ ପଟ୍ଟନାୟକ ମଧ୍ୟ ଏହି ଆୟୋଜନରେ ପ୍ରଗାଢ଼ ଆଗ୍ରହ ପ୍ରଦର୍ଶନ କରି ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କୁ ସମସ୍ତ ସହାୟତା ପ୍ରଦାନ କରିଥିଲେ।

ଦୀର୍ଘ ୩୫ ବର୍ଷର ବ୍ୟବଧାନ ପରେ ୨୦୧୨ ମସିହାରେ ଡକ୍ଟର ଅଚ୍ୟୁତ ସାମନ୍ତ କିଟ୍ ବିଶ୍ୱବିଦ୍ୟାଳୟରେ ୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସ ଅଧିବେଶନର ଆୟୋଜନ କରିଥିଲେ। ଏହି ବିଜ୍ଞାନ କଂଗ୍ରେସ ଯେଭଳି କିଟ୍ ବିଶ୍ୱବିଦ୍ୟାଳୟରେ ନ ହୋଇପାରିବ ସେଥିପାଇଁ ବହୁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ଚେଷ୍ଟା କରିଥିଲେ। କିନ୍ତୁ ୨୩

Digitized by srujanika@gmail.com

ଡିସେମ୍ବର ୨୦୧୧ରେ ଓଡ଼ିଶା ବିଧାନସଭା ଅଧିବେଶନର ଶୂନ୍ୟକାଳରେ ଏକ ଉଲ୍ଲେଖଯୋଗ୍ୟ ଘଟଣା ଘଟିଥିଲା। ଏନ୍‌ସିପି ବିଧାୟକ ଦଳର ନେତା ଅମର ପ୍ରସାଦ ଶତପଥି ବିଧାନସଭାରେ ପ୍ରକାଶ କରିଥିଲେ ଯେ ଭାରତୀୟ ବିଜ୍ଞାନ କଂଗ୍ରେସ କିଟ୍ ବିଶ୍ୱବିଦ୍ୟାଳୟରେ ଆୟୋଜିତ ହେଉଛି, ଦେଶବିଦେଶରୁ ଶହଶହ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ଏଥିରେ ଯୋଗ ଦେଉଛନ୍ତି। ଏହି ବିଜ୍ଞାନ କଂଗ୍ରେସର ସଫଳତା କାମନା କରି ବିଧାୟକମାନେ ଏକ ପ୍ରସ୍ତାବ ଗ୍ରହଣ କରିବାକୁ ମାନ୍ୟବର ବାଚସ୍ପତିଙ୍କୁ ଅନୁରୋଧ କରିଥିଲେ। ଅତ୍ୟନ୍ତ ଆନନ୍ଦର ବିଷୟ ଯେ ଦଳମତନିର୍ବିଶେଷରେ ବିଧାୟକମାନେ ଟେବୁଲ ବାଡ଼େଇ ଏହି ପ୍ରସ୍ତାବକୁ ସମର୍ଥନ କରିଥିଲେ। ଶେଷରେ ୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସ ଡକ୍ଟର ଅଚ୍ୟୁତ ସାମନ୍ତଙ୍କ ନିଷ୍ଠାପର ଉଦ୍ୟମରେ କିଟ୍ ବିଶ୍ୱବିଦ୍ୟାଳୟ ଓ ନାଇଜରର ମିଳିତ ସହଯୋଗରେ ସୁଚାରୁରୂପେ ଅନୁଷ୍ଠିତ ହୋଇଥିଲା। ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହ ଏହି ବିଜ୍ଞାନ କଂଗ୍ରେସ ଅଧିବେଶନକୁ ଉଦ୍‌ଘାଟନ କରିଥିଲେ। ପୂର୍ବତନ ରାଷ୍ଟ୍ରପତି ଏ.ପି.ଜେ. ଅବଦୁଲ କଲାମ 'ଶିଶୁ ବିଜ୍ଞାନ କଂଗ୍ରେସ'କୁ ଉଦ୍‌ଘାଟନ କରି କିଶୋର ବୈଜ୍ଞାନିକମାନଙ୍କୁ ଉଦ୍‌ବୋଧନ ଦେଇଥିଲେ। ମହିଳାଙ୍କ ଉପରେ ଆଧାରିତ 'ମହିଳା ବିଜ୍ଞାନ କଂଗ୍ରେସ' ପ୍ରଥମଥର ପାଇଁ ଭାରତୀୟ ବିଜ୍ଞାନ କଂଗ୍ରେସର କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇଥିଲା। ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ମହିଳାଙ୍କ ଯୋଗଦାନର ଗୁରୁତ୍ୱକୁ ସର୍ବସାଧାରଣରେ ଆଦୃତ କରିବା ପାଇଁ ବହୁ ସୁନାମଧନ୍ୟା ମହିଳା ଏହି ମହିଳା ବିଜ୍ଞାନ କଂଗ୍ରେସରେ ଯୋଗ ଦେଇଥିଲେ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ୧୯୧୪ ମସିହାରେ କୋଲକତାଠାରେ ନ୍ୟାୟମୂର୍ତ୍ତି ସାର୍ ଆଶୁତୋଷ ମୁଖାର୍ଜୀଙ୍କ ସଭାପତିତ୍ୱରେ ପ୍ରଥମଥର ପାଇଁ ଭାରତୀୟ ବିଜ୍ଞାନ କଂଗ୍ରେସ ଅନୁଷ୍ଠିତ ହୋଇଥିଲା ଏବଂ ପଶ୍ଚିମବଙ୍ଗରେ ଅଦ୍ୟାବଧି ୧୫ଥର ଭାରତୀୟ ବିଜ୍ଞାନ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହୋଇଯାଇଛି। ଅତ୍ୟନ୍ତ ଆନନ୍ଦର କଥା ଯେ ୨୦୧୮ ମସିହା ଜାନୁଆରୀ ପ୍ରଥମ ସପ୍ତାହରେ ଭାରତୀୟ ବିଜ୍ଞାନ କଂଗ୍ରେସର ୧୦୫ତମ ଅଧିବେଶନ ପାଇଁ ଡକ୍ଟର ଅଚ୍ୟୁତ ସାମନ୍ତ ସଭାପତି ଭାବେ ନିର୍ବାଚିତ ହୋଇଛନ୍ତି।

ବିଜୁ ପଟ୍ଟନାୟକଙ୍କ ବଡ଼ଭାଇ ଡାକ୍ତର ଜର୍ଜ ପଟ୍ଟନାୟକ ବିଜୁବାବୁଙ୍କ ଏକସ୍ତରୀତମ ଜୟନ୍ତୀ ଅବସରରେ ଏକ ପ୍ରବନ୍ଧରେ ଆଶାପୋଷଣ କରିଥିଲେ, "ଏହି ଶୁଭ ଅବସରରେ ସେ ଦେଶର ଅଗଣିତ ଜନସାଧାରଣ ତଥା ଗରିବ, ହରିଜନ,

Digitized by srujanika@gmail.com

ଆଦିବାସୀଙ୍କ ମୁହଁରେ ସଦାସର୍ବଦା ହସ ଫୁଟାନ୍ତୁ ଓ ଜନସମାଜ ସେବାରେ ନିଜ ଜୀବନ ବିତାନ୍ତୁ, ଓଡ଼ିଶାକୁ ଆଗେଇବାରେ ଅବଶିଷ୍ଟ ସମୟତକ ନିୟୋଜିତ କରନ୍ତୁ, ଏହାହିଁ ମୋର ଭଗବାନଙ୍କ ନିକଟରେ ମିନତି।" ପାହାଡ଼, ବଣ, ଜଙ୍ଗଲ, ଦୁର୍ଗମ ଅପହଞ୍ଚ ଅଞ୍ଚଳରେ ରହୁଥିବା ଅତ୍ୟନ୍ତ ଦରିଦ୍ର ଆଦିବାସୀମାନଙ୍କର ଉନ୍ନତି ପାଇଁ ବିଜୁବାବୁ ଜୀବନସାରା ଏକମୁହାଁ ହୋଇ ଚେଷ୍ଟା କରୁଥିଲେ। ୧୯୬୧ ମସିହାରେ ତାଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଆଦିବାସୀ ପିଲାମାନଙ୍କର ଶିକ୍ଷା ପାଇଁ ଓଡ଼ିଶାର ବହୁ ଆଶ୍ରମ ସ୍କୁଲକୁ ବିଜୁବାବୁ ହାଇସ୍କୁଲରେ ପରିଣତ କରାଇଥିଲେ ବୋଲି ତାଙ୍କ ମନ୍ତ୍ରିମଣ୍ଡଳରେ ଥିବା ଜଣେ ଉପମନ୍ତ୍ରୀ ଚନ୍ଦ୍ରମୋହନ ସିଂହ ଉଲ୍ଲେଖ କରିଛନ୍ତି। ବିଜୁବାବୁଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ଶିକ୍ଷାଦ୍ୱାରା ହିଁ ଆଦିବାସୀ ପିଲାମାନଙ୍କର ପ୍ରଗତି ହେବ, ସେମାନଙ୍କର ଅନ୍ଧବିଶ୍ୱାସ ଦୂର ହେବ ଏବଂ ସେମାନେ ସମାଜର ମୁଖ୍ୟସ୍ରୋତରେ ସାମିଲ ହୋଇପାରିବେ।

୧୯୯୦ ମସିହାରେ ବିଜୁ ପଟ୍ଟନାୟକ ଦ୍ୱିତୀୟଥର ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାପରେ ସେ ଆଦିବାସୀମାନଙ୍କ ଉନ୍ନତି ପାଇଁ ସମର୍ପିତ ଭାବରେ କାର୍ଯ୍ୟ କରିବାକୁ ଆଗେଇ ଆସିଥିଲେ। ରାୟଗଡ଼ା ଜିଲ୍ଲାର କାଶୀପୁରଠାରେ ଆଦିବାସୀମାନଙ୍କ ପାଇଁ କାର୍ଯ୍ୟ କରୁଥିବା 'ଅଗ୍ରଗାମୀ' ନାମକ ଅନୁଷ୍ଠାନର ନିର୍ଦ୍ଦେଶକ ଅଚ୍ୟୁତ ଦାସଙ୍କୁ ରାଜ୍ୟ ଯୋଜନା ବୋର୍ଡ଼ର ସଦସ୍ୟ ଭାବେ ବିଜୁବାବୁ ମନୋନୀତ କରିଥିଲେ। ଅଚ୍ୟୁତ ଦାସ ବିଜୁ ପଟ୍ଟନାୟକଙ୍କ ସ୍ମୃତିଚାରଣ କରି ଲେଖିଛନ୍ତି, "ବିଭିନ୍ନ ଅବସରରେ ମୁଁ କେତେ ଜଣ ପ୍ରଧାନମନ୍ତ୍ରୀଙ୍କ ସହ ଗରିବଙ୍କ ବିକାଶ ପାଇଁ କଥାବାର୍ତ୍ତା କରିବାର ସୁଯୋଗ ପାଇଛି; କିନ୍ତୁ ଗରିବ ଓ ଅବହେଳିତଙ୍କ ପାଇଁ ବିଜୁ ପଟ୍ଟନାୟକ ଯେଉଁ ଦରଦ ମୋ ଆଗରେ ଦେଖାଇଛନ୍ତି ତାହା ଅତୁଳନୀୟ। ଦିନେ ସେ ମୋତେ କହିଲେ, ଓଡ଼ିଶାର ଆଦିବାସୀଙ୍କ ଉନ୍ନତି ପାଇଁ ଯାହା କିଛି ସମ୍ଭବ ତମେ କରିଯାଅ। କେତେ କୋଟି ଟଙ୍କା କୁଆଡ଼େ ପାଣି ଭଳି ଯାଉଛି, ସେ ଅଞ୍ଚଳରେ କିନ୍ତୁ ପହଞ୍ଚୁ ନାହିଁ। ମୁଁ ଯୁକ୍ତି କରିଥିଲି ଯେ ଆଦିବାସୀଙ୍କ ପାଇଁ ଜମି ଦରକାର। କାଶୀପୁରରେ ଓଡ଼ିଶା ଆଦିବାସୀ ବିକାଶ ପ୍ରକଳ୍ପରେ ଆଦିବାସୀଙ୍କୁ ଡଙ୍ଗର ଜମି ଦିଆଯାଉ ବୋଲି ପ୍ରସ୍ତାବ ଦେଇଥିଲି। ସେ ହଠାତ୍ ବୁଝିଗଲେ ଓ ଆଦିବାସୀ ଅଞ୍ଚଳରେ ଥିବା ସର୍ବେକ୍ଷଣ ହୋଇନଥିବା ବଳକା ଡଙ୍ଗର ଜମି ପଟ୍ଟା ହେବାକୁ ସେ ହିଁ ଏକ ବୈପ୍ଳବିକ ନିଷ୍ପତ୍ତି ନେଇଥିଲେ। ପଟ୍ଟା ଉଭୟ ପୁରୁଷ ଓ ସ୍ତ୍ରୀଙ୍କ ନାମରେ ମିଳିତ ଅଧିକାରରେ ରହିବାକୁ ଦୃଢ଼ ଭାବରେ

Digitized by srujanika@gmail.com

କହିଥିଲେ। ଏହା ଥିଲା ଏକ ଐତିହାସିକ ନିଷ୍ପତ୍ତି। ହଠାତ୍ ବିଜୁ ପଟ୍ଟନାୟକ ମିଟିଂ ଡାକି ଏ ନିଷ୍ପତ୍ତି ନେଲେ ଓ କାର୍ଯ୍ୟକାରୀ ହେଲା। ଆଜି କାଶୀପୁରରେ ଷାଠିଏରୁ ଉର୍ଦ୍ଧ୍ୱ ଗାଁରେ ଆଦିବାସୀଙ୍କୁ ପଟ୍ଟା ମିଳିଛି।"

କାଶୀପୁରର ଅତି ସାଧାରଣ ଆଦିବାସୀ ମହିଳା ସୁମନୀ ଝୋଡ଼ିଆ, ଅନ୍ଧାରୀ ମାଝୀ ଓ ସବାଇ ମାଝୀଙ୍କୁ ବିଜୁ ପଟ୍ଟନାୟକ ପରାମର୍ଶଦାତ୍ରୀ ଭାବରେ ଗ୍ରହଣ କରିଥିଲେ। ସେମାନେ ସମସ୍ତେ ନିରକ୍ଷର ଥିଲେ ମଧ୍ୟ ଆଦିବାସୀମାନଙ୍କର ସମସ୍ୟା ଭଲଭାବରେ ଜାଣିଥିଲେ ଏବଂ ତାହା ବିଜୁବାବୁଙ୍କୁ ବୁଝାଉଥିଲେ। ସର୍ବନିମ୍ନ ଦୈନିକ ମଜୁରି ପ୍ରସ୍ତାବ ହେଉ କିମ୍ବା ଆଦିବାସୀ ଅଞ୍ଚଳରେ ଅବାଧ ନିଶା ପ୍ରସାରକୁ ବନ୍ଦ କରିବା ପ୍ରସ୍ତାବ ହେଉ ସବୁ ବିଷୟକୁ ଅନୁଧ୍ୟାନ କରି ବିଜୁବାବୁ ତାର ନିରାକରଣ ପାଇଁ ପଦକ୍ଷେପମାନ ଗ୍ରହଣ କରୁଥିଲେ।

ଆଦିବାସୀ ଅଞ୍ଚଳରେ ଶିକ୍ଷାର ପ୍ରସାର ପାଇଁ ବିଜୁବାବୁ 'କଳିଙ୍ଗ ବିହାର' ପ୍ରତିଷ୍ଠାର ସ୍ୱପ୍ନ ଦେଖୁଥିଲେ। ସେ କହୁଥିଲେ 'କଳିଙ୍ଗ ବିହାର' ପ୍ରତିଷ୍ଠା ହେଲେ ହଜାର ହଜାର ଆଦିବାସୀ ପିଲା ଷଷ୍ଠ ଶ୍ରେଣୀରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଶିକ୍ଷା ଗୋଟିଏ ପରିସରରେ ପାଇପାରିବେ। ବିଜୁବାବୁ ନିଜେ ଦେଖିଥିବା ସୋଭିଏତ୍ ରୁଷିଆରେ ପରିଚାଳିତ ହେଉଥିବା ଆବାସିକ ଅନୁଷ୍ଠାନମାନଙ୍କର ଉଦାହରଣ ଦେଇ ଓଡ଼ିଶାରେ ଏହିଭଳି ବିଦ୍ୟାଳୟ ପ୍ରତିଷ୍ଠା କରିବା କଥା ଉପରେ ଜୋର୍ ଦେଉଥିଲେ। କିନ୍ତୁ ସେ ତାହା କରିପାରିଲେ ନାହିଁ। ମୁଷ୍ଟିମେୟ ଲୋକ ଏହି ଯୋଜନାକୁ କରାଇ ଦେଇ ନଥିଲେ। ସବୁକଥା ନଥିପତ୍ରରେ ରହିଗଲା।

ବିଜୁବାବୁଙ୍କ ଆଦିବାସୀ ପିଲାମାନଙ୍କୁ ପଢ଼ାଇବାର ସ୍ୱପ୍ନ ଅଚ୍ୟୁତ ସାମନ୍ତଙ୍କୁ ଗଭୀର ଭାବରେ ପ୍ରଭାବିତ କରିଥିବା ମନେହୁଏ। ଡକ୍ଟର ଅଚ୍ୟୁତ ସାମନ୍ତ ଆଦିବାସୀ ଛାତ୍ରଛାତ୍ରୀଙ୍କର ଶିକ୍ଷାର ବିକାଶ ପାଇଁ ୧୯୯୩ ମସିହାରେ ମାତ୍ର ୧୨୫ ଜଣ ଆଦିବାସୀ ପିଲାଙ୍କୁ ନେଇ ପ୍ରତିଷ୍ଠା କରିଥିଲେ 'କଳିଙ୍ଗ ଇନଷ୍ଟିଚ୍ୟୁଟ୍ ଅଫ୍ ସୋସିଆଲ ସାଇନ୍ସେସ୍'। ବର୍ତ୍ତମାନ 'କିସ୍' ଛାତ୍ରଛାତ୍ରୀଙ୍କର ସଂଖ୍ୟା ହେଲା ୨୫୦୦୦। ଏହି ଅନୁଷ୍ଠାନରେ ସମସ୍ତ ଛାତ୍ରଛାତ୍ରୀଙ୍କୁ ନିଃଶୁଳ୍କ ରହିବା, ଖାଇବା, ପଢ଼ିବା ଓ ସ୍ୱାସ୍ଥ୍ୟସେବା ଯୋଗାଇ ଦିଆଯାଉଅଛି। ଏହି ଅନୁଷ୍ଠାନରେ ଶିଶୁ ଶ୍ରେଣୀଠାରୁ ଆରମ୍ଭ କରି ସ୍ନାତକୋତ୍ତର ଶ୍ରେଣୀ ପର୍ଯ୍ୟନ୍ତ ପିଲାମାନଙ୍କର ପଢ଼ିବାର ବ୍ୟବସ୍ଥା ରହିଛି। 'କିସ୍'ର ବିଶେଷତ୍ୱ ହେଲା ଏଠାରେ କେବଳ ପାଠପଢ଼ା ନୁହେଁ, ଜୀବିକା ଅର୍ଜନ, ଆତ୍ମନିର୍ଭରଶୀଳତା,

Digitized by srujanika@gmail.com

ଜନସେବା, ଚରିତ୍ରଗଠନ ଓ ଧନ୍ଦାମୂଳକ ଶିକ୍ଷା ଆଦି ଦିଗଗୁଡ଼ିକ ପ୍ରତି ବିଶେଷ ଦୃଷ୍ଟି ଦିଆଯାଉଛି। ସ୍ୱାମୀ ବିବେକାନନ୍ଦ କହୁଥିଲେ, ଶିକ୍ଷାର ଆଭିମୁଖ୍ୟ ପୂର୍ଣ୍ଣାଙ୍ଗ ମଣିଷ ଗଢ଼ିବା, ଯାହା 'କିସ୍' ସମ୍ଭବ କରିପାରିଛି। ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟଟି ହେଲା ଶିକ୍ଷା ସମାପ୍ତି ପରେ ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କ କର୍ମସଂସ୍ଥାନ ବ୍ୟବସ୍ଥା ମଧ୍ୟ ଏହି ଅନୁଷ୍ଠାନ ପକ୍ଷରୁ କରାଯାଉଛି। ଏଠାରୁ ଉତ୍ତୀର୍ଣ୍ଣ ହେଉଥିବା ସମସ୍ତ ଛାତ୍ରଛାତ୍ରୀ ରାଜ୍ୟରେ ତଥା ରାଜ୍ୟ ବାହାରେ ନିଯୁକ୍ତିର ସୁବିଧା ପାଇପାରୁଛନ୍ତି। ଡକ୍ଟର ସାମନ୍ତ ଆସନ୍ତା ଦଶବର୍ଷ ଭିତରେ ଦୁଇଲକ୍ଷ ଆଦିବାସୀ ଛାତ୍ରଛାତ୍ରୀଙ୍କୁ ଶିକ୍ଷା ଦେଇ ସମାଜର ମୁଖ୍ୟସ୍ରୋତରେ ସାମିଲ କରିବାକୁ ଲକ୍ଷ୍ୟ ରଖିଛନ୍ତି। 'କିସ୍' ବର୍ତ୍ତମାନ ବିଶ୍ୱରେ ଏକ ସୁପରିଚିତ ଶିକ୍ଷା ଅନୁଷ୍ଠାନ। ଆଦିବାସୀଙ୍କ ଶିକ୍ଷା ବିକାଶରେ ଅଚ୍ୟୁତ ସାମନ୍ତଙ୍କ ପ୍ରଚେଷ୍ଟା କେବଳ ଓଡ଼ିଶା ଭିତରେ ସୀମିତ ନୁହେଁ, ଏହା ଭାରତର ବିଭିନ୍ନ ରାଜ୍ୟକୁ ବ୍ୟାପିଛି। ଦିଲ୍ଲୀରେ 'କିସ୍'ର ଏକ ଶାଖା ଆରମ୍ଭ କରାଯାଇଛି ଏବଂ ଛତିଶଗଡ଼, ମଧ୍ୟପ୍ରଦେଶ, ପଶ୍ଚିମବଙ୍ଗ, ଝାଡ଼ଖଣ୍ଡ, କର୍ଣ୍ଣାଟକ ଆଦି ରାଜ୍ୟରେ 'କିସ୍'ର ଶାଖା ପ୍ରତିଷ୍ଠା ପାଇଁ ସେହି ରାଜ୍ୟ ସରକାରମାନେ ଡକ୍ଟର ସାମନ୍ତଙ୍କୁ ଅନୁରୋଧ କରିଛନ୍ତି। ଆମ ରାଜ୍ୟରେ ଆହୁରି ୨୦ଟି ଜିଲ୍ଲାରେ 'କିସ୍' ପର୍ଯ୍ୟାୟକ୍ରମେ ଆଦିବାସୀ ଛାତ୍ରଛାତ୍ରୀଙ୍କ ଶିକ୍ଷାଦାନ ପାଇଁ ଶାଖାମାନ ଗଠନ କରିବାକୁ ଲକ୍ଷ୍ୟ ରଖିଛି।

ଓଡ଼ିଆ ଭାଷାର ଉନ୍ନତି କିଭଳି ହେବ ସେଥିପାଇଁ ବିଜୁ ପଟ୍ଟନାୟକ ସବୁବେଳେ ଚେଷ୍ଟିତ ଥିଲେ। ସେ ଇଂରାଜୀ ଭାଷାରେ ଯେଭଳି ଭଲ ଭାବରେ ବକ୍ତୃତା ଦେଇପାରୁଥିଲେ, ଓଡ଼ିଆ ଭାଷାରେ ମଧ୍ୟ ସେହିଭଳି ସୁନ୍ଦର ଭାବରେ କହିପାରୁଥିଲେ। ତାଙ୍କର ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀତ୍ୱ ସମୟରେ ସେ 'ଓଡ଼ିଆ ଭାଷା ପ୍ରତିଷ୍ଠାନ' ପ୍ରତିଷ୍ଠା କରିଥିଲେ। ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକସଂପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିବା ମାସିକ ପତ୍ରିକା 'ଉତ୍କଳ ପ୍ରସଙ୍ଗ'କୁ ଆକର୍ଷଣୀୟ କରିବାକୁ ବିଜୁବାବୁଙ୍କ ପଦକ୍ଷେପ ଲୋକମାନଙ୍କଦ୍ୱାରା ଆଦୃତି ଲାଭ କରିଥିଲା। ବିଜୁ ପଟ୍ଟନାୟକଙ୍କର ପିତାମାତା ବ୍ରାହ୍ମ ଧର୍ମାବଲମ୍ବୀ ହୋଇଥିଲେ ମଧ୍ୟ ବିଜୁ ପଟ୍ଟନାୟକଙ୍କର ଭାରତୀୟ ଧର୍ମ, ସଂସ୍କୃତି ପ୍ରତି ବିଶେଷ ଅନୁରାଗ ଥିଲା ଏବଂ ସେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପରମ ଭକ୍ତ ଥିଲେ।

ଡକ୍ଟର ଅଚ୍ୟୁତ ସାମନ୍ତ ପିଲାଦିନୁ ତାଙ୍କ ମାତା ନୀଳିମାରାଣୀ ସାମନ୍ତଙ୍କ ଦ୍ୱାରା ପ୍ରଭାବିତ ହୋଇ ନିଜକୁ ଜଣେ ଧର୍ମପରାୟଣ ବ୍ୟକ୍ତି ଭାବେ ଗଢ଼ି ତୋଳିଛନ୍ତି। ଓଡ଼ିଶାର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କର ସେ ପରମ ଭକ୍ତ। ଏହା ବ୍ୟତୀତ

Digitized by srujanika@gmail.com

ପବନସୂତ ଶ୍ରୀଶ୍ରୀହନୁମାନଙ୍କର ସେ ହେଉଛନ୍ତି ଚରଣାଶ୍ରିତ। କିଟ୍ ଟେମ୍ପଲ୍ ଟ୍ରଷ୍ଟ ପ୍ରତିଷ୍ଠା କରି କିସ୍ ପରିସରରେ ଏକ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା କରିଛନ୍ତି, ଯେଉଁଠାରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା, ବାହୁଡ଼ାଯାତ୍ରା ପ୍ରଭୃତି ସବୁ ଯାନିଯାତ୍ରା ରୀତିନୀତି ଅନୁସାରେ ଅନୁଷ୍ଠିତ ହୁଏ। ବର୍ତ୍ତମାନ ସୁଦ୍ଧା ଓଡ଼ିଶାର ୨୫ଟି ମନ୍ଦିରର ଜରାଜୀର୍ଣ୍ଣ ଅବସ୍ଥାକୁ ସୁଧାରିବା ପାଇଁ ସେ ଅକାତରରେ ଅର୍ଥ ବ୍ୟୟ କରିଛନ୍ତି। ଏହାର ଏକ ଜ୍ୱଳନ୍ତ ଉଦାହରଣ ପୁରୀ ଜିଲ୍ଲାରେ ଅବସ୍ଥିତ ଶିରୁଳି ମହାବୀର ମନ୍ଦିର। ଅତୀତରେ ଜରାଜୀର୍ଣ୍ଣ ଅବସ୍ଥାରେ ଥିବା ଏହି ମନ୍ଦିରକୁ ସେ ବହୁ ଅର୍ଥ ବ୍ୟୟ କରି ନୂତନ ରୂପ ଦେଇଛନ୍ତି।

ଓଡ଼ିଆ ସାହିତ୍ୟର ପ୍ରଚାର ପାଇଁ ଲେଖକ ଲେଖିକାମାନଙ୍କୁ ପ୍ରୋତ୍ସାହିତ କରିବା ଉଦ୍ଦେଶ୍ୟରେ ଡକ୍ଟର ସାମନ୍ତ ପ୍ରକାଶ କରିଥିଲେ ଓଡ଼ିଶାର ସର୍ବପ୍ରଥମ ମାସିକ ପାରିବାରିକ ପତ୍ରିକା 'କାଦମ୍ବିନୀ' ଓ ଏହାର ସମ୍ପାଦନା ଦାୟିତ୍ୱ ଗ୍ରହଣ କରିଛନ୍ତି ଓଡ଼ିଆ ସାହିତ୍ୟର ବିଶିଷ୍ଟ ଲେଖିକା ଓ ସମାଜସେବୀ ଡକ୍ଟର ଇତି ସାମନ୍ତ। ଗତ ୧୭ ବର୍ଷ (୨୦୦୦ ମସିହାରୁ) ଧରି ନିରବଚ୍ଛିନ୍ନ ଭାବରେ ଏହି ପତ୍ରିକା ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଛି। ସେହିପରି ଓଡ଼ିଶାର ସର୍ବପ୍ରଥମ ମାସିକ ପାରିବାରିକ ଶିଶୁ-କିଶୋର ପତ୍ରିକା 'କୁନିକଥା' ୨୦୧୧ ମସିହାରୁ ପ୍ରକାଶିତ ହେଉଛି, ଯାହାର କୁନି ସମ୍ପାଦକ ଅଛନ୍ତି ଶ୍ରୀଜିତ ଅଭିଷେକ (ଗୁଡୁ)। ଏହାଛଡ଼ା ତାଙ୍କଦ୍ୱାରା ପ୍ରତିଷ୍ଠିତ 'କାଦମ୍ବିନୀ ମିଡିଆ ପ୍ରାଇଭେଟ୍ ଲିମିଟେଡ୍' ତରଫରୁ ଅନେକ ପୁସ୍ତକ ପ୍ରକାଶନ ହେଉଛି। 'କାଦମ୍ବିନୀ'ର ବାର୍ଷିକ ଉତ୍ସବରେ ବିଶିଷ୍ଟ ସାହିତ୍ୟିକମାନଙ୍କୁ ସେମାନଙ୍କ କୃତି ଯୋଗୁଁ ସମ୍ବର୍ଦ୍ଧନା କରିବା ସହିତ ଆର୍ଥିକ ପୁରସ୍କାର ପ୍ରଦାନ କରାଯାଉଛି। ବେସରକାରୀ ସ୍ତରରେ ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ଏଭଳି ଉତ୍ସର୍ଗୀକୃତ ମନୋଭାବ ନେଇ କାର୍ଯ୍ୟ କରୁଥିବା ବ୍ୟକ୍ତି ବିରଳ।

ମହାତ୍ମା ଗାନ୍ଧୀ ଗ୍ରାମ୍ୟ ସ୍ୱରାଜ୍ୟରେ ସମ୍ପୂର୍ଣ୍ଣ ଆସ୍ଥା ସ୍ଥାପନ କରିଥିଲେ। ସେ ଚାହୁଁଥିଲେ ଗ୍ରାମାଞ୍ଚଳରେ ଗଣତନ୍ତ୍ର ପ୍ରତିଷ୍ଠା ହେଉ ଏବଂ ଗ୍ରାମପଞ୍ଚାୟତ ଗ୍ରାମ ଉତ୍ଥାନର ମୁଖ୍ୟ ଭୂମିକା ଗ୍ରହଣ କରୁ। ଦେଶ ସ୍ୱାଧୀନ ହେବା ପରେ ଆମ ରାଜ୍ୟରେ 'ଓଡ଼ିଶା ଗ୍ରାମପଞ୍ଚାୟତ ଆଇନ-୧୯୪୮' ପ୍ରଣୀତ ହୋଇଥିଲା। ବିଜୁବାବୁ ମୁଖ୍ୟମନ୍ତ୍ରୀ ଭାବରେ ପ୍ରଥମଥର ଶାସନ ଭାର ଗ୍ରହଣ କଲାପରେ ୧୯୬୧ ମସିହା ନଭେମ୍ବର ୨୦ ତାରିଖରେ ଓଡ଼ିଶା ବିଧାନସଭାରେ ପଞ୍ଚାୟତିରାଜ ବ୍ୟବସ୍ଥା ସମ୍ପର୍କରେ ତାଙ୍କର ଅଭିଭାଷଣରେ ଗ୍ରାମାଞ୍ଚଳର ପ୍ରତିନିଧିମାନଙ୍କ ପ୍ରତି ତାଙ୍କର ଆସ୍ଥା ଓ ଶ୍ରଦ୍ଧା ନିବେଦନ

Digitized by srujanika@gmail.com

କରିଥିଲେ । ବିଜୁବାବୁ ପଞ୍ଚାୟତିରାଜ ବ୍ୟବସ୍ଥାକୁ ଜୀବନ୍ୟାସ ଦେବାସହ ତୃଣମୂଳସ୍ତରର ପ୍ରତିନିଧିମାନଙ୍କୁ ମହିମାମଣ୍ଡିତ କରିଥିଲେ । ସରପଞ୍ଚଙ୍କୁ 'ପଞ୍ଚାୟତର ମୁଖ୍ୟମନ୍ତ୍ରୀ' ଆଖ୍ୟା ଦେଇ ସେ ସମଗ୍ର ପଞ୍ଚାୟତକୁ ରାଜ୍ୟର ପ୍ରତିଛବି ଭାବେ ପ୍ରତିପାଦନ କରିଥିଲେ । ପ୍ରତ୍ୟେକ ଗ୍ରାମର ବିକାଶ ହେଲେ ରାଜ୍ୟର ଓ ଦେଶର ବିକାଶ ଘଟିବ ଏବଂ ତୃଣମୂଳସ୍ତରରୁ ଗଣତନ୍ତ୍ର ଦୃଢ଼ୀଭୂତ ହେବ ବୋଲି ବିଜୁବାବୁଙ୍କର ଦୃଢ଼ ବିଶ୍ୱାସ ଥିଲା ।

ଡକ୍ଟର ଅଚ୍ୟୁତ ସାମନ୍ତ ବିଜୁବାବୁଙ୍କ ଚିନ୍ତାଧାରାରେ ପ୍ରଗାଢ଼ ବିଶ୍ୱାସ ସ୍ଥାପନ କରି ନିଜ ଗ୍ରାମ କଲରାବାଙ୍କର ଉନ୍ନତି କଳ୍ପେ ଯେଉଁ ପଦକ୍ଷେପମାନ ଗ୍ରହଣ କରିଛନ୍ତି ତାହାଦ୍ୱାରା କଲରାବାଙ୍କ କେବଳ ଓଡ଼ିଶାରେ ନୁହେଁ, ଭାରତରେ ପ୍ରଥମ ଆଦର୍ଶ ଗ୍ରାମ ରୂପେ ପରିଗଣିତ ହୋଇଛି । ୨୦୦୬ ମସିହାରେ ଓଡ଼ିଶାର ରାଜ୍ୟପାଳ ରାମେଶ୍ୱର ଠାକୁର ଏହି ଗ୍ରାମକୁ ପରିଦର୍ଶନ କରି ଏହାକୁ ଆଦର୍ଶ ଗ୍ରାମର ମାନ୍ୟତା ଦେଇଥିଲେ । ଏହି ଗ୍ରାମଟି କଟକରୁ ପ୍ରାୟ ୨୮ କିଲୋମିଟର ଦୂରରେ ଅବସ୍ଥିତ । ଅଚ୍ୟୁତ ସାମନ୍ତ ଏହି ଗ୍ରାମରେ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ସ୍ଥାପନ କରିଛନ୍ତି, ଯେଉଁଠାରେ ଆଖପାଖ ଅଞ୍ଚଳର ପିଲାମାନେ ପାଠ ପଢୁଛନ୍ତି । ଗ୍ରାମବାସୀମାନଙ୍କର ଅନୁରୋଧ ରକ୍ଷାକରି ସେଠାରେ ସିବିଏସ୍‌ଇ ସହିତ ଅନୁବନ୍ଧିତ ଏକ ଇଂଲିଶ ମିଡିୟମ ସ୍କୁଲର ପ୍ରତିଷ୍ଠା ମଧ୍ୟ ତାଙ୍କଦ୍ୱାରା ହୋଇଛି । ଏହି ଗ୍ରାମଟି ମାଣପୁର ପଞ୍ଚାୟତ ଅଧୀନର ଅନ୍ୟତମ ଗ୍ରାମ । କଲରାବାଙ୍କ ଗ୍ରାମରେ ଓ ମାଣପୁର ପଞ୍ଚାୟତରେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ ଆଦି ବିଭିନ୍ନ ଧର୍ମର ଲୋକେ ଶାନ୍ତି ଓ ସୌହାର୍ଦ୍ଦ୍ୟର ସହିତ ବାସ କରୁଛନ୍ତି । ଏହି ଗ୍ରାମରେ କାନାରା ବ୍ୟାଙ୍କର ଏକ ଶାଖା ଓ ପୋଷ୍ଟଅଫିସ ରହିଛି । ୨୦୧୫ ମସିହାରେ କେନ୍ଦ୍ର ସରକାରଙ୍କର ଆଦର୍ଶ ଗ୍ରାମର ପରିକଳ୍ପନାର ବହୁ ପୂର୍ବରୁ ୧୯୯୧ ମସିହାରେ ବିଜୁ ପଟ୍ଟନାୟକ ଓଡ଼ିଶାରେ ଆଦର୍ଶ ଗ୍ରାମପଞ୍ଚାୟତ ଓ ଆଦର୍ଶ ଗ୍ରାମର ସ୍ୱପ୍ନ ସାକାର କରିବାକୁ ସମସ୍ତଙ୍କୁ ଆହ୍ୱାନ ଦେଇଥିଲେ, ଯାହାକୁ ଡକ୍ଟର ଅଚ୍ୟୁତ ସାମନ୍ତ ପୂରଣ କରିବାରେ ସମର୍ଥ ହୋଇଛନ୍ତି । ଡକ୍ଟର ଅଚ୍ୟୁତ ସାମନ୍ତ ଏହି ଗ୍ରାମବାସୀମାନଙ୍କର ସୁଖଦୁଃଖର ବନ୍ଧୁ, ହିତାକାଂକ୍ଷୀ ଓ ମାର୍ଗଦର୍ଶକ । ତାଙ୍କର ବିଶ୍ୱାସ ଗ୍ରାମର ଶିକ୍ଷିତ ବ୍ୟକ୍ତିମାନେ ଯଦି ନିଜ ନିଜର ଗ୍ରାମର ଉନ୍ନତି ପାଇଁ ଚେଷ୍ଟିତ ହେବେ ଓ ମନପ୍ରାଣ ଦେଇ କାର୍ଯ୍ୟ କରିବେ, ତେବେ ପ୍ରତ୍ୟେକ ଗ୍ରାମ ଆଦର୍ଶ ଗ୍ରାମ ହୋଇପାରିବ ଏବଂ ଓଡ଼ିଶାର ଲୋକମାନଙ୍କର ଭାଗ୍ୟର ପରିବର୍ତ୍ତନ ହେବ । ଓଡ଼ିଶାକୁ ଆଉ କେହି ଦରିଦ୍ରତମ ରାଜ୍ୟ ବୋଲି ଚିତ୍ରଣ କରିପାରିବେ ନାହିଁ ।

Digitized by srujanika@gmail.com

ଛାତ୍ରାବସ୍ଥାରେ ବିଜୁବାବୁ ଜଣେ କୃତୀ କ୍ରୀଡ଼ାବିତ୍ ଥିଲେ । ଓଡ଼ିଶାର ପିଲାମାନେ ଖେଳକୁଦରେ ଭାଗ ନିଅନ୍ତୁ ଏବଂ ଜାତୀୟସ୍ତରରେ ସର୍ବୋତ୍କୃଷ୍ଟ ପ୍ରଦର୍ଶନ କରନ୍ତୁ ବୋଲି ସେ ସବୁବେଳେ ଆଶାପୋଷଣ କରୁଥିଲେ । ୧୯୯୦ ମସିହାରେ ସେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିବା ପରେ ଭୁବନେଶ୍ୱରରେ ବିଶାଳ 'କଳିଙ୍ଗ ଷ୍ଟାଡିୟମ୍' ନିର୍ମାଣକୁ ଯୁଦ୍ଧକାଳୀନ ଭିତ୍ତିରେ ତ୍ୱରାନ୍ୱିତ କରିବାକୁ ଆଦେଶ ଦେଇଥିଲେ, ଯାହାକି ସେତେବେଳେ ଅକ୍ଷରେ ଅକ୍ଷରେ ପାଳିତ ହୋଇଥିଲା । ଓଡ଼ିଶାର ଜିଲ୍ଲାମାନଙ୍କରେ ମଧ୍ୟ ସେ ଷ୍ଟାଡିୟମ୍, ଜିମ୍ନାସିୟମ୍‌ମାନ ନିର୍ମାଣ କରାଇଥିଲେ । ସେ ଚାହୁଁଥିଲେ ଯେ ଘରୋଇ ଉଦ୍ୟମରେ ବିଶ୍ୱବିଦ୍ୟାଳୟ ଓ କ୍ରୀଡ଼ା ସଂଗଠନମାନେ କ୍ରୀଡ଼ା ଭିତ୍ତିଭୂମି ଗଠନ କରି ଯୁବସମାଜକୁ କ୍ରୀଡ଼ା ପ୍ରତି ଆକୃଷ୍ଟ କରାନ୍ତୁ । ୧୯୯୦ରୁ ୧୯୯୫ ମସିହା ଓଡ଼ିଶା କ୍ରୀଡ଼ାର ଭିତ୍ତିଭୂମି ପ୍ରସ୍ତୁତିର ସୁବର୍ଣ୍ଣଯୁଗ ରୂପେ ପରିଚିତ । ମହିଳାମାନଙ୍କର ସୁରକ୍ଷା ପାଇଁ ସେ କରାଟେ, ଜୁଡୋ ଖେଳକୁ ଓଡ଼ିଶାରେ ଲୋକପ୍ରିୟ କରାଇଥିଲେ ।

କ୍ରୀଡ଼ାର ଉନ୍ନତି ପାଇଁ ବିଜୁ ପଟ୍ଟନାୟକଙ୍କ ଭଳି ଡକ୍ଟର ଅଚ୍ୟୁତ ସାମନ୍ତ ମଧ୍ୟ ଅବିରତ ଚେଷ୍ଟାରତ । ଡକ୍ଟର ସାମନ୍ତ ଶିକ୍ଷା ସହିତ ଛାତ୍ରଛାତ୍ରୀମାନଙ୍କୁ କ୍ରୀଡ଼ାରେ ଭାଗନେବାକୁ ଯେଉଁ ଉତ୍ସାହ ପ୍ରଦାନ କରୁଛନ୍ତି ତାହାର ପଟ୍ଟାନ୍ତର ନାହିଁ । ସେ ଏକ ସ୍ୱତନ୍ତ୍ର କ୍ରୀଡ଼ା ନିର୍ଦ୍ଦେଶାଳୟ ପ୍ରତିଷ୍ଠା କରିଛନ୍ତି । ତାଙ୍କଦ୍ୱାରା ପ୍ରତିଷ୍ଠିତ ଅନୁଷ୍ଠାନମାନଙ୍କରେ ପଢୁଥିବା ଛାତ୍ରଛାତ୍ରୀ ବିଭିନ୍ନ କ୍ରୀଡ଼ାରେ ଓଡ଼ିଶାରୁ ପ୍ରତିନିଧିତ୍ୱ କରି ବିଶ୍ୱଦରବାରରେ କୃତିତ୍ୱ ଓ ସୁନାମ ଅର୍ଜନ କରୁଛନ୍ତି । ବିଶେଷକରି କିସ୍‌ର ଛାତ୍ରମାନେ 'ରଗ୍‌ବି' କ୍ରୀଡ଼ାରେ ବିଶ୍ୱବିଜୟୀ ହେବା ସହିତ ୨୦୧୬ ବିଶ୍ୱ ଅଲମ୍ପିକ୍ କ୍ରୀଡ଼ାରେ ତୀରନ୍ଦାଜିରେ ପ୍ରତିନିଧିତ୍ୱ କରି ଓଡ଼ିଶାକୁ ଗୌରବାନ୍ୱିତ କରିଛନ୍ତି । ଏହି ଅନୁଷ୍ଠାନର ଛାତ୍ରୀ ଦୁତୀ ଚାନ୍ଦ ୨୦୧୬ ମସିହା ରିଓ ଅଲମ୍ପିକ୍‌ରେ ଦୌଡ଼କୁଦରେ ଭାରତକୁ ପ୍ରତିନିଧିତ୍ୱ କରିଥିଲେ । ଏହି ଅନୁଷ୍ଠାନର ଛାତ୍ର ଅମୀୟ ମଲ୍ଲିକ ଦୌଡ଼କୁଦରେ ଦେଶରେ ଜଣେ ଦ୍ରୁତ ଧାବକ ରୂପେ ସୁନାମ ଅର୍ଜନ କରିଛନ୍ତି ।

ବିଜୁ ପଟ୍ଟନାୟକ ଏକ ଦାନଶୀଳ ବ୍ୟକ୍ତି ଥିଲେ । ତାଙ୍କୁ ବହୁ ଲୋକ ଦାନବୀର କର୍ଣ୍ଣଙ୍କ ସହିତ ତୁଳନା କରିଥାନ୍ତି । ଯଦି କୌଣସି ଲୋକ ପାଠ ପଢ଼ିବା ପାଇଁ ହେଉ ବା ବିଦେଶ ଯିବାକୁ ହେଉ ବା ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗଦେବାକୁ ହେଉ ବା ଚିକିତ୍ସା ପାଇଁ ହେଉ, ଆର୍ଥିକ ସାହାଯ୍ୟ ପାଇଁ ତାଙ୍କୁ ଅନୁରୋଧ କରେ, ସେ

Digitized by srujanika@gmail.com

କେବେ ନିରାଶ ହୋଇ ଫେରିବାର ଦୃଷ୍ଟାନ୍ତ ନାହିଁ। ବିଶିଷ୍ଟ ସାହିତ୍ୟିକ ଚିତ୍ତରଂଜନ ଦାସ, ବିଶିଷ୍ଟ କଥାକାର ମନୋଜ ଦାସ, ଡକ୍ଟର ଜଗନ୍ନାଥ ପଣ୍ଡା, ମୋରାରଜୀ ଦେଶାଇଙ୍କ ମନ୍ତ୍ରିମଣ୍ଡଳରେ ବୈଦେଶିକ ମନ୍ତ୍ରୀ ଥିବା ସମରେନ୍ଦ୍ର କୁଣ୍ଡୁ ଓ ଏହିପରି ଶତାଧିକ ପ୍ରତିଷ୍ଠିତ ଲୋକ କେଉଁଠି ନା କେଉଁଠି ଉଲ୍ଲେଖ କରିଛନ୍ତି ଯେ, ବିଜୁବାବୁଙ୍କ ଆର୍ଥିକ ସହାୟତାରୁ ସେମାନେ ବିଦେଶ ଯାଇପାରିଥିଲେ। ବିଜୁ ପଟ୍ଟନାୟକ ଅଗଣିତ ଜନସାଧାରଣଙ୍କୁ ଆର୍ଥିକ ସାହାଯ୍ୟ ଦେଇ ଶେଷ ଜୀବନରେ ନିଜେ ନିଃସ୍ୱ ହୋଇଯାଇଥିଲେ। ରାଜନୀତିର ପଶାଖେଳରେ ସମସ୍ତ ଶକ୍ତି ଖଟାଇ ନିଜ ଶିଳ୍ପ ସାମ୍ରାଜ୍ୟରେ ଘୋର କ୍ଷତି ଘଟାଇଥିଲେ। ନିଷ୍ପାପର ସହିତ କାମ କରିବା ଓ ଜିତିବା ଉପରେ ବିଶ୍ୱାସ ରଖି ଏକ ଲଢୁଆ ମନୋବୃତ୍ତି ନେଇ ସେ ସଦାସର୍ବଦା ଅଗ୍ରସର ହେଉଥିଲେ। ପ୍ରଚଣ୍ଡ ଦେଶପ୍ରେମ ତାଙ୍କୁ ବେଳେବେଳେ ବିବାଦମାନ ପରିସ୍ଥିତିରେ ପକାଉଥିଲା। ପ୍ରାଚୀନ ଉତ୍କଳର ନାମ 'କଳିଙ୍ଗ'କୁ ସେ ପୁନରୁଦ୍ଧାର କରି ବିଶ୍ୱରେ ଓଡ଼ିଆ ଜାତିକୁ ପରିଚିତ କରାଇଥିଲେ। ପ୍ରବଳ ଇଚ୍ଛାଶକ୍ତି ଓ ପ୍ରଚଣ୍ଡ ସ୍ୱାଭିମାନର ଅଧିକାରୀ ଥିଲେ ବିଜୁ ପଟ୍ଟନାୟକ। ସ୍ୱାଧୀନତା ପରେ ଓଡ଼ିଶାକୁ ବିଶ୍ୱରେ ଏକ ଶ୍ରେଷ୍ଠ ଓ ପ୍ରଗତିଶୀଳ ରାଜ୍ୟ ରୂପେ ଉଭା କରାଇବାକୁ ସେ ମନପ୍ରାଣ ଦେଇ ଚେଷ୍ଟା କରୁଥିଲେ। ମହିଳାମାନଙ୍କୁ ସ୍ୱତନ୍ତ୍ର ସୁବିଧା ଯୋଗାଇବାକୁ ଅହରହ ଉଦ୍ୟମ କରୁଥିଲେ। ଦରିଦ୍ର, ଅନୁନ୍ନତ, ଅବହେଳିତ ଓଡ଼ିଶାକୁ ସମୃଦ୍ଧ କରିବା ଲକ୍ଷ୍ୟ ନେଇ ସେ ସାରାଜୀବନ ସଂଗ୍ରାମ ଜାରି ରଖିଥିଲେ।

ସେହିଭଳି ଗରିବ ଅବହେଳିତମାନଙ୍କ ପାଇଁ ଡକ୍ଟର ସାମନ୍ତଙ୍କ ହୃଦୟବତ୍ତାର ଉଦାହରଣ ଅନେକ। ଗୋଟିଏ ଉଦାହରଣ ଏଠାରେ ଦେଲେ ଯଥେଷ୍ଟ ହେବ। ୨୫ ଅଗଷ୍ଟ ୨୦୧୬ରେ କଳାହାଣ୍ଡି ଜିଲ୍ଲାର ଅସହାୟ ଆଦିବାସୀ ଦାନ ମାଝି ଭବାନିପାଟଣା ସଦର ଡାକ୍ତରଖାନାରୁ କାହାର ସହାୟତା ନପାଇ ନିଜ ସ୍ତ୍ରୀର ଶବକୁ କାନ୍ଧରେ ବୋହି ଓ ଛୋଟ ଝିଅର ହାତ ଧରି ନିଜ ଗାଁ ଅଭିମୁଖେ ଯାଉଥିବା ଦୃଶ୍ୟ ସମସ୍ତଙ୍କୁ ବ୍ୟଥିତ କରିଥିଲା। ଡକ୍ଟର ସାମନ୍ତ ଅଗଷ୍ଟ ଶେଷ ସପ୍ତାହରେ ତତ୍କ୍ଷଣାତ୍ ଦାନ ମାଝି ସହିତ ସମ୍ପର୍କ ସ୍ଥାପନ କରି ତାର ତିନୋଟି ଝିଅଙ୍କୁ ଆଣି କିସ୍‌ରେ ରଖି ପାଠ ପଢ଼ାଇବାର ବନ୍ଦୋବସ୍ତ କଲେ। ବାହାରିନ୍ ରାଷ୍ଟ୍ରର ଦିଲ୍ଲୀରେ ଅବସ୍ଥାପିତ ରାଷ୍ଟ୍ରଦୂତଙ୍କୁ ଅନୁରୋଧ କରି ସେ ଦେଶର ପ୍ରଧାନମନ୍ତ୍ରୀଙ୍କ ତରଫରୁ ଦାନ ମାଝିଙ୍କୁ ନ' ଲକ୍ଷ ଟଙ୍କାର ସହାୟତା ରାଶି ଯୋଗାଇଦେଲେ। ଏହିଭଳି କାର୍ଯ୍ୟ କରିବାକୁ କିଭଳି ହୃଦୟର ଆବଶ୍ୟକ ତାହା

Digitized by srujanika@gmail.com

ସମସ୍ତେ ଉପଲବ୍ଧି କରିଛନ୍ତି। ବିପଦାପନ୍ନ କେହି ସାହାଯ୍ୟ ପାଇଁ ତାଙ୍କର ଦ୍ୱାରସ୍ଥ ହୋଇ ନିରାଶ ହେବା କଥା ଶୁଣାଯାଏ ନାହିଁ।

ବିଭିନ୍ନ ଦେଶରୁ ପାଉଥିବା ପୁରସ୍କାର ରାଶି ସେ କିସ୍ ଅନୁଷ୍ଠାନର ଉନ୍ନତି ପାଇଁ ନିୟୋଜିତ କରିଥାଆନ୍ତି। ଗୋଟିଏ ଉଦାହରଣ ହେଲା, ୨୦୧୫ ମସିହାରେ ବାହାରିନ୍ ରାଜ୍ୟରେ ବିଶ୍ୱର ସର୍ବଶ୍ରେଷ୍ଠ ସମାଜସେବୀ ରୂପେ ବିବେଚିତ ହୋଇ ପୁରସ୍କାର ସ୍ୱରୂପ ପାଇଥିବା ୧୦ ଲକ୍ଷ ଡଲାର ସେ କିସ୍ ପାଣ୍ଠିରେ ଜମା କରିଛନ୍ତି। ଏହା ପୂର୍ବରୁ ୨୦୧୫ରେ ମଙ୍ଗୋଲିଆର ସର୍ବଶ୍ରେଷ୍ଠ ବେସରକାରୀ ପୁରସ୍କାର 'ବେଷ୍ଟ ୱାର୍କର', ୨୦୧୪ ମସିହାରେ ମାଲେସିଆ ରାଜଧାନୀ ମାନିଲାଠାରେ ଏସିଆର ନୋବଲ ଶାନ୍ତି ପୁରସ୍କାର ରୂପେ ବିବେଚିତ 'ଅନ୍ତରାଷ୍ଟ୍ରୀୟ ଗୁସି ଶାନ୍ତି ପୁରସ୍କାର', ୨୦୧୪ରେ ମସ୍କୋଠାରେ ଇଣ୍ଟରନେସନାଲ ଆସୋସିଏସନ ଅଫ୍ ନଲେଜ୍ ଦ୍ୱାରା ପ୍ରେସିଡେଣ୍ଟ ଗୋଲ୍ଡ ମେଡାଲ ଓ ଶିକ୍ଷାରେ ସର୍ବଶ୍ରେଷ୍ଠ ଅବଦାନ ପାଇଁ ସ୍ୱର୍ଣ୍ଣପଦକ, ୨୦୧୩ରେ ଚେକୋସ୍ଲୋଭାକିଆ ବିଶ୍ୱବିଦ୍ୟାଳୟ ପ୍ରଗ୍‌ଠାରୁ ସର୍ବୋଚ୍ଚ ସମ୍ମାନ 'ଗଡେଷ୍ଟ ଅଫ୍ ହାରଭେଷ୍ଟ, ଓପିଏସ୍' ଏବଂ ସମାଜସେବା କ୍ଷେତ୍ରରେ ସର୍ବୋତ୍ତମ ଅବଦାନ ପାଇଁ ଚେକ୍ ରିପବ୍ଲିକ୍‌ର ବିଦେଶ ମନ୍ତ୍ରଣାଳୟ ତରଫରୁ ରୌପ୍ୟ ପଦକ ପାଇଛନ୍ତି। ଏହା ବ୍ୟତୀତ ୨୪ଟି ଜାତୀୟ ସ୍ତରର ଓ ଅନ୍ତର୍ଜାତୀୟ କ୍ଷେତ୍ରରେ ସମ୍ମାନ ପାଇ ଓଡ଼ିଶାକୁ ଦେଶ ବିଦେଶରେ ଗୌରବାନ୍ୱିତ କରିଛନ୍ତି। ଯେଉଁଠାରୁ ତାଙ୍କୁ ଆର୍ଥିକ ପୁରସ୍କାର ମିଳେ, ସେ ଅର୍ଥକୁ ସେ ଆଣି କିସ୍ ପାଣ୍ଠିରେ ଜମା କରିଦିଅନ୍ତି। ଅଦ୍ୟାବଧି ଡକ୍ଟର ସାମନ୍ତ ୩୩ଟି ବିଶ୍ୱବିଦ୍ୟାଳୟରୁ ଶିକ୍ଷା, ସମାଜସେବା କ୍ଷେତ୍ରରେ ତାଙ୍କର ଉତ୍ସର୍ଗୀକୃତ ଅବଦାନ ପାଇଁ 'ଡକ୍ଟର ଅନରିସ କୌଜା' ଡିଗ୍ରୀରେ ସମ୍ମାନିତ ହୋଇଛନ୍ତି। ସମାଜସେବା କ୍ଷେତ୍ରରେ ତାଙ୍କ କାର୍ଯ୍ୟାବଳୀ ବର୍ତ୍ତମାନ କେବଳ ଭାରତରେ ନୁହେଁ, ବିଶ୍ୱର ବିଭିନ୍ନ ଦେଶମାନଙ୍କରେ ଦୃଷ୍ଟାନ୍ତ ହୋଇଥିବା ସଙ୍ଗେ ସଙ୍ଗେ ପ୍ରଶଂସନୀୟ ଓ ଅନୁକରଣୀୟ ହୋଇଛି। ଡକ୍ଟର ସାମନ୍ତ ୩୮ ବର୍ଷ ବୟସରେ କିଟ୍ ବିଶ୍ୱବିଦ୍ୟାଳୟର କୁଳାଧିପତି ପଦବୀ ଅଳଙ୍କୃତ କରିଥିବାରୁ 'ୟଙ୍ଗେଷ୍ଟ ଚାନ୍ସେଲର ଅଫ୍ ଏନି ୟୁନିଭରସିଟି ଇନ୍ ଇଣ୍ଡିଆ' ଭାବରେ ଲିମ୍‌କା ବୁକ୍ ଅଫ୍ ରେକର୍ଡସ୍‌ରେ ସ୍ଥାନ ପାଇଛନ୍ତି। ଡକ୍ଟର ଅଚ୍ୟୁତ ସାମନ୍ତ 'ଆର୍ଟ ଅଫ୍ ଗିଭିଙ୍ଗ' (ଦେବାରେ ଆନନ୍ଦ), 'ଇଣ୍ଡିଆ ଏଗେନ୍‌ଷ୍ଟ ନେଗେଟିଭିଟି' (ନକାରାତ୍ମକ ମନୋଭାବ ବିରୋଧୀ ଭାରତ) ଓ 'ଆର୍ଟ ଅଫ୍ ଆପ୍ରିସିଏସନ୍' (ଅନ୍ୟର କାର୍ଯ୍ୟକୁ

Digitized by srujanika@gmail.com

ପ୍ରଶଂସା) ଆଦି ଅନୁଷ୍ଠାନମାନ ଗଠନ କରି ବିଶ୍ୱରେ ସହନଶୀଳତା, ଶାନ୍ତି ଓ ସଦ୍‌ଭାବର ବାତାବରଣକୁ ପ୍ରୋତ୍ସାହିତ କରୁଛନ୍ତି। ଜୁଲାଇ ୨୦୧୫ରୁ 'କିସ୍' ଜାତିସଂଘର ସ୍ୱତନ୍ତ୍ର ପରାମର୍ଶଦାତା ସଭ୍ୟ ଭାବରେ ସ୍ୱୀକୃତି ପାଇଛି। ଦେଶର ଓ ବିଶ୍ୱର ବିଭିନ୍ନ ଅନୁଷ୍ଠାନମାନଙ୍କରେ ହେଉଥିବା ଗୁରୁତ୍ୱପୂର୍ଣ୍ଣ ସମ୍ମିଳନୀଗୁଡ଼ିକୁ ସେ ବହୁ ସମୟରେ ବକ୍ତବ୍ୟ ପ୍ରଦାନ କରିବାକୁ ନିମନ୍ତ୍ରିତ ହେଉଛନ୍ତି। ଡକ୍ଟର ସାମନ୍ତ ହେଉଛନ୍ତି ଓଡ଼ିଶାର ଗର୍ବ ଓ ଗୌରବ।

ବିଜୁ ପଟ୍ଟନାୟକ ଯୁବକ ଯୁବତୀମାନଙ୍କ ପାଇଁ ନିଯୁକ୍ତି ସୁଯୋଗ ସୃଷ୍ଟି କରିବାକୁ ସବୁବେଳେ ଜୋର୍ ଦେଉଥିଲେ। ସେ କହୁଥିଲେ, "ଅନେକ ବେକାର ଚାକିରି ଆଶା ରଖି ମୋ ନିକଟକୁ ଆସୁଛନ୍ତି। କିନ୍ତୁ ବେକାରମାନଙ୍କୁ ଚାକିରି ଦେବାପାଇଁ ଇଚ୍ଛୁକ ବ୍ୟକ୍ତି ମୋ ନିକଟକୁ ଆସୁ ନାହାନ୍ତି।" ଡକ୍ଟର ଅଚ୍ୟୁତ ସାମନ୍ତ ଅନୁଷ୍ଠାନମାନ ଗଠନ କରି ସେଥିରେ ବିଭିନ୍ନ ପଦବୀରେ ୧୦ ହଜାରରୁ ଅଧିକ ବ୍ୟକ୍ତିଙ୍କୁ ନିୟମିତ ଭାବେ ଚାକିରି ପ୍ରଦାନ କରିଛନ୍ତି। କିଟ୍ ଓ କିସ୍ ପ୍ରତିଷ୍ଠା ହେବାରୁ ପଟିଆ ଅଞ୍ଚଳରେ ଛୋଟବଡ଼ ବ୍ୟବସାୟ କରି ଲକ୍ଷାଧିକ ଲୋକ ପରୋକ୍ଷରେ ରୋଜଗାରକ୍ଷମ ହୋଇପାରିଛନ୍ତି। କିଟ୍‌ରେ ପାଖାପାଖି ୪୫ଟି ଦେଶର ପିଲାଙ୍କ ସହିତ ଭାରତର ବହୁ ପ୍ରଦେଶର ପିଲାମାନେ ଶିକ୍ଷାଲାଭର ସୁଯୋଗ ପାଉଛନ୍ତି। କିଟ୍‌କୁ ଆସୁଥିବା ଅଭିଭାବକମାନେ ଭୁବନେଶ୍ୱର, ପୁରୀ ଓ କୋଣାର୍କ ଆଦି ସ୍ଥାନକୁ ବୁଲି ଯାଇଥାନ୍ତି। ତେଣୁ କିଟ୍ ଓଡ଼ିଶାର ପର୍ଯ୍ୟଟନ ଶିଳ୍ପକୁ ସମୃଦ୍ଧ କରିବାରେ ସହାୟକ ହୋଇଛି।

ଆମେରିକାର ବିଖ୍ୟାତ ନିଗ୍ରୋ ନେତା ମାର୍ଟିନ ଲୁଥର କିଙ୍ଗଙ୍କ ଭଳି ଅଚ୍ୟୁତ ସାମନ୍ତଙ୍କର ମଧ୍ୟ ଗୋଟିଏ ବିରାଟ ସ୍ୱପ୍ନ ଅଛି। ସେ ସ୍ୱପ୍ନ ହେଲା ଦଳିତ, ଅବହେଳିତ ବିଶେଷକରି ତଫସିଲଭୁକ୍ତ ଜାତି ଓ ଆଦିବାସୀ ସଂପ୍ରଦାୟର ପିଲାଙ୍କୁ ଶିକ୍ଷିତ କରି ସମାଜର ମୁଖ୍ୟସ୍ରୋତରେ ସାମିଲ କରିବା। ସେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କର ଗୋଟିଏ ପଂକ୍ତିକୁ ମନଧ୍ୟାନ ଦେଇ କାର୍ଯ୍ୟକାରୀ କରନ୍ତି। ପଂକ୍ତିଟି ହେଲା–

'ଧନ ମାନ ଜନ ଯାହା ଉପାର୍ଜନ
କରିଅଛ ଧରାତଳେ
ହରଷିତ ମନେ କରତବ୍ୟ ଜ୍ଞାନେ
ଆଣିଦିଅ ଯଜ୍ଞସ୍ଥଳେ।'

Digitized by srujanika@gmail.com

ମଧୁସୂଦନ ଦାସଙ୍କର ଆଉ ଗୋଟିଏ ପଂକ୍ତି–

'ଜାତି ନନ୍ଦିଘୋଷ ଚଳିବ କି ଭାଇ
ସ୍ୱାର୍ଥକୁ ସାରଥୀ କଲେ
ଟାଣେକିରେ ଗାଡ଼ି ଦାନାର ତୋବଡ଼ା
ଘୋଡ଼ା ମୁହେଁ ବନ୍ଧା ଥିଲେ' ?

ନିଜ ସ୍ୱାର୍ଥକୁ ଜଳାଞ୍ଜଳି ନ ଦେଲେ କେହି କେବେ ଦେଶକୁ ସମୃଦ୍ଧ କରିବାରେ ସଫଳତା ହାସଲ କରି ନଥାଏ। ଅଚ୍ୟୁତ ସାମନ୍ତ ନିଜର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟକୁ ବଳିଦେଇ ରାଜ୍ୟର ଅସହାୟ ଜନତାଙ୍କ ବିକାଶରେ ଲାଗିପଡ଼ିଛନ୍ତି।

ବିଜୁବାବୁ ନିଜ ଜୀବଦ୍ଦଶାରେ ଓଡ଼ିଶାକୁ ସମୃଦ୍ଧ ନ ଦେଖି ମଧୁସୂଦନଙ୍କର ଅନ୍ୟ ଗୋଟିଏ ପଂକ୍ତି ମନେ ପକାଉଥିଲେ। ତାହା ହେଲା–

'ଆଶା ଥିଲା ମନେ ଦେଖିବି ଜୀବନେ
ଉତ୍କଳ ମାତାର ସହାସ୍ୟ ବଦନ
ସେ ଆଶା ତୁଟିଲା ସପନ ଭାଙ୍ଗିଲା
ନ ଦେଖି ଉତ୍କଳେ କରତବ୍ୟ ଜ୍ଞାନ।'

ବିଜୁବାବୁ ଓଡ଼ିଶାବାସୀଙ୍କ ପାଇଁ ବହୁ ଉନ୍ନତିମୂଳକ କାର୍ଯ୍ୟ କରି, ସେମାନଙ୍କୁ ନିଜ ସହୋଦର ପରି ଆଦର କରି, ନିଜ ଜୀବନକୁ ବାଜି ଲଗାଇ ଅର୍ଜନ କରିଥିବା ସମସ୍ତ ଧନ ଓଡ଼ିଶାବାସୀଙ୍କ ସ୍ୱାର୍ଥ ପାଇଁ ବ୍ୟୟ କରି ଭାରତର ଜଣେ କିମ୍ବଦନ୍ତୀ ପୁରୁଷ ପାଲଟି ଯାଇଛନ୍ତି। ତେଣୁ ଓଡ଼ିଶାରେ ଦଳମତନିର୍ବିଶେଷରେ ସମସ୍ତେ କେନ୍ଦ୍ର ସରକାରଙ୍କ ନିକଟରେ ଦାବି କରୁଛନ୍ତି ଯେ ତାଙ୍କୁ 'ଭାରତରତ୍ନ' ପଦବୀରେ ଭୂଷିତ କରାଯାଉ।

ଡକ୍ଟର ଅଚ୍ୟୁତ ସାମନ୍ତ ବିଜୁ ପଟ୍ଟନାୟକଙ୍କ ପ୍ରଦର୍ଶିତ ମାର୍ଗରେ ନିଜକୁ ପରିଚାଳିତ କରି ଶିକ୍ଷା ହିଁ ସମୃଦ୍ଧିର ଚାବିକାଠି ବୋଲି ହୃଦୟଙ୍ଗମ କରିଛନ୍ତି ଏବଂ ବହୁ ବାଧାବିଘ୍ନକୁ ଖାତିର ନ କରି ନିଜ ଲକ୍ଷ୍ୟପଥରେ ଆଗେଇ ଚାଲିଛନ୍ତି। ସବୁଠାରୁ ଦରିଦ୍ର ଅବସ୍ଥାରେ ଥିବା ଓଡ଼ିଶାର ଜନଜାତିର ଉନ୍ନତି କଳ୍ପେ କିସ୍ ମାଧ୍ୟମରେ କାର୍ଯ୍ୟ କରି ଆଜି ସେ ବିଶ୍ୱ ଦରବାରରେ ଏକ ନୂତନ ଯୁଗସ୍ରଷ୍ଟାର ମାନ୍ୟତା ଲାଭ କଲେଣି।

ଅତି ନିକଟରେ ଘଟିଯାଇଥିବା କେତୋଟି ଘଟଣା ଯାହାକି ଅଚ୍ୟୁତ ସାମନ୍ତଙ୍କ କାର୍ଯ୍ୟକୁ ଆକାଶଛୁଆଁ ପ୍ରଶଂସା ଆଣିଦେଇଛି, ତାହା ବର୍ଣ୍ଣନା କରିବା ଉଚିତ ହେବ। ୭ ଏପ୍ରିଲ ୨୦୧୭ରେ ଲୋକସଭାରେ ଆଦିବାସୀ କଲ୍ୟାଣ ସମ୍ପର୍କିତ ଆଲୋଚନାରେ

Digitized by srujanika@gmail.com

ଭାଗନେଇ ମଧ୍ୟପ୍ରଦେଶ ଅନ୍ତର୍ଗତ ଟିକମଗଡ଼ ସଂସଦୀୟ କ୍ଷେତ୍ରର ସାଂସଦ ଡକ୍ଟର ବୀରେନ୍ଦ୍ର କୁମାର 'କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସୋସିଆଲ୍ ସାଇନ୍ସେସ୍'ରେ ପ୍ରବର୍ତ୍ତିତ ହୋଇଥିବା ଗରିବ ଆଦିବାସୀ ପିଲାଙ୍କ ପାଇଁ କେଜିରୁ ପିଜି ଯାଏ ଶିକ୍ଷା ବ୍ୟବସ୍ଥା ଓ ପାଠ ସମାପ୍ତି ପରେ ନିଯୁକ୍ତି କିମ୍ବା ଆତ୍ମନିଯୁକ୍ତି ପାଇଁ ହୋଇଥିବା ଯୋଜନାର ଭୂୟସୀ ପ୍ରଶଂସା କରିଥିଲେ। ସେ ଲୋକସଭାର ସମସ୍ତ ସାଂସଦଙ୍କୁ ଭୁବନେଶ୍ୱରର ଏହି ଅନୁଷ୍ଠାନକୁ ଦେଖିଯିବାକୁ ଅନୁରୋଧ କରିଥିଲେ। ତାଙ୍କ ବକ୍ତବ୍ୟକୁ ସମସ୍ତ ସାଂସଦ ଟେବୁଲ୍ ବାଡ଼େଇ ସମର୍ଥନ କରିଥିଲେ।

ମଇ ମାସ ୫ ତାରିଖରେ ଦିଲ୍ଲୀସ୍ଥିତ 'ଇଣ୍ଡିଆ ଟିଭି'ର ଏଡିଟର-ଇନ୍-ଚିଫ୍ ରଜତ ଶର୍ମା 'ଆଜ୍ କୀ ବାତ୍' କାର୍ଯ୍ୟକ୍ରମରେ 'କିସ୍'ରେ ଅନୁଷ୍ଠିତ ହେଉଥିବା ଦୈନନ୍ଦିନ କାର୍ଯ୍ୟକ୍ରମ ସମ୍ପର୍କରେ ବର୍ଣ୍ଣନା କରି କହିଥିଲେ ଯେ, ଡକ୍ଟର ଅଚ୍ୟୁତ ସାମନ୍ତ ୧ ୨ ୫ଜଣ ଆଦିବାସୀ ଛାତ୍ରଛାତ୍ରୀଙ୍କୁ ନେଇ ୧ ୯ ୯ ୩ ମସିହାରେ ମାତ୍ର ପାଞ୍ଚ ହଜାର ଟଙ୍କା ପୁଞ୍ଜିରେ ପ୍ରତିଷ୍ଠା କରିଥିବା ଏହି ଅନୁଷ୍ଠାନ ଆଜି ପଚିଶ ହଜାର ଛାତ୍ରଛାତ୍ରୀଙ୍କୁ ଏଠାରେ ନିଃଶୁଳ୍କ ରହିବା, ଖାଇବା, ପଢ଼ିବାର ସୁଯୋଗ ଯୋଗାଇଦେବା ସଙ୍ଗେ ସଙ୍ଗେ ରୋଜଗାରକ୍ଷମ କରିବାକୁ ସକ୍ଷମ କରାଇପାରିଛନ୍ତି ଯାହା 'କିସ୍'କୁ ବିଶ୍ୱରେ ଅଦ୍ୱିତୀୟ ଶିକ୍ଷାନୁଷ୍ଠାନର ମାନ୍ୟତା ଦେଇଛି। ଶତଜିହ୍ୱାରେ ଏଭଳି ପ୍ରଶଂସା କୌଣସି ଶିକ୍ଷାନୁଷ୍ଠାନକୁ କ୍ୱଚିତ ମିଳିଥାଏ।

୧୫ ଏପ୍ରିଲ ୨୦୧୭ରେ ଭୁବନେଶ୍ୱରରେ ଭାରତୀୟ ଜନତା ପାର୍ଟିର ଜାତୀୟ କାର୍ଯ୍ୟକାରିଣୀ ବୈଠକରେ ଯୋଗଦେବାପାଇଁ ଆସିଥିବା କେନ୍ଦ୍ର ସରକାରଙ୍କର ମନ୍ତ୍ରୀ ଓ ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀମାନଙ୍କ ମଧ୍ୟରୁ ପାଞ୍ଚ ଜଣ କେନ୍ଦ୍ରମନ୍ତ୍ରୀ ଶ୍ରୀ ରାଜନାଥ ସିଂହ, ସ୍ୱରାଷ୍ଟ୍ର ବିଭାଗ ମନ୍ତ୍ରୀ; ଶ୍ରୀ ପ୍ରକାଶ ଜାଭେଦକର, ମାନବସମ୍ବଳ ବିକାଶ ବିଭାଗ ମନ୍ତ୍ରୀ; ଶ୍ରୀ ଭେଙ୍କୟା ନାଇଡୁ, ସୂଚନା ଓ ପ୍ରସାରଣ ବିଭାଗ ମନ୍ତ୍ରୀ; ଶ୍ରୀ ବିଜୟ ଗୋଏଲ, କ୍ରୀଡ଼ା ଓ ଯୁବସେବା ବିଭାଗ ମନ୍ତ୍ରୀ; ଶ୍ରୀ ଫଗନ୍ ସିଂହ କୁଲସ୍ତେ, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ରାଜ୍ୟ ମନ୍ତ୍ରୀ ଓ ଶ୍ରୀ ମନୋହର ଲାଲ ଖଟ୍ଟର, ହରିଆନାର ମୁଖ୍ୟମନ୍ତ୍ରୀ 'କିସ୍' ପରିସର ପରିଦର୍ଶନ କରି ଛାତ୍ରଛାତ୍ରୀମାନଙ୍କ ପାଇଁ ହୋଇଥିବା ସୁବିଧା ସୁଯୋଗକୁ ଦେଖି ଅଭିଭୂତ ହୋଇପଡ଼ିଥିଲେ ଏବଂ ଭାରତର ଏହି ଅନନ୍ୟ ଅନୁଷ୍ଠାନର ପ୍ରତିଷ୍ଠାତା ଡକ୍ଟର ଅଚ୍ୟୁତ ସାମନ୍ତଙ୍କୁ ଭାବବିହ୍ୱଳ ହୋଇ ସାଲ୍ୟୁଟ କରୁଛୁ ବୋଲି କହିଥିଲେ।

Digitized by srujanika@gmail.com

ଡକ୍ଟର ସାମନ୍ତଙ୍କର ଓଡ଼ିଶାର ବିକାଶର ଯେଉଁ ସ୍ୱପ୍ନ ତାର ଅନ୍ୟ ଏକ ଉଦାହରଣ ଚଳିତବର୍ଷ ୧୦ ମେ'ରେ ଦୃଷ୍ଟିକୁ ଆସିଛି। ସେହିଦିନ 'କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସୋସିଆଲ୍ ସାଇନ୍ସେସ୍'ର ଏକ ଶାଖା ଦରିଦ୍ର ବ୍ରାହ୍ମଣ ପିଲାମାନଙ୍କୁ ପଢ଼ାଇବା ପାଇଁ ପୁରୀଠାରେ ପ୍ରତିଷ୍ଠା ହେବ ବୋଲି ଭରତିଆ ଚାରିଟେବୁଲ ଟ୍ରଷ୍ଟର ମୁଖ୍ୟ କିଶନ ଅଗ୍ରୱାଲଙ୍କ ସହିତ ଏକ ବୁଝାମଣପତ୍ର ସ୍ୱାକ୍ଷରିତ ହୋଇଛି। ଏହା ଏକ ଯୁଗୋପଯୋଗୀ ପଦକ୍ଷେପ। ଦରିଦ୍ରର କୌଣସି ଜାତି ନାହିଁ। ଦରିଦ୍ର ବ୍ରାହ୍ମଣ ପିଲାମାନଙ୍କ ପାଇଁ ଏହି ଅନୁଷ୍ଠାନ ପ୍ରତିଷ୍ଠା କରିବାର ପରିକଳ୍ପନା ଅଚ୍ୟୁତ ସାମନ୍ତଙ୍କୁ ସମାଜରେ ପ୍ରଶଂସିତ କରିଛି। ଆଗାମୀ ଦିନରେ ସେ ନୂତନ ଯୋଜନାମାନ କାର୍ଯ୍ୟକାରୀ କରି ଓଡ଼ିଶାବାସୀଙ୍କ ଦାରିଦ୍ର୍ୟ ଦୂରୀକରଣରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିବେ ଓ ବିଜୁ ପଟ୍ଟନାୟକଙ୍କର ସୁଯୋଗ୍ୟ ଦାୟାଦ ଭାବରେ ପରିଚିତ ହେବେ ଏହା ରାଜ୍ୟବାସୀ ଆଶାପୋଷଣ କରନ୍ତି।

- ୦ -

Digitized by srujanika@gmail.com

# ଯୁଗନାୟକଙ୍କ ଯୁଗ

- ୧୯୧୬ - ମାର୍ଚ୍ଚ ୫ ତାରିଖରେ କଟକ ସହରର ତୁଳସୀପୁରସ୍ଥିତ ଆନନ୍ଦଭବନରେ ଜନ୍ମ।
- ୧୯୨୩ - ଆପେଣ୍ଡିସ୍ ଫାଟିଯିବାରୁ ଜୀବନ ସଙ୍କଟାପନ୍ନ, ଅସ୍ତ୍ରୋପଚାରରେ ଆରୋଗ୍ୟ ଲାଭ।
- ୧୯୨୬ - କଟକର ସ୍ୱରାଜ୍ୟ ଆଶ୍ରମଠାରେ ମହାତ୍ମା ଗାନ୍ଧୀଙ୍କୁ ଦେଖିବାକୁ ଯାଇ କିଶୋର ବିଜୁ ଗୋରା ପୋଲିସ୍‌ଙ୍କ ଲାଠିମାଡ଼ରେ ଆହତ।
- ୧୯୨୭ - ମିଶନ ସ୍କୁଲ ଛାଡ଼ି ରେଭେନ୍ସା କଲିଜିଏଟ୍ ସ୍କୁଲରେ ଯୋଗଦାନ।
- ୧୯୩୨ - ରେଭେନ୍ସା କଲେଜରେ ଆଇ.ଏସ୍.ସି. ପଢୁଥିବା ବେଳେ କଟକରୁ ପେଶାୱାର ପର୍ଯ୍ୟନ୍ତ ସାଇକେଲ ଯୋଗେ ଦୁଃସାହସିକ ଯାତ୍ରା।
- ୧୯୩୪ - ବି.ଏସ୍‌ସି. ପଢ଼ା ଛାଡ଼ି ପାଇଲଟ୍ ଟ୍ରେନିଂରେ ଯୋଗଦାନ।
- ୧୯୩୬ - ଇଣ୍ଡିଆନ୍ ନ୍ୟାସନାଲ ଏୟାରୱେଜରେ ପାଇଲଟ୍ ରୂପେ ଯୋଗଦାନ।
- ୧୯୩୮ - ଜ୍ଞାନଦେବୀଙ୍କୁ ବିବାହ।
- ୧୯୪୦ - ଗୋରା ସରକାର ପାଖରେ ଚାକିରି କରି ମଧ୍ୟ ଭାରତୀୟ ସ୍ୱାଧୀନତା ସଂଗ୍ରାମୀମାନଙ୍କ ସହ ଯୋଗସୂତ୍ର ସ୍ଥାପନ।
- ୧୯୪୧ - ଫେବୃଆରୀ ୧୭ ତାରିଖ ଦିନ ପିତା ଲକ୍ଷ୍ମୀ ନାରାୟଣ ପଟ୍ଟନାୟକଙ୍କ ବିୟୋଗ।
- ୧୯୪୨ - ଏପ୍ରିଲ୍ ୨୦ରେ ମାତା ଆଶାଦେବୀଙ୍କ ଦେହାନ୍ତ।
- ୧୯୪୩ - ଇଣ୍ଡିଆନ୍ ନ୍ୟାସନାଲ୍ ଏୟାରୱେଜର ପାଇଲଟ ତଥା ଭାରତର ତତ୍‌କାଳୀନ ବଡଲାଟ ଆଭେଲଙ୍କର ପାଇଲଟ୍ ହେବାର ସୁଯୋଗ ପାଇଥିବାରୁ ବିଜୁବାବୁ ଏହାର ସୁବିଧା ନେଇ ଭାରତୀୟ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଯୋଗାଇଥିବା ଦୋଷରେ ଜାନୁଆରୀ ୧୨ ତାରିଖ ଦିନ ଦିଲ୍ଲୀରେ ଗିରଫ।
- ୧୯୪୪ - ବିଜୁ ପଟ୍ଟନାୟକ ଆଣ୍ଡ୍ କମ୍ପାନୀ ବ୍ୟବସାୟ ପ୍ରତିଷ୍ଠାନ ଆରମ୍ଭ।
- ୧୯୪୫ - ସ୍ୱଦେଶୀ ଆନ୍ଦୋଳନରେ ଯୋଗଦେଇ ପୁନର୍ବାର ଗିରଫ ଓ ପ୍ୟାରୋଲାରେ କାରାମୁକ୍ତ।

Digitized by srujanika@gmail.com

- ୧୯୪୬ - ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟ ଭାବେ ନିର୍ବାଚିତ।
- ୧୯୪୭ - ପଣ୍ଡିତ ନେହେରୁଙ୍କ ପରାମର୍ଶ କ୍ରମେ ଇଣ୍ଡୋନେସିଆର ସ୍ୱାଧୀନତା ଆନ୍ଦୋଳନରେ ନେତୃବୃନ୍ଦଙ୍କ ସହ ଯୋଗଦାନ ସ୍ଥାପନ।
- ୧୯୪୭ - କଟକ ସହରରୁ ରାଜ୍ୟ ବିଧାନସଭାକୁ ନିର୍ବାଚିତ।
- ୧୯୪୮ - ଇଣ୍ଡୋନେସିଆର ପ୍ରଧାନମନ୍ତ୍ରୀ ସାହରିୟର ଓ ଉପରାଷ୍ଟ୍ରପତି ମହମ୍ମଦ ହଟ୍ଟାଙ୍କୁ ଡଚ୍‌ମାନଙ୍କ କବଳରୁ ଏକ ସିଙ୍ଗଲ୍ ସିଟର ପ୍ଲେନ୍ "ଡାକୋଟା" ଯୋଗେ ସେଠାରୁ ଉଠାଇ ଆଣି ଦିଲ୍ଲୀରେ ପହଂଚାଇଥିଲେ।
- ୧୯୫୦ - ଇଣ୍ଡୋନେସିଆର ସ୍ୱାଧୀନତା ସଂଗ୍ରାମରେ ଗୁରୁତ୍ୱପୂର୍ଣ୍ଣ ସହଯୋଗ ନିମିତ୍ତ ଇଣ୍ଡୋନେସିଆ ସରକାର ଦ୍ୱାରା ସମ୍ମାନିତ।
- ୧୯୫୧ - ଜାତିସଂଘର ୟୁନେସ୍କୋ ଜରିଆରେ 'କଳିଙ୍ଗ ପୁରସ୍କାର' ପ୍ରଚଳନର ଶୁଭାରମ୍ଭ।
- ୧୯୫୨ - ଗଞ୍ଜାମରେ ଭଞ୍ଜନଗର ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀଭାବେ ରାଜ୍ୟ ବିଧାନସଭାକୁ ନିର୍ବାଚିତ।
- ୧୯୬୦ - କଳିଙ୍ଗ ଟ୍ରଷ୍ଟ ପକ୍ଷରୁ ଅକ୍ଟୋବର ୨ ତାରିଖ ଦିନ 'କଳିଙ୍ଗ' ଦୈନିକ ସମ୍ବାଦପତ୍ରର ପ୍ରକାଶନ।
- ୧୯୬୧ - ପ୍ରଦେଶ କଂଗ୍ରେସ ଦଳର ସଭାପତି। ଚୌଦ୍ୱାର ବିଧାନସଭା ଆସନରୁ କଂଗ୍ରେସ ପ୍ରାର୍ଥୀଭାବେ ନିର୍ବାଚିତ ହୋଇ ଜୁନ୍ ୨୩ ତାରିଖରେ ମୁଖ୍ୟମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ।
- ୧୯୬୨ - ଜାନୁଆରୀ ୩ ତାରିଖ ଦିନ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କଠାରୁ ପାରାଦ୍ୱୀପ ବନ୍ଦର ନିର୍ମାଣ ପାଇଁ ପ୍ରତିଶ୍ରୁତି ଲାଭ। ଭାରତ ଚୀନ୍ ଯୁଦ୍ଧ ବେଳେ ପ୍ରଧାନମନ୍ତ୍ରୀ ସ୍ୱତନ୍ତ୍ର ଯୁଦ୍ଧ ପରାମର୍ଶଦାତା ଭାବେ ନିଯୁକ୍ତ।
- ୧୯୬୨ - ଯୁଦ୍ଧରେ ସାମିଲ ହୋଇଥିବା ସୈନିକମାନଙ୍କ ନିକଟରେ ଖାଦ୍ୟପୁଡ଼ିଆ ଓ ଯୁଦ୍ଧ ସାମଗ୍ରୀ ପହଂଚିବା ପାଇଁ କୌଣସି ସୁବିଧା ନଥିବାରୁ ଏକ ଗୁରୁଦାୟିତ୍ୱ କଳିଙ୍ଗ ଏୟାରଲାଇନ୍ ଉପରେ ନ୍ୟସ୍ତ କରାଗଲା ଏବଂ ନିଜେ ବିଜୁ ପଟ୍ଟନାୟକ ଦାୟିତ୍ୱ ନେଇ ଖାଦ୍ୟପୁଡ଼ିଆ ବାଣ୍ଟିବା ସହିତ ଆବଶ୍ୟକୀୟ ଜିନିଷ ପହଂଚାଇବାବେଳେ ଅନେକଥର ଦୁର୍ଘଟଣାର ସମ୍ମୁଖୀନ ହୋଇଥିଲେ।
- ୧୯୬୩ - ଅକ୍ଟୋବର ୨ ତାରିଖ ଦିନ କାମରାଜ ଯୋଜନା ଅନୁସାରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା।

Digitized by srujanika@gmail.com

- ୧୯୬୩ – କେନ୍ଦ୍ରରେ ଯୋଜନା ବୋର୍ଡ ଉପାଧ୍ୟକ୍ଷ ଭାବରେ ନିଯୁକ୍ତି ପାଇଥିଲେ। ପ୍ରଥମ ବ୍ୟକ୍ତି ବିଜୁ ପଟ୍ଟନାୟକ ଯିଏକି କେନ୍ଦ୍ରରେ ଏମ୍.ପି. ନଥାଇ ଏହି ପଦବୀରେ ନିଯୁକ୍ତ ହୋଇଥିଲେ।
- ୧୯୬୪ – ଭୁବନେଶ୍ୱରଠାରେ ଜାତୀୟ କଂଗ୍ରେସ ପୂର୍ଣ୍ଣାଙ୍ଗ ଅଧିବେଶନର ଆୟୋଜନ।
- ୧୯୬୫ – ଭାରତ ପାକିସ୍ତାନ ଯୁଦ୍ଧ ସମୟରେ ସପ୍ତମ ନୌସେନା ଦ୍ୱାରା ଆକ୍ରମଣକୁ ଏଡ଼ାଇବା ପାଇଁ ଶାସ୍ତ୍ରୀଙ୍କ ଅନୁରୋଧ ରକ୍ଷାକରି ବିଜୁବାବୁ ଇଣ୍ଡୋନେସିଆ ଯାତ୍ରା କରି ଏହାର ବିରୋଧ କରିଥିଲେ।
- ୧୯୬୭ – ତାଙ୍କ ବିରୋଧରେ ଅକ୍ଟୋବର ୨୬ ତାରିଖ ଦିନ ଖାନ୍ନା କମିଶନ ନିଯୁକ୍ତି।
- ୧୯୬୯ – ଜାନୁଆରୀରେ ଖାନ୍ନା କମିଶନ ରିପୋର୍ଟ ଦାଖଲ, ତାଙ୍କ ବିରୋଧରେ କୌଣସି ଦୁର୍ନୀତି ପ୍ରମାଣିତ ହୋଇପାରିଲା ନାହିଁ। ଜାତୀୟ କଂଗ୍ରେସ ଛାଡ଼ି 'ଉତ୍କଳ କଂଗ୍ରେସ' ନାମରେ ଏକ ଆଞ୍ଚଳିକ ଦଳ ଗଠନ।
- ୧୯୭୧ – ଉତ୍କଳ କଂଗ୍ରେସ ପ୍ରାର୍ଥୀ ଭାବେ ଏକକାଳୀନ ୪ଟି ବିଧାନସଭା ଆସନରୁ ପରାଜିତ ହେଲେ ମଧ୍ୟ ଉପନିର୍ବାଚନରେ ରାଜନଗର ଆସନରୁ ବିଜୟୀ।
- ୧୯୭୩ – ଇଣ୍ଡୋନେସିଆ ପକ୍ଷରୁ 'ଭୂମିପୁତ୍ର' ଉପାଧିରେ ଭୂଷିତ।
- ୧୯୭୪ – ଉତ୍କଳ କଂଗ୍ରେସ ପ୍ରାର୍ଥୀ ଭାବେ ବିଧାନସଭାକୁ ନିର୍ବାଚିତ।
- ୧୯୭୪ – ବଙ୍ଗଳାଦେଶ ପ୍ରେସିଡେଣ୍ଟ ସେଖ୍ ମୁଜିବୁର ରହମନଙ୍କୁ ହତ୍ୟା ଷଡ଼ଯନ୍ତ୍ର ଦୁଃସମ୍ବାଦ ପାଇ ବିଜୁବାବୁ ଏକ ଉଡ଼ାଜାହାଜ ଧରି ଢାକାରେ ପହଂଚିଲେ ତାଙ୍କୁ ସେଠାରୁ ଉଦ୍ଧାର କରି ନେଇ ଆସିବା ପାଇଁ, କିନ୍ତୁ ସେତେବେଳକୁ ଆତତାୟୀମାନେ ତାଙ୍କୁ ହତ୍ୟା କରି ସାରିଥିଲେ।
- ୧୯୭୫ – ଜରୁରୀକାଳୀନ ପରିସ୍ଥିତି ଘୋଷଣାବେଳେ ଜୁନ୍ ୨୬ ତାରିଖ ଦିନ ଦିଲ୍ଲୀଠାରେ 'ମିଶା'ରେ ଗିରଫ।
- ୧୯୭୯ – କେନ୍ଦ୍ରାପଡ଼ା ଲୋକସଭା ଆସନରୁ ଲୋକଦଳ ପ୍ରାର୍ଥୀ ଭାବେ ନିର୍ବାଚିତ ହୋଇ ମୋରାରଜୀ ଦେଶାଇଙ୍କ ମନ୍ତ୍ରୀମଣ୍ଡଳରେ ଖଣି ଓ ଇସ୍ପାତ ମନ୍ତ୍ରୀ ରୂପେ ଦାୟିତ୍ୱ ଗ୍ରହଣ।
- ୧୯୭୯ – ଚରଣ ସିଂଙ୍କ ମନ୍ତ୍ରୀମଣ୍ଡଳରେ ଖଣି, ଇସ୍ପାତ ଓ କୋଇଲା ବିଭାଗର ଦାୟିତ୍ୱ ଗ୍ରହଣ।

Digitized by srujanika@gmail.com

- ୧୯୮୦ - କେନ୍ଦ୍ରାପଡ଼ା ଲୋକସଭା ଆସନରୁ ନିର୍ବାଚିତ।
- ୧୯୮୫ - ଜନତା ଦଳ ପ୍ରାର୍ଥୀ ରୂପେ ଭୁବନେଶ୍ୱର ବିଧାନସଭା ଆସନ ଓ କେନ୍ଦ୍ରାପଡ଼ା ଲୋକସଭା ଆସନରୁ ନିର୍ବାଚିତ। ଲୋକସଭା ଆସନରୁ ଇସ୍ତଫା ଦେଇ ୨୨.୩.୮୫ ରୁ ୩.୩.୯୦ ପର୍ଯ୍ୟନ୍ତ ରାଜ୍ୟ ବିଧାନସଭାର ବିରୋଧୀ ଦଳ ନେତା।
- ୧୯୯୦ - ଭୁବନେଶ୍ୱର ବିଧାନସଭା ଆସନରୁ ଜନତାଦଳ ପ୍ରାର୍ଥୀ ରୂପେ ନିର୍ବାଚିତ ହୋଇ ମାର୍ଚ୍ଚ ୫ ତାରିଖ ଦିନ ମୁଖ୍ୟମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ।
- ୧୯୯୫ - ଜନତା ଦଳ ପ୍ରାର୍ଥୀ ଭାବେ ଭୁବନେଶ୍ୱର ବିଧାନସଭା ଆସନରୁ ନିର୍ବାଚିତ ହୋଇ ମାର୍ଚ୍ଚ ୨୩ ତାରିଖରୁ ବିଧାନସଭାରେ ବିରୋଧି ଦଳର ନେତା ଭାବେ ଦାୟିତ୍ୱ ଗ୍ରହଣ।
- ୧୯୯୬ - ଜନତା ଦଳ ପ୍ରାର୍ଥୀ ଭାବେ ଗଞ୍ଜାମ ଜିଲ୍ଲାର ଆସ୍କା ଓ କଟକ ଲୋକସଭା ଆସନରୁ ବିଜୟ। ମେ ମାସ ୫ତାରିଖରେ ଭୁବନେଶ୍ୱର ବିଧାନସଭା ଆସନ ତଥା ବିରୋଧି ଦଳ ନେତା ପଦତ୍ୟାଗ। କଟକ ଲୋକସଭା ଆସନରୁ ଇସ୍ତଫା।
- ୧୯୯୭ - ମାର୍ଚ୍ଚ ୨୮ ତାରିଖରେ ଜନତା ଦଳର ଏକ ବୈଠକରେ ଯୋଗଦାନ। ସାମ୍ବାଦିକ ସମ୍ମିଳନୀ ପରେ ଛାତିରେ ଯନ୍ତ୍ରଣା ଅନୁଭବ କରିବାରୁ ସେହିଦିନ ହିଁ ଦିଲ୍ଲୀ ଯାତ୍ରା। ମାର୍ଚ୍ଚ ୨୯ ତାରିଖ ଦିନ ନିଃଶ୍ୱାସ ପ୍ରଶ୍ୱାସ ନେବାରେ ଭୀଷଣ କଷ୍ଟ ଅନୁଭବ କରିବାରୁ ରାମ ମନୋହର ଲୋହିଆ ହସ୍‌ପିଟାଲରେ ଭର୍ତ୍ତି କରାଗଲା। ମାର୍ଚ୍ଚ ୩୦ ତାରିଖ ଦିନ ଅବସ୍ଥାରେ କୌଣସି ପରିବର୍ତ୍ତନ ନ ହେବାରୁ ଏସ୍‌କର୍ଟ ଡାକ୍ତରଖାନାକୁ ସ୍ଥାନାନ୍ତରିତ। ଏପ୍ରିଲ୍ ୧୫ ତାରିଖ ଅବସ୍ଥାରେ ସାମାନ୍ୟ ଉନ୍ନତି। ଏପ୍ରିଲ୍ ୧୬ ତାରିଖ ଦିନ ଅବସ୍ଥାରେ ଅବନିତ, ଭୀଷଣ ଜ୍ୱର ସହ ଚେତାଶୂନ୍ୟ। ଏପ୍ରିଲ ୧୭ ସକାଳ ୭ଟା ୪୫ ମିନିଟ୍‌ରେ ଶେଷ ନିଃଶ୍ୱାସ ତ୍ୟାଗ।
- ୧୯୯୭ - ଏପ୍ରିଲ୍ ୧୮ତାରିଖ ବିଜୁବାବୁଙ୍କ ମରଶରୀର ଭୁବନେଶ୍ୱର ବିମାନ ବନ୍ଦରରେ ପହଂଚିଲା ଓ ପୁରୀଠାରେ ଅନ୍ତ୍ୟେଷ୍ଟିକ୍ରିୟା ସମାପ୍ତ।

- ୦ -

Digitized by srujanika@gmail.com

## The Tall Man Biju Patnaik ପୁସ୍ତକର ଲୋକାର୍ପଣ ପରେ

ମୋ ଦ୍ୱାରା ରଚିତ ପୁସ୍ତକ 'ଭାରତର ବରପୁତ୍ର ବିଜୁ ପଟ୍ଟନାୟକ' ଅଗଷ୍ଟ ୨୦୧୭ ମସିହାରେ ପ୍ରକାଶ ପାଇଲା ପରେ ବହୁ ଲୋକପ୍ରିୟତା ହାସଲ କଲା ଏବଂ ଫେବୃଆରୀ ୨୦୧୮ ସୁଦ୍ଧା ବଜାରରେ ଖଣ୍ଡେ ମଧ୍ୟ ପୁସ୍ତକ କିଣିବାକୁ ମିଳିଲା ନାହିଁ। ମୋତେ ବହୁସ୍ଥାନରୁ ଫୋନ୍ ଆସିଲା ଯେ ଆପଣ ଏହି ପୁସ୍ତକର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିବାକୁ ଧ୍ୟାନ ଦିଅନ୍ତୁ। ଠିକ୍ ଏହି ସମୟରେ ଚଳିତବର୍ଷ ୨୭ ଜାନୁଆରୀରେ ଭୁବନେଶ୍ୱରର ଉତ୍କଳ ମଣ୍ଡପରେ *The Tall Man Biju Patnaik* ପୁସ୍ତକଟି ଲୋକାର୍ପିତ ହେଲା। ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଏହି ଲୋକାର୍ପଣ ଉତ୍ସବରେ ପୌରୋହିତ୍ୟ କରିଥିଲେ। ଭାରତର ପୂର୍ବତନ ରାଷ୍ଟ୍ରପତି ପ୍ରଫେସର ପ୍ରଣବ ମୁଖାର୍ଜୀ, ପୂର୍ବତନ ସ୍ୱରାଷ୍ଟ୍ରମନ୍ତ୍ରୀ ବିଜେପିର ଆଗଧାଡ଼ିର ନେତା ଲାଲକୃଷ୍ଣ ଆଡ଼ଭାନି, *The Tall Man Biju Patnaik* ପୁସ୍ତକର ଲେଖକ ସୁନ୍ଦର ଗଣେଶନ୍ ପ୍ରମୁଖ ପୁସ୍ତକ ସମ୍ବନ୍ଧରେ ବକ୍ତବ୍ୟ ପ୍ରଦାନ କରିଥିଲେ। ମୁମ୍ବାଇ ମହାନଗରୀର ଯଶୋବନ୍ତରାଓ ଚଭନ ପ୍ରତିଷ୍ଠାନ ଅଡିଟୋରିୟମରେ ଚଳିତବର୍ଷ ୩ ଫେବୃଆରୀରେ ଏହି ପୁସ୍ତକର ଉପସ୍ଥାପନ ଉତ୍ସବ ଅନୁଷ୍ଠିତ ହୋଇଥିଲା। ଏହି ଉତ୍ସବରେ ବିଶିଷ୍ଟ ଅତିଥି ଭାବେ ଯୋଗଦେଇ ଓଡ଼ିଶା ଦକ୍ଷତା ବିକାଶ ସଂସ୍ଥାର ଅଧ୍ୟକ୍ଷ ଡକ୍ଟର ସୁବ୍ରତ ବାଗ୍‌ଚୀ ଦେଇଥିବା ଭାଷଣର ମର୍ମାନୁବାଦ ୧୭ ମାର୍ଚ୍ଚ ୨୦୧୮ରେ ଦୈନିକ 'ପ୍ରମେୟ'ରେ 'ଓଡ଼ିଶାକୁ ହୃଦୟ ଦେଇ ଭଲ ପାଉଥିଲେ ବିଜୁ ପଟ୍ଟନାୟକ' ଶୀର୍ଷକରେ ପ୍ରକାଶ ପାଇଥିଲା। ଏହାକୁ ନିମ୍ନରେ ସ୍ଥାନିତ କରୁଛି।

"ଆମ ସମୟର ମହାନ ଜନନାୟକ। ନବ ଓଡ଼ିଶାର ନିର୍ମାଣକାରୀ। ଭାରତୀୟ ଗଣତାନ୍ତ୍ରିକ ବ୍ୟବସ୍ଥାର ଏକ ସୁଦୃଢ଼ ସ୍ତମ୍ଭ। ସେ ହେଉଛନ୍ତି ଦି ଟଲ ମ୍ୟାନ୍, ବିଜୁ ପଟ୍ଟନାୟକ। ଶ୍ରଦ୍ଧାରେ ସମସ୍ତେ ଡାକନ୍ତି ତାଙ୍କୁ ବିଜୁବାବୁ।

Digitized by srujanika@gmail.com

ରାଜନୀତିଠାରୁ ଅନେକ ଊର୍ଦ୍ଧ୍ୱରେ ଥିଲା ତାଙ୍କର ମହାନ ଜୀବନାଦର୍ଶ। ତାଙ୍କ ପରଲୋକରେ ବିଶ୍ୱର ଏକ ନମ୍ବର ଖବରକାଗଜ 'ନ୍ୟୁୟର୍କ ଟାଇମ୍ସ' ତାଙ୍କୁ ଶ୍ରଦ୍ଧାଞ୍ଜଳି ଜଣାଇଥିଲା। ମାତ୍ର କମ୍ ଭାରତୀୟଙ୍କୁ ଶ୍ରଦ୍ଧାଞ୍ଜଳି ଦେଉଥିବା 'ନ୍ୟୁୟର୍କ ଟାଇମ୍ସ' ତାଙ୍କୁ ଓଡ଼ିଶାର ଦୁଇଥରର ମୁଖ୍ୟମନ୍ତ୍ରୀ କିମ୍ବା ଜଣେ କେନ୍ଦ୍ରମନ୍ତ୍ରୀ ଭାବରେ ନୁହେଁ, ବରଂ ଜଣେ ଦୁର୍ଦ୍ଧର୍ଷ ପାଇଲଟ ଏବଂ ଜଣେ ଦେଶଭକ୍ତ ଭାବେ ଦର୍ଶାଇଥିଲା।

ଏହି ମହାନାୟକଙ୍କୁ ପୂର୍ଣ୍ଣ ପୃଷ୍ଠାରେ ଶ୍ରଦ୍ଧାଞ୍ଜଳି ଜଣାଇ 'ଦି ଇକୋନୋମିଷ୍ଟ' ଲେଖିଥିଲା, ବ୍ରିଟିଶ୍ ଶାସିତ ଭାରତର ଇତିହାସକୁ ଜାଣିବାକୁ ବିଜୁ ପଟ୍ଟନାୟକଙ୍କ ଜୀବନକୁ ପଠନ କରାଯାଇପାରେ। ଭାରତର ରାଜନୀତିକୁ ସେ ଦେଇଥିଲେ ନୂଆ ରଙ୍ଗ।

ବାସ୍ତବିକ, ଦେଶର ଜରୁରୀ ପରିସ୍ଥିତି ହେଉ କିମ୍ବା ଯୁଦ୍ଧ, ସବୁଠି ଦେଶ ଭକ୍ତି ଆଉ ନିର୍ଭୀକତାର ପରିଚୟ ଦେଇଛନ୍ତି ବିଜୁ ପଟ୍ଟନାୟକ। ସ୍ୱାଧୀନତା ସଂଗ୍ରାମ ହେଉ ବା ସ୍ୱାଧୀନୋତର ଭାରତ, ତାଙ୍କ ଦେଶଭକ୍ତିର ପଟାନ୍ତର ନାହିଁ। ଦଶନ୍ଧି ଦଶନ୍ଧି ଧରି ସେ ଦେଶଭକ୍ତିର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି। ଜଣେ ବାଳକର ଜୀବନ ରକ୍ଷା ପାଇଁ ଉଛୁଳା କାଠଯୋଡ଼ିକୁ ଡେଇଁ ପଡ଼ିବାଠାରୁ ଆରମ୍ଭକରି ଦୁର୍ଦ୍ଧର୍ଷ ବିମାନ ଚାଳନା ପର୍ଯ୍ୟନ୍ତ, ସବୁକିଛି ତାଙ୍କ ସାହସିକ ଜୀବନର ଗୋଟିଏ ଗୋଟିଏ ଫର୍ଦ୍ଦ।

ସେ ରାଜନେତା ନଥିଲେ। ଥିଲେ ରାଷ୍ଟ୍ରନେତା। ରାଜନୀତିଠାରୁ ଊର୍ଦ୍ଧ୍ୱରେ ରହି ଦେଶ ଆଉ ସମାଜକୁ ସେ ନେତୃତ୍ୱ ଦେଇଥିଲେ। ସେ ଥିଲେ ଦୂରଦ୍ରଷ୍ଟା। ସେ ବିକାଶର ସ୍ୱପ୍ନ ଦେଖୁଥିଲେ ଆଉ, ସ୍ୱପ୍ନକୁ ସାକାର କରିବା ପାଇଁ ତାଙ୍କ ପାଖରେ ଥିଲା ପ୍ରବଳ ଇଚ୍ଛାଶକ୍ତି। ପ୍ରତିକୂଳ ସ୍ରୋତରେ ପହଁରିବାର ସାମର୍ଥ୍ୟ ଏବଂ ସାହସ, ସବୁକିଛିର ସେ ଅଧିକାରୀ ଥିଲେ।

ଓଡ଼ିଶାକୁ ହୃଦୟ ଦେଇ ଭଲପାଉଥିଲେ ବିଜୁ ପଟ୍ଟନାୟକ। ଓଡ଼ିଶାର ବିକାଶ ପାଇଁ ତାଙ୍କ ଆଖିରେ ଥିଲା ଅଜସ୍ର ସ୍ୱପ୍ନ। ସେ ନିଜେ ସ୍ୱପ୍ନ ଦେଖୁଥିଲେ ଆଉ ଓଡ଼ିଶାବାସୀଙ୍କୁ ସ୍ୱପ୍ନ ଦେଖାଉଥିଲେ। ସ୍ୱପ୍ନ ହିଁ ଆଗକୁ ବଢ଼ିବାର ମାର୍ଗ– ଏହା ଥିଲା ତାଙ୍କର ବିଶ୍ୱାସ। ଆଉ ଗୋଟିଏ କଥା ଉପରେ ସେ ଜୋର ଦେଉଥିଲେ। ସେ କହୁଥିଲେ, କୌଣସି ଜାତି ତା'ର ଅତୀତକୁ ଛାଡ଼ି ଭବିଷ୍ୟତକୁ ଦେଖିପାରିବ ନାହିଁ। ସେଥିପାଇଁ ଓଡ଼ିଶାବାସୀଙ୍କୁ ଗୌରବୋଜ୍ଜ୍ୱଳ ଅତୀତର ସ୍ମରଣ କରାଇଥିଲେ ବିଜୁ ପଟ୍ଟନାୟକ। ଏକ ବିକଶିତ

Digitized by srujanika@gmail.com

ଭବିଷ୍ୟତକୁ ଦେଖିପାରୁ ନଥିବା ଓଡ଼ିଆଙ୍କୁ ମନେପକାଇ ଦେଇଥିଲେ ଗଙ୍ଗାରୁ ଗୋଦାବରୀ ଏବଂ ଦରିଆପାରି ପର୍ଯ୍ୟନ୍ତ ବିସ୍ତୃତ କଳିଙ୍ଗ ସାମ୍ରାଜ୍ୟର କଥା। ପୂର୍ବଜଙ୍କ ବୀରତ୍ୱର ଗାଥା ଶୁଣାଇ ଓଡ଼ିଶାବାସୀଙ୍କୁ ଜାଗ୍ରତ କରିବାକୁ ଉଦ୍ୟମ କରିଥିଲେ। କଳିଙ୍ଗ ଶବ୍ଦ ସହ ଯୋଡ଼ି ହୋଇ ରହିଛି ପ୍ରାଚୀନ ଉତ୍କଳର ସମୃଦ୍ଧିର କାହାଣୀ। ସେଥିପାଇଁ ଏହି ଶବ୍ଦକୁ ସେ ବାଛି ନେଇଥିଲେ। ସେଥିପାଇଁ ରାଜ୍ୟରେ ଯାହା ପ୍ରତିଷ୍ଠା କଲେ, ସେ ସବୁ କଳିଙ୍ଗ ନାଁରେ ନାମିତ କରିଥିଲେ। ସେହି ସମୃଦ୍ଧ କଳିଙ୍ଗର ସ୍ୱପ୍ନ ଦେଖିଥିଲେ ବିଜୁ ପଟ୍ଟନାୟକ। ବିଜୁ ପଟ୍ଟନାୟକ ନଥିଲେ ବୋଧହୁଏ ଓଡ଼ିଶାର ଜନମାନସରୁ କଳିଙ୍ଗ ଶବ୍ଦ ହଜି ଯାଇଥାନ୍ତା।

ତାଙ୍କ ଦୃଷ୍ଟି ଥିଲା ସୁଦୂର ପ୍ରସାରୀ। ଯେଉଁଠି ଶଗଡ଼ର ଗୁଳା ପଡ଼ିଥିଲା, ସେଠି ସେ ଚାରିଥାକିଆ ରାଜପଥର ସ୍ୱପ୍ନ ଦେଖିଥିଲେ। ସେ ହିଁ ଓଡ଼ିଶାରେ ଆରମ୍ଭ କରିଥିଲେ ଶିଳ୍ପ ବିପ୍ଳବ। ଗୋଟିଏ ପରେ ଗୋଟିଏ ଶିଳ୍ପ ପ୍ରତିଷ୍ଠା କରିଥିଲେ। କେବଳ ରାଜ୍ୟର ଆର୍ଥିକ ବିକାଶ ଉପରେ ତାଙ୍କର ଦୃଷ୍ଟି ନଥିଲା, ଓଡ଼ିଶାର କଳା, ସାହିତ୍ୟ, ସଂସ୍କୃତି, ସ୍ଥାପତ୍ୟ ଏବଂ ବିଜ୍ଞାନର ପ୍ରଚାର ପ୍ରସାର ପାଇଁ ସେ ଆଦୌ ଭୁଲି ଯାଇ ନଥିଲେ।

ସେ ସାହସର ସହ କହନ୍ତି, ଓଡ଼ିଶା ଛୋଟ ହୋଇଯାଇଛି। ଆମେ ନାରୀ ପୁରୁଷମାନେ ସଂକୁଚିତ ହୋଇଯାଇଛୁ। ଆମର ବଡ଼ ସ୍ୱପ୍ନ ନାହିଁ। ଆମର ଛୋଟିଆ ସମସ୍ୟା, ଛୋଟିଆ ଷଡ଼ଯନ୍ତ୍ର, ଛୋଟିଆ ପସନ୍ଦ, ଅପସନ୍ଦ, ଛୋଟିଆ କ୍ଷତି ଆଉ ଛୋଟିଆ ଲାଭ। ଦୂରଦୃଷ୍ଟିସମ୍ପନ୍ନ ଆଉ ପ୍ରଚଣ୍ଡ ସ୍ୱାଭିମାନୀ ବିଜୁବାବୁ ଆମକୁ ହୀନମନ୍ୟତାରୁ ଊର୍ଦ୍ଧ୍ୱକୁ ଉଠିବାକୁ ଜାଗ୍ରତ କରୁଥିଲେ। ଏହା କେବଳ ଥିଲା ଓଡ଼ିଶା ପାଇଁ ତାଙ୍କ ସ୍ୱପ୍ନ ଓ ଭଲପାଇବା। ସେଥିପାଇଁ ସବୁବେଳେ କହନ୍ତି 'ମୋ ସ୍ୱପ୍ନର ଓଡ଼ିଶା'।

ଓଡ଼ିଶାବାସୀଙ୍କ ଭିତରେ ସେ ନିଜର ସ୍ୱପ୍ନ ବାଣ୍ଟୁଥିଲେ। ଏକବିଂଶ ଶତାବ୍ଦୀର ଓଡ଼ିଶା ପାଇଁ ସେ ସ୍ୱପ୍ନ ଦେଖୁଥିଲେ। ସେ କହୁଥିଲେ, "ଏକବିଂଶ ଶତାବ୍ଦୀରେ ମୁଁ ସେହି ଯୁବକ ଯୁବତୀମାନଙ୍କୁ ଦେଖିବାକୁ ଚାହୁଁଛି, ଯାହାଙ୍କ ପାଖରେ ରାଜ୍ୟ ପାଇଁ ଭଲପାଇବା ଥିବ। ସେମାନେ ଓଡ଼ିଶାକୁ ନେଇ ନିଜ ଭିତରେ ଗୌରବ ଅନୁଭବ କରୁଥିବେ। ତାଙ୍କ ଭିତରେ ଥିବ ପ୍ରଚଣ୍ଡ ଆତ୍ମବିଶ୍ୱାସ। ସେମାନେ କାହାର ଦୟାର ପାତ୍ର ହୋଇ ବଞ୍ଚିବେନି। ସେମାନଙ୍କ ବୌଦ୍ଧିକତା, ଚିନ୍ତନ ଏବଂ ଦକ୍ଷତାବଳରେ

Digitized by srujanika@gmail.com

ସେମାନେ ଇତିହାସକୁ ଦୋହରାଇବେ। ପୁଣି ଥରେ ନିର୍ମାଣ କରିବେ ସେହି ସମୃଦ୍ଧ କଳିଙ୍ଗ।"

ତାଙ୍କ ଭଳି ନେତୃତ୍ୱଙ୍କୁ ଆକଳନ କରିବା ସହଜ ନୁହେଁ। ସମୟର ଚୋରାବାଲିରେ ଏମିତି ଜଣେ ଉତ୍ତୁଙ୍ଗ ବ୍ୟକ୍ତିତ୍ୱଙ୍କ ପଦଚିହ୍ନ ଖୋଜିବା ଏକ ଅଜ୍ଞତା ମାତ୍ର। ସେ ଜଣେ ବିସ୍ମୟ। ଇତିହାସ ତାଙ୍କ ପାଖରେ ଅଟକି ଯାଇଛି। ସେ ପାଲଟି ଯାଇଛନ୍ତି ପ୍ରବାଦ।

ଏ ପୃଥିବୀରେ ଦୁଇ ପ୍ରକାର ବ୍ୟକ୍ତି ଦେଖିବାକୁ ମିଳନ୍ତି। ପ୍ରଥମ ପ୍ରକାର ହେଉଛନ୍ତି 'ପଥ ପ୍ରଦର୍ଶକ', ଯିଏ ସବୁବେଳେ ନୂଆନୂଆ ରାସ୍ତା ତିଆରି କରନ୍ତି। ଦ୍ୱିତୀୟ ପ୍ରକାର ହେଉଛନ୍ତି 'ଅନୁଗାମୀ'। ସେମାନଙ୍କ ସଂଖ୍ୟା ଅଧିକ ଏବଂ ଗୋଟିଏ ଗତିଶୀଳ ସମାଜ ପାଇଁ ଉଭୟଙ୍କର ଆବଶ୍ୟକତା ରହିଛି। କିନ୍ତୁ ରାସ୍ତା ନିର୍ମାଣ ଏକ କଠିନ କାର୍ଯ୍ୟ। ଏହା ହିଁ ନେତୃତ୍ୱ। ଆଉ ଏହା ହିଁ ଥିଲେ ବିଜୟାନନ୍ଦ ପଟ୍ଟନାୟକ। ଉତ୍ତରପିଢ଼ି ପାଇଁ ସେ ଛାଡ଼ି ଯାଇଛନ୍ତି ଅନେକ ସ୍ୱପ୍ନ, ଆଉ ସ୍ୱପ୍ନକୁ ସାକାର କରିବାର ଉତ୍ତରଦାୟିତ୍ୱ।"

ବିଜୁ ପଟ୍ଟନାୟକଙ୍କ ପୈତୃକ ବାସଭବନ 'ଆନନ୍ଦ ଭବନ'କୁ ତାଙ୍କର ଦୁଇପୁତ୍ର ଶ୍ରୀ ପ୍ରେମ ପଟ୍ଟନାୟକ ଓ ଶ୍ରୀ ନବୀନ ପଟ୍ଟନାୟକ ୧୩ ଜାନୁଆରୀ ୨୦୧୫ରେ ଓଡ଼ିଶା ନିର୍ମାଣ ପାଇଁ ବିଜୁବାବୁଙ୍କ ସ୍ୱପ୍ନ ପ୍ରତି ଏକ ଶ୍ରଦ୍ଧାଞ୍ଜଳି ଭାବରେ ଓଡ଼ିଶାବାସୀଙ୍କୁ ଉପହାର ସ୍ୱରୂପ ପ୍ରଦାନ କରିଥିଲେ। ଏହି ତିନିବର୍ଷ ମଧ୍ୟରେ ଆନନ୍ଦ ଭବନକୁ ଓଡ଼ିଶା ସରକାର ଏକ ସଂଗ୍ରହାଳୟ ଓ ଅଧ୍ୟୟନ କେନ୍ଦ୍ରରେ ପରିଣତ କରିଛନ୍ତି। ୧୭ ମାର୍ଚ୍ଚ ୨୦୧୮ରେ ଭାରତର ମାନ୍ୟବର ରାଷ୍ଟ୍ରପତି ଶ୍ରୀ ରାମନାଥ କୋବିନ୍ଦ ଆନନ୍ଦ ଭବନକୁ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଛନ୍ତି। ଏହି 'ଆନନ୍ଦ ଭବନ' ସମ୍ବନ୍ଧରେ ୧୭ ମାର୍ଚ୍ଚ ୨୦୧୮ 'ସମାଜ'ରେ ପ୍ରକାଶିତ 'ଆନନ୍ଦ ଭବନ ସଂଗ୍ରହାଳୟର ଆକର୍ଷଣ' ଶୀର୍ଷକ ଏକ ଆଲେଖ୍ୟକୁ ଏଠାରେ ଉଦ୍ଧାର କରୁଛି।

"ଦଶନ୍ଧି ଦଶନ୍ଧି କୋଟି କୋଟି ଲୋକଙ୍କ ହୃଦୟରେ ଅମର ରହିଥିବା ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ପୈତୃକ ବାସଭବନ - ଆନନ୍ଦ ଭବନ ଏଣିକି ଓଡ଼ିଆଙ୍କ ମାଇଁ ହେବ ପ୍ରମୁଖ ଦର୍ଶନୀୟ ସ୍ଥାନ। ଐତିହାସିକ ସହର କଟକର ତୁଳସୀପୁରସ୍ଥିତ ଆନନ୍ଦ ଭବନ ଏ ଜାତି ପାଇଁ ପ୍ରେରଣାର ଉତ୍ସ ହୋଇ ରହିବ।

Digitized by srujanika@gmail.com

କାରଣ ଆନନ୍ଦ ଭବନ ସଂଗ୍ରହାଳୟରେ ସାଇତା ହୋଇ ରହିଛି ଦୁର୍ଦ୍ଧର୍ଷ ଓ ଦୁଃସାହସୀ ବ୍ୟକ୍ତିତ୍ୱ, ଦୂରଦ୍ରଷ୍ଟା ରାଷ୍ଟ୍ରନୀତିଜ୍ଞ ଓ ଜନପ୍ରିୟ ନେତା ବିଜୁ ପଟ୍ଟନାୟକଙ୍କ ସ୍ମୃତିରାଜି।

ଆନନ୍ଦ ଭବନ ଦୁଇ ଭାଗରେ ବିଭକ୍ତ ହୋଇଛି। ସର୍ବସାଧାରଣଙ୍କ ପାଇଁ ତଳମହଲାରେ ସଂଗ୍ରହାଳୟ, ଉପର ମହଲାରେ ଅଧ୍ୟୟନ କେନ୍ଦ୍ର ବା ପାଠାଗାର ଇ-ଲାଇବ୍ରେରି ମଧ୍ୟ ରହିଛି।

ତଳମହଲାର ଚାରିଟି କୋଠରୀରେ ବିଜୁବାବୁଙ୍କ ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ, ତାଙ୍କ ଆସବାବପତ୍ର, ବିରଳ ଫଟୋଚିତ୍ର ଆଦି ସ୍ଥାନ ପାଇଛି। ପ୍ରଥମ କୋଠରୀରେ ଦେଖିବାକୁ ମିଳିବ ବିଜୁବାବୁଙ୍କ ଓଡ଼ିଆ ଓ ଇଂରାଜୀ ଦସ୍ତଖତ। ସେହି କୋଠରୀରେ ରହିଛି ତାଙ୍କର ଆର୍ମ ଚେୟାର, ସେ ବ୍ୟବହାର କରୁଥିବା ଟୋପି, ଆଲମାରୀ, ଷ୍ଟାମ୍ପ୍ ଷ୍ଟାଣ୍ଡ୍, ଗୋଟିଏ ଏୟାର୍ ଗନ୍ ଓ ଡ୍ରେସିଂଟେବୁଲ। ତାହାପାଖ ରୁମ୍‌ରେ ରହିଛି ଡାଇନିଂ ସେଟ୍, କଟ୍‌ଲେରୀ ଷ୍ଟାଣ୍ଡ୍, ଗୋଟିଏ କୋଣରେ ରହିଛି ଆଉ ଏକ ଆଲମାରୀ।

ପର କୋଠରୀରେ ବିଜୁବାବୁ ବ୍ୟବହାର କରୁଥିବା ଖଟ, ଆଲମାରୀ ଓ ବୁକ୍ ଟ୍ରେ। ସେ ବ୍ୟବହାର କରୁଥିବା ଇନ୍‌ହେଲର୍ ଓ ଅକ୍‌ସିଜେନ୍ ସିଲିଣ୍ଡର ରହିଛି। ଏହା ସହ ରହିଛି ବିଜୁବାବୁଙ୍କ ଫତେଇ, ବ୍ଲେଜର୍, ଏପରିକି ତାଙ୍କ ପୋଷାକର ମାପ ସମ୍ବଳିତ ଦର୍ଜି ଆଙ୍କିଥିବା ଚିତ୍ର। ଆଉ ଏକ ରୁମ୍ ବିଜୁବାବୁଙ୍କ ଡ୍ରଇଁ ରୁମ୍। ଏଥିରେ ରହିଛି ତାଙ୍କ ପରିବାରର ଏକ ପୁରୁଣା ସୋଫା ସେଟ୍, ପେନ୍‌ଷ୍ଟାଣ୍ଡ, ଚମଡ଼ା ବ୍ରିଫ୍‌କେସ୍।

ଏହିପରି ଭାବେ ବିଜୁବାବୁଙ୍କ ବିରଳ ସ୍ମୃତିରାଜିକୁ ଆନନ୍ଦ ଭବନ ସଂଗ୍ରହାଳୟରେ ସାଇତି ରଖିବାକୁ ଉଦ୍ୟମ କରାଯାଇଛି। ପ୍ରତ୍ୟେକ ରୁମ୍‌ରେ ତାଙ୍କର ବିରଳ ଫଟୋଗ୍ରାଫ୍‌ଗୁଡ଼ିକୁ ସଜାଇ ରଖାଯାଇଛି।

ଆନନ୍ଦ ଭବନର ବାରଣ୍ଡାରେ ମଧ୍ୟ ରହିଛି ବିଜୁବାବୁଙ୍କ ସ୍ମୃତିଚିହ୍ନ। ଡାହାଣ ପାଖରେ ନିକଟରେ ପ୍ରକାଶିତ ଜୀବନୀ ପୁସ୍ତକ ଟଲ୍ ମ୍ୟାନ୍‌ର ବିଭିନ୍ନ ପୃଷ୍ଠାକୁ ପ୍ରଦର୍ଶନ କରାଯାଇଛି। ବାମପାଖ ବାରଣ୍ଡାରେ ରହିଛି କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ ଓ ୟୁନେସ୍କୋ କଳିଙ୍ଗ ପୁରସ୍କାର ସମ୍ପର୍କିତ ବିଭିନ୍ନ ବିଷୟ ଓ ଫଟୋଚିତ୍ର।

ସେହିପରି ଆନନ୍ଦ ଭବନର ଆଉ ଏକ ଆକର୍ଷଣ ହେଉଛି ଅଧ୍ୟୟନ କେନ୍ଦ୍ର ବା ପାଠାଗାର। ଉପର ମହଲାର ଦୁଇଟି କୋଠରୀକୁ ପାଠାଗାରରେ ପରିଣତ କରାଯାଇଛି।

Digitized by srujanika@gmail.com

ବିଜୁବାବୁଙ୍କ ସମ୍ପର୍କିତ ପୁସ୍ତକ ସହ ଅନ୍ୟ ପୁସ୍ତକ ମଧ୍ୟ ଏଥିରେ ସ୍ଥାନ ପାଇଛି। ମାର୍ଚ୍ଚ ୧୭ ତାରିଖର ଆନନ୍ଦ ଭବନ ସଂଗ୍ରହାଳୟ ଓ ଅଧ୍ୟୟନ କେନ୍ଦ୍ରର ରାଷ୍ଟ୍ରପତି ଶୁଭ ଉଦ୍‌ଘାଟନ କରିବା ପରେ ଏହା ପାଲଟିବାକୁ ଯାଉଛି ହଜାର ବର୍ଷର ସାଂସ୍କୃତିକ ସହର କଟକର ଅନ୍ୟତମ ପ୍ରମୁଖ ଦର୍ଶନୀୟ ସ୍ଥାନ।"

୧୭ ମାର୍ଚ୍ଚ ୨୦୧୮ 'ସମାଜ'ରେ *'ଆନନ୍ଦ ଭବନ' ଗାଥା* ଓ ୨୩ ମାର୍ଚ୍ଚ ୨୦୧୮ 'ସମ୍ବାଦ'ରେ *ଜ୍ଞାନକୋଷର ସ୍ୱପ୍ନ ଓ ଆନନ୍ଦ ଭବନ ଜ୍ଞାନକେନ୍ଦ୍ର* ଶୀର୍ଷକରେ ଦୁଇଟି ପ୍ରବନ୍ଧ ଶ୍ରୀ ଅସିତ ମହାନ୍ତି ରଚନା କରିଛନ୍ତି, ଯାହାକି ତଥ୍ୟ ସମ୍ବଳିତ ଓ ସୁପାଠ୍ୟ ହୋଇଛି। ସେହି ପ୍ରବନ୍ଧକୁ ମଧ୍ୟ ଏହି ପୁସ୍ତକରେ ଉପସ୍ଥାପିତ କରୁଛି।

## 'ଆନନ୍ଦ ଭବନ' ଗାଥା

"ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ଜନ୍ମସ୍ଥାନ 'ଆନନ୍ଦ ଭବନ'କୁ ଓଡ଼ିଶା ସରକାରଙ୍କ ଦ୍ୱାରା ଏବେ ଏକ ସ୍ମାରକୀ ଭବନ ତଥା ସଂଗ୍ରହାଳୟରେ ପରିବର୍ତ୍ତିତ କରାଯାଇଛି। ତେବେ ଏହା କେବଳ ବିଜୁବାବୁଙ୍କ ଜନ୍ମସ୍ଥାନ ରୂପେ ନୁହେ- ଓଡ଼ିଆ ଭାଷା-ସାହିତ୍ୟର ଏକ ଉଲ୍ଲେଖନୀୟ ଅଧ୍ୟାୟ ତଥା ବିଜୁବାବୁଙ୍କ ଜୀବନଗଠନର ଏକ ସ୍ମାରକୀ ରୂପେ ମଧ୍ୟ ସ୍ମରଣୀୟ।

ଏହାର ନିର୍ମାତା ବିଜୁବାବୁଙ୍କ ବାପା ଲକ୍ଷ୍ମୀନାରାୟଣ ପଟ୍ଟନାୟକ। ବିଜୁବାବୁ ତାଙ୍କର ଦ୍ୱିତୀୟ ପୁତ୍ରସନ୍ତାନ। ଲକ୍ଷ୍ମୀନାରାୟଣ ଓ ଆଶାଲତାଙ୍କର ଚାରି ସନ୍ତାନ-ସନ୍ତତିଙ୍କ ମଧ୍ୟରୁ ଜର୍ଜ ପଟ୍ଟନାୟକ ଜ୍ୟେଷ୍ଠ। ତାଙ୍କର ପ୍ରକୃତ ନାମ 'ଶ୍ରଦ୍ଧାନନ୍ଦ'। ସେ ଓଡ଼ିଶାର ପ୍ରଥମ ଦନ୍ତ ଚିକିତ୍ସକ। ଓଡ଼ିଶା ଅଲିମ୍ପିକ୍ ଆସୋସିଏସନ୍ ଓ କଟକ ବାରବାଟୀ ଷ୍ଟାଡିୟମର ଅନ୍ୟତମ ପ୍ରାଣ-ପ୍ରତିଷ୍ଠାତା। ତାଙ୍କ ତଳକୁ ସୁକୃତି ପଟ୍ଟନାୟକ - ଏକମାତ୍ର ସନ୍ତତି। ସେତେବେଳେ ସେ ଏମ.ଏ. ପାସ୍ କରି ନାରୀଶିକ୍ଷା କ୍ଷେତ୍ରରେ ଏକ ଉଦାହରଣ ସୃଷ୍ଟି କରିଥିଲେ। ବିବାହ ପରେ ସେ ହେଲେ ସୁକୃତି ମହାପାତ୍ର। ତାଙ୍କ ତଳକୁ ବିଜୁ ପଟ୍ଟନାୟକ ଭାବରେ ସୁଖ୍ୟାତ 'ବିଜୟାନନ୍ଦ'। ତାଙ୍କ କଥା ଓ ଗାଥା ସର୍ବବିଦିତ। ଏ ଦୃଷ୍ଟିରୁ ବିଜୟାନନ୍ଦ ଲକ୍ଷ୍ମୀନାରାୟଣଙ୍କର ତୃତୀୟ ସନ୍ତାନ ତଥା ଦ୍ୱିତୀୟ ପୁତ୍ର। ସବା ତଳକୁ 'ସୃଜୟାନନ୍ଦ'। ସେ ଥିଲେ ଇଣ୍ଡିଆନ୍ ଏଆରଫୋର୍ସର ଭାରପ୍ରାପ୍ତ ଅଧିନାୟକ। ୧୯୩୬ ମସିହାରେ କଟକର ତତ୍‌କାଳୀନ ଆରକ୍ଷୀ ଅଧୀକ୍ଷକଙ୍କ ମଥାକୁ କ୍ରିକେଟ୍ ବ୍ୟାଟ୍‌ରେ ପିଟି କ୍ଷତାକ୍ତ କରିବାର ଦୁଃସାହସ ସେ ଦେଖାଇଥିଲେ।

Digitized by srujanika@gmail.com

ଲକ୍ଷ୍ମୀନାରାୟଣ ନିଜର ବାସଭବନକୁ 'ଆନନ୍ଦ ଭବନ' ନାଆଁ ଦେବା, ତାଙ୍କ ପୁତ୍ରସ୍ନେହର ପରିଚାୟକ। ଯେପରି ବିଜୁ ପଟ୍ଟନାୟକଙ୍କ ଭୁବନେଶ୍ୱର ବାସଭବନର ନାଆଁ ତାଙ୍କ କନିଷ୍ଠ ପୁତ୍ରଙ୍କ ନାଆଁ ଅନୁସାରେ 'ନବୀନ ନିବାସ', ସେମିତି ଲକ୍ଷ୍ମୀନାରାୟଣଙ୍କ କଟକ ବାସଭବନର ନାଆଁ ତାଙ୍କର ତିନିପୁତ୍ର 'ଶ୍ରଦ୍ଧାନନ୍ଦ', 'ବିଜୟାନନ୍ଦ' ଓ 'ସୃଜୟାନନ୍ଦ'ଙ୍କ ନାଆଁ ଅନୁସାରେ 'ଆନନ୍ଦ ଭବନ'।

'ଆନନ୍ଦ ଭବନ' କେବଳ ଏଇ ଚାରି ଭାଇ-ଭଉଣୀଙ୍କର ପିଲାଦିନର ଲୀଳାଖେଳାର ସ୍ଥଳୀ ନଥିଲା, ପିତା-ମାତାଙ୍କର ଗୁଣାଦର୍ଶ ମଧ୍ୟ ସେମାନଙ୍କ ଜୀବନକୁ ଅନେକବହୁତେ ପ୍ରଭାବିତ କରିଥିଲା।

ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କର ଜନ୍ମ ୧୮୭୫ ମସିହାରେ ଗଞ୍ଜାମ ଜିଲ୍ଲାର ଭଞ୍ଜନଗରଠାରେ। ସେତେବେଳେ ତାହା ଥିଲା ମାନ୍ଦ୍ରାଜ ପ୍ରେସିଡେନ୍‌ସୀ ଅନ୍ତର୍ଗତ ରସୁଲକୋଣ୍ଡା। ସେହି ରସୁଲକୋଣ୍ଡା (ଭଞ୍ଜନଗର)ର ନୂଆଗାଁରେ ତାଙ୍କର ଜନ୍ମ।

୧୮୯୬ ମସିହାରେ ମାନ୍ଦ୍ରାଜର ଖ୍ରୀଷ୍ଟିଆନ୍ କଲେଜରୁ ବି.ଏ. ପାସ୍ କରିଥିଲେ ସେ ଏବଂ ଆଇ.ସି.ଏସ୍. (ଇଣ୍ଡିଆନ୍ ସିଭିଲ ସର୍ଭିସ୍) ପାସ୍ କରି ଭାରତୀୟ ପ୍ରାଶାସନିକ ସେବାର ଜଣେ ପଦସ୍ଥ ଅଧିକାରୀ ହେବାପାଇଁ ଉଚ୍ଚାଭିଳାଷ ପୋଷଣ କରିଥିଲେ। କିନ୍ତୁ ଜଣେ ତେଲଗୁ ଭାଷାଭାଷୀ ସହପାଠୀଙ୍କ ଚକ୍ରାନ୍ତ ହେତୁ ସେ ବିଲାତ ଯିବାର ଅନୁମତି ପାଇପାରି ନଥିଲେ।

ସେତେବେଳେ ଗଞ୍ଜାମ ଅଞ୍ଚଳର ଓଡ଼ିଆ ଭାଷାଭାଷୀଙ୍କ ପ୍ରତି ତେଲଗୁ ଭାଷାଭାଷୀଙ୍କର ଅସୂୟା ଥିଲା ଚରମରେ। ଫଳରେ ଲକ୍ଷ୍ମୀନାରାୟଣ ସେଠାରୁ କଟକକୁ ଚାଲି ଆସିବାକୁ ଚାହିଁଥିଲେ। ମାତ୍ର ଘଟଣାଚକ୍ରରେ ସେ ଯାଇ ପହଞ୍ଚିଥିଲେ ବରଗଡ଼ରେ। ସେଠାରେ ଜଣେ କିରାଣୀ ଭାବରେ ସେ ଜୀବିକା ଆରମ୍ଭ କରିଥିଲେ। କିନ୍ତୁ ପରେ ନିଜର ଯୋଗ୍ୟତା ଓ ନିଷ୍ଠା ବଳରେ ଜଣେ ମୁନସିଫ୍ ହୋଇ ପାରିଥିଲେ। ତାଙ୍କର ନ୍ୟାୟନିଷ୍ଠା, ନିରପେକ୍ଷତା ଓ ସାଧୁତା ତତ୍‌କାଳୀନ ଇଂରେଜ ସରକାରର ଦୃଷ୍ଟି ଆକର୍ଷଣ କରିପାରିଥିଲା।

ଲକ୍ଷ୍ମୀନାରାୟଣ ଥିଲେ ଜଣେ ସମାଜସେବୀ ଓ ଜାତୀୟତାବାଦୀ। ସଫଳତାର ସହିତ ସରକାରୀ କର୍ତ୍ତବ୍ୟ ଓ ଦାୟିତ୍ୱ ନିର୍ବାହ କରିବା ସାଙ୍ଗକୁ ସେ ଅନେକ ସମାଜସେବା-

Digitized by srujanika@gmail.com

ମୂଳକ କାର୍ଯ୍ୟ କରୁଥିଲେ। ଯାଜପୁରରେ ବାର୍ ଲାଇବ୍ରେରୀ ପ୍ରତିଷ୍ଠା ଏବଂ ପୁରୀରେ କୁଷ୍ଠାଶ୍ରମ ସ୍ଥାପନ ସହିତ ପୁରୀ ରାମଚଣ୍ଡୀ ସାହିରେ ନିମ୍ନପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା ସେ ସବୁର ଅନ୍ତର୍ଭୁକ୍ତ। କିନ୍ତୁ ସରକାରୀ ଚାକିରିରେ ଥାଇ ସେ ଯେପରି କାୟ-ମନ-ବାକ୍ୟରେ ଉତ୍କଳ-ସମ୍ମିଳନୀ ସହିତ ଜଡ଼ିତ ଥିଲେ, ତାହା ତାଙ୍କର ଜାତିପ୍ରାଣତାର ପରିଚୟ ଦିଏ।

ବିଶିଷ୍ଟ କବି ବ୍ରଜନାଥ ରଥ ତାଙ୍କ ସଂପର୍କିତ ଏକ ଲେଖାରେ ଏ ସଂପର୍କରେ ଗୋଟିଏ ତାତ୍ପର୍ଯ୍ୟପୂର୍ଣ୍ଣ ଆଖ୍ୟାନିକାର ଅବତାରଣା କରିଛନ୍ତି। ସେଥିରେ ସେ କହିଛନ୍ତି, କୁଳବୃଦ୍ଧ ମଧୁସୂଦନ ଶେଷଜୀବନରେ ଋଣଗ୍ରସ୍ତ ହୋଇ ଘୋର ଆର୍ଥିକ ଅନଟନ ଭିତରେ କାଳାତିପାତ କରୁଥିବାବେଳେ ତାଙ୍କୁ ସେଦିନ ଆର୍ଥିକ ସହାୟତାର ହାତ ବଢ଼ାଇଥିଲେ ଲକ୍ଷ୍ମୀନାରାୟଣ। ବିନା ଲେଖାପଢ଼ାରେ ତାଙ୍କୁ ସେହି ଅର୍ଥ ଦେଉଥିବାରୁ, ତାହା ସେ ଆଉ ଫେରିପାଇବେ ନାହିଁ ବୋଲି ଜଣେ ବନ୍ଧୁ ଚେତାଇ ଦେବାରୁ ଲକ୍ଷ୍ମୀନାରାୟଣ ସେହି ବନ୍ଧୁଙ୍କୁ କହିଥିଲେ, "ଯେଉଁ ଲୋକ ଓଡ଼ିଆ ଜାତି ଓଡ଼ିଆ ଜାତି କହି, ନିଜେ ଆଜି ବୁଡ଼ିଯିବାକୁ ବସିଛି, ତା'ପାଇଁ ଏ କେଇଟା ଟଙ୍କା ଚାଲିଯିବ ବୋଲି ମୁଁ ଚିନ୍ତା କରିବି ? ଏହା ମୋ' ଜାତି ପ୍ରତି ବିଶ୍ୱାସଘାତକତା ହେବ। ଏ ଉତ୍କଳ ମୋ' ମା'। ମା'ର ସମ୍ମାନପାଇଁ ଯିଏ ସର୍ବସ୍ୱାନ୍ତ ହୋଇଛି, ତା'ପାଇଁ କିଛି କରିବାକୁ ମୁଁ ମୋର ନୈତିକ ଦାୟିତ୍ୱ ବୋଲି ମନେକରେ।''

ମନେହୁଏ, ତାଙ୍କର ଏହି ମନୋଭାବ ତାଙ୍କର ଦ୍ୱିତୀୟପୁତ୍ର ବିଜୁବାବୁଙ୍କୁ ପ୍ରଭାବିତ କରିଥିଲା। ବିଜୁବାବୁଙ୍କୁ ଓଡ଼ିଶା-ପ୍ରୀତିରେ ଉଦ୍‌ବୁଦ୍ଧ କରିଥିଲା।

ଲକ୍ଷ୍ମୀନାରାୟଣଙ୍କର କେବଳ ଯେ ଓଡ଼ିଆ-ପ୍ରୀତି ଥିଲା, ତାହା ନୁହେଁ। ସେ ଆଧୁନିକତାର ପୂଜାରୀ ଥିଲେ ହେଁ ଓଡ଼ିଶାର ଭାଷା, ସାହିତ୍ୟ, ସଂସ୍କୃତି ଓ ପରମ୍ପରା ପ୍ରତି ତାଙ୍କର ଥିଲା ଗଭୀର ଅନୁରାଗ। ପରମ୍ପରା ଓ ପୁରୋଦୃଷ୍ଟିର ସୁସ୍ଥ ସମନ୍ୱୟ ହିଁ ଅଗ୍ରଗତିର ମୂଳମନ୍ତ୍ର ବୋଲି ସେ ବିଶ୍ୱାସ କରୁଥିଲେ। ନିଜର ପିଲାମାନଙ୍କୁ ମଧ୍ୟ ସେହି ଚେତନାରେ ଉଦ୍‌ବୁଦ୍ଧ କରିବାକୁ ସେ ଉଦ୍ୟମ କରିଥିଲେ। ପରବର୍ତ୍ତୀ କାଳରେ ବିଜୁ ପଟ୍ଟନାୟକ ଯେ ନିଜକୁ ଓଡ଼ିଶା-ପ୍ରେମୀ ଓ କଳିଙ୍ଗ-ପୁତ୍ର ରୂପେ ପରିଚିତ କରିପାରିଥିଲେ, ତାହା ପଛରେ ମୁଖ୍ୟତଃ ଥିଲା ପିତା ଲକ୍ଷ୍ମୀନାରାୟଣଙ୍କର ପ୍ରେରଣା।

Digitized by srujanika@gmail.com

ବିଜୁ ପଟ୍ଟନାୟକଙ୍କୁ କେହି କେବେ ବିଶେଷ ଧାର୍ମିକ ଆଚାର ମଧ୍ୟରେ ଦେଖିନାହିଁ। ଲକ୍ଷ୍ୟ କଲେ ହୃଦ୍‌ବୋଧ ହୁଏ, ତାଙ୍କର ସେହି ଆଚରଣ ମଧ୍ୟରେ ବି ଥିଲା ପିତା ଲକ୍ଷ୍ମୀନାରାୟଣଙ୍କର ପ୍ରେରଣା। ନିଜର ଯୌବନ କାଳରେ ଲକ୍ଷ୍ମୀନାରାୟଣ 'ଉତ୍କଳ ସାହିତ୍ୟ'ର ସୁଯୋଗ୍ୟ ସଂପାଦକ ବାଗ୍ମୀ ବିଶ୍ୱନାଥ କରଙ୍କ ସଂସ୍ପର୍ଶରେ ଆସିଥିଲେ। ତାହା ଥିଲା ଓଡ଼ିଶାରେ (ବିଶେଷତଃ କଟକରେ) ବ୍ରାହ୍ମଧର୍ମ ପ୍ରସାରର ସମୟ। ବାଗ୍ମୀ ବିଶ୍ୱନାଥ କର, ଭକ୍ତକବି ମଧୁସୂଦନ ରାଓ ଓ ବ୍ୟାସକବି ଫକୀରମୋହନ ସେନାପତି ପ୍ରମୁଖ ସେହି 'ଏକେଶ୍ୱରବାଦ' (ଈଶ୍ୱର ଏକ ଏବଂ ଅଦ୍ୱିତୀୟ) ଭାବଧାରା ଦ୍ୱାରା ଅନୁପ୍ରାଣିତ ହୋଇଥିଲେ। ତାହା ଥିଲା ପୌତ୍ତଳିକତାବାଦ- ବିରୋଧୀ ଏକ ଧର୍ମଧାରା। ତାହାର ପ୍ରଭାବ ବିଜୁବାବୁଙ୍କ ପରବର୍ତ୍ତୀ ଜୀବନରେ ମଧ୍ୟ ଲକ୍ଷ୍ୟ କରାଯାଇଥିଲା।

କିନ୍ତୁ ଲକ୍ଷ୍ମୀନାରାୟଣଙ୍କ ସ୍ୱଭାବ-ଚରିତ୍ରର ଆଉ ଯେଉଁ ବିଶେଷତ୍ୱଟି ଗୁରୁତ୍ୱପୂର୍ଣ୍ଣ- ତାହା ହେଉଛି, ସେ ଥିଲେ କର୍ମଯୋଗୀ, ଶିକ୍ଷୋଦ୍ୟୋଗୀ। ୧୯୦୪ରେ ବଙ୍ଗ ସରକାର ଅଧୀନରେ ମୁନସିଫ ହେବାର ୨୬ବର୍ଷ ପରେ, ସେ ସେହି କର୍ମପ୍ରବଣତା ବଳରେ ସବ୍‌ଜଜ୍ ପଦକୁ ଉନ୍ନୀତ ହୋଇପାରିଥିଲେ ଏବଂ ସେହି ପଦରୁ ହିଁ ଅବସର ଗ୍ରହଣ କରିଥିଲେ। ସେହି ପଦରେ ଅଧିଷ୍ଠିତ ହେବାରେ ସେ ଥିଲେ ଦ୍ୱିତୀୟ ଓଡ଼ିଆ। ଏ କ୍ଷେତ୍ରରେ ପ୍ରଥମ ଓଡ଼ିଆ ଥିଲେ ଫକୀରମୋହନ ସେନାପତିଙ୍କ ଦ୍ୱିତୀୟା ପତ୍ନୀ କୃଷ୍ଣାକୁମାରୀଙ୍କ କନ୍ୟା ସରୋଜିନୀଙ୍କ ସ୍ୱାମୀ ଗଗନବିହାରୀ ଚୌଧୁରୀ। ଏହି 'କର୍ମଯୋଗ' ତାଙ୍କୁ ବ୍ରିଟିଶ୍ ସରକାରଙ୍କ ଦ୍ୱାରା ଏମ୍.ବି.ଇ. ଉପାଧିରେ ମଧ୍ୟ ଭୂଷିତ କରିଥିଲା। ବିଜୁ ପଟ୍ଟନାୟକ ମଧ୍ୟ ଏହି 'କର୍ମଯୋଗ' ଯୋଗୁଁ ଇଣ୍ଡୋନେସିଆର ଭୂମିପୁତ୍ର ହୋଇପାରିଥିବା କଥା ସର୍ବବିଦିତ।

ଲକ୍ଷ୍ମୀନାରାୟଣ କିପରି ଉଦ୍‌ଯୋଗୀ ଥିଲେ ଏବଂ ତାହା ତାଙ୍କ ଦ୍ୱିତୀୟ ପୁତ୍ର ବିଜୁ ପଟ୍ଟନାୟକଙ୍କୁ ଅନୁପ୍ରାଣିତ କରିଥିଲା, ତାହାର ତୁଳନାତ୍ମକ ଚିତ୍ର ମଧ୍ୟ ସୁଲଭ। ଓଡ଼ିଶାର ଶିକ୍ଷା ପ୍ରସାର କ୍ଷେତ୍ରରେ ମଧୁବାବୁଙ୍କ ପରେ ଲକ୍ଷ୍ମୀନାରାୟଣଙ୍କ ନାମ ନିଆଯାଇପାରେ। ସେତେବେଳେ ବଙ୍ଗ ଦେଶରେ ପ୍ରଫୁଲ୍ଲ ଚନ୍ଦ୍ର ରାୟ ପ୍ରତିଷ୍ଠା କରିଥିଲେ 'ବେଙ୍ଗଲ କେମିକାଲ୍‌ସ' ଏବଂ ତାହା ସମଗ୍ର ଦେଶରେ ସୁଖ୍ୟାତି ଲାଭ କରିଥିଲା। ତତ୍ତୁଲ୍ୟ ଏକ ଉଦ୍ୟୋଗ ଓଡ଼ିଶାରେ ପ୍ରତିଷ୍ଠା କରିବାକୁ ଚାହିଁଥିଲେ ଲକ୍ଷ୍ମୀନାରାୟଣ

Digitized by srujanika@gmail.com

ଏବଂ ଓଡ଼ିଆ ଯୁବକଙ୍କୁ ସେଠାରେ ପ୍ରଶିକ୍ଷଣ ଦେବାପାଇଁ ଶ୍ରୀ ରାୟଙ୍କୁ ଅନୁରୋଧ କରିଥିଲେ। କିନ୍ତୁ ଶ୍ରୀ ରାୟ ତାଙ୍କୁ ତାଚ୍ଛଲ୍ୟ କରି କହିଥିଲେ- ଓଡ଼ିଆ ଯୁବକଙ୍କ ମଥାରେ ସେ ସବୁ ଗଭୀର ଜ୍ଞାନ ପ୍ରବେଶ କରିପାରିବନି। ତାହା ଲକ୍ଷ୍ମୀନାରାୟଣଙ୍କୁ ଏପରି ଅପମାନିତ କରିଥିଲା ଯେ ଶେଷ ଜୀବନରେ ସେ ନିଜର ସମସ୍ତ ସଞ୍ଚିତ ଅର୍ଥ ବିନିଯୋଗରେ ଓଡ଼ିଶାରେ 'ଓଡ଼ିଶା କେମିକାଲ୍‌ସ' ପ୍ରତିଷ୍ଠା କରିଥିଲେ। କିନ୍ତୁ ମଧୁବାବୁଙ୍କ 'ଉତ୍କଳ ଟ୍ୟାନେରୀ' ପରି, ଶେଷରେ ତାହା ମଧ ଦେବାଳିଆ ହୋଇ ଯାଇଥିଲା। ସେହିପରି ଓଡ଼ିଶାରେ ଓଡ଼ିଆଙ୍କ ଦ୍ୱାରା ସ୍ଥାପିତ ପ୍ରଥମ ବ୍ୟାଙ୍କ୍ (ଓଡ଼ିଶା ବ୍ୟାଙ୍କ) ମଧ ସେ ସ୍ଥାପନ କରିଥିଲେ। କିନ୍ତୁ ତାହା ଅଳ୍ପଦିନ ପରେ ବନ୍ଦ ହୋଇଗଲା। ବିଜୁବାବୁ ନିଜ ଜୀବନ କାଳରେ ପ୍ରତିଷ୍ଠା କରିଥିବା 'କଳିଙ୍ଗ ଟ୍ୟୁବ୍‌ସ' ପରି ଶିଳ୍ପୋଦ୍ୟୋଗକୁ ଏହା ସହିତ ତୁଳନା କରାଯାଇପାରେ।

ଲକ୍ଷ୍ମୀନାରାୟଣ କିପରି ଅତି କୋମଳ ବୟସରୁ ନିଜର ପିଲାମାନଙ୍କୁ ଏହି 'କର୍ମଯୋଗ' ବା 'ଶିଳ୍ପୋଦ୍ୟୋଗ'ର ପ୍ରେରଣା ଦ୍ୱାରା ଦୀକ୍ଷିତ କରିଥିଲେ, ତାହାର ଗୋଟିଏ ଦୃଷ୍ଟାନ୍ତ ମିଳେ ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ ଓ ସାମ୍ବାଦିକ ଉଦୟନାଥ ଷଡ଼ଙ୍ଗୀଙ୍କର ଏକ ସ୍ମୃତିଚାରଣ ସମ୍ବଳିତ ଆଲେଖ୍ୟରୁ।

୧୯୩୦ ମସିହା ପରର କଥା। ଉଚ୍ଚ ସରକାରୀ ପଦବୀରୁ ଅବସର ଗ୍ରହଣ କରି ସାରିଥାଆନ୍ତି ଲକ୍ଷ୍ମୀନାରାୟଣ। ଭଞ୍ଜଭୂମିରେ ତାଙ୍କର ଜନ୍ମ। ତା' ସାଙ୍ଗକୁ ସେ ଥିଲେ 'ଉତ୍କଳ ସମ୍ମିଳନୀ'ର ଜଣେ ପ୍ରବକ୍ତା ଓ ଦେଶମିଶ୍ରଣ ଆନ୍ଦୋଳନର ଅନ୍ୟତମ କର୍ଣ୍ଣଧାର। ତେଣୁ ତାଙ୍କର ଓଡ଼ିଆ ଭାଷା-ସାହିତ୍ୟ ପ୍ରୀତି ଥାଏ। ନିରଳସ ସ୍ୱଭାବ ହେତୁ, ନିଜକୁ କର୍ମପ୍ରବଣ ରଖିବାକୁ ବାଗ୍ମୀ ବିଶ୍ୱନାଥ କରଙ୍କ ପରାମର୍ଶରେ ସେ ଗଢ଼ିଥାଆନ୍ତି 'ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ' ନାମରେ ଏକ ଅନୁଷ୍ଠାନ। ତାହାର ଉଦ୍ଦେଶ୍ୟ ଥାଏ ଓଡ଼ିଆ ସାହିତ୍ୟର ପୁଷ୍ଟିସାଧନ ଏବଂ ନବଯୁଗର ଲେଖକମାନଙ୍କୁ ପ୍ରୋତ୍ସାହନ। ସେ ନିଜେ ଥାଆନ୍ତି ତାହାର ସଂପାଦକ। ବିଶ୍ୱନାଥ କରଙ୍କ ପରାମର୍ଶରେ ପ୍ରକାଶ ପାଉଥିବା ପୁସ୍ତକଗୁଡ଼ିକର ପ୍ରୁଫ୍ ସଂଶୋଧନ ଦାୟିତ୍ୱ ଉଦୟନାଥଙ୍କ ଉପରେ ନ୍ୟସ୍ତ ଥାଏ।

ସେତେବେଳେ ଉଦୟନାଥ ଥାଆନ୍ତି ଆଉ ଗୋଟିଏ ପ୍ରେସ୍‌ର କର୍ମଚାରୀ। ତେଣୁ ସ୍ଥିର ହୋଇଥାଏ, ରବିବାର ଓ ଅନ୍ୟ ଛୁଟିଦିନମାନଙ୍କରେ ତୁଳସୀପୁରସ୍ଥିତ

Digitized by srujanika@gmail.com

ଲକ୍ଷ୍ମୀନାରାୟଣବାବୁଙ୍କ ବାସଭବନକୁ ଯାଇ ତାଙ୍କୁ କାର୍ଯ୍ୟ କରିବାକୁ ହେବ। ବହୁତ ଗୁଡ଼ିଏ ପ୍ରୁଫ୍ ଆସିଗଲେ ଅନ୍ୟଦିନରେ ଅପରାହ୍ନ ପାଞ୍ଚଟା ପରେ ଯାଇ କିଛିକିଛି ସମୟ କାମ ଚାଲିବ।

ଉଦୟନାଥ ଷଡ଼ଙ୍ଗୀ 'ସେଦିନର ସ୍ମୃତି'ରେ ଲେଖିଛନ୍ତି, "ମୁଁ ଯେଉଁ ସମୟରେ ଯାଏ, ଅଧିକାଂଶ ସମୟରେ ଦେଖେ, ଦୁଇଜଣ ସୌମ୍ୟଦର୍ଶନ କିଶୋର ହତା ଭିତରେ ଥିବା ବଡ଼ ବାମ୍ଫୀରୁ ପାଣି ଉଠାଇ ବଗିଚାରେ ଢାଳୁଛନ୍ତି। ଘରକୁ ଲାଗି ପ୍ରଶସ୍ତ ବଗିଚା। ନାନାପ୍ରକାର ଫୁଲ ଓ ଫଳଗଛରେ ପରିପୂର୍ଣ୍ଣ। ପିଲା ଦୁହେଁ ବଡ଼ ବାଲ୍‌ଟିରେ ପାଣି ଉଠାଇବାରେ ବ୍ୟସ୍ତ। ଚାରି-ପାଞ୍ଚ ଘଣ୍ଟା ଧରି ଅନବରତ କାର୍ଯ୍ୟ ଲାଗି ରହିଥାଏ। X X X ଗ୍ରୀଷ୍ମ ଋତୁରେ କଟକରେ ପ୍ରବଳ ତାତି। ଖଣ୍ଡିଏ ଖଣ୍ଡିଏ ହାଫ୍‌ପ୍ୟାଣ୍ଟ ଓ ଗଞ୍ଜି ପିନ୍ଧିଥିବା ପିଲା ଦୁଇଟିଙ୍କର ଅବିଶ୍ରାମ କଠିନ ପରିଶ୍ରମ। ଝାଳ ବୋହି ପିଠିପାଖ ଗଞ୍ଜି ଦେହରେ ମିଶି ଯାଇଥାଏ। ପିଲା ଦୁଇଟି ଯେ ଘରର ଚାକର ନୁହନ୍ତି, ତା' ଅନୁମାନ କରିବା ଖୁବ୍ ସହଜ।

X X X ପିଲା ଦୁଇଟିଙ୍କର ଅବସ୍ଥା ଦେଖି ମନରେ ଦୁଃଖ ହେଉଥାଏ। ଦିନେ ଆଉ ସମ୍ଭାଳି ପାରିଲି ନାହିଁ। ଡରି ଡରି ପଚାରିଦେଲି, 'ଏ କୋମଳ ପିଲା ଦୁଇଟିଙ୍କୁ ଏତେ କଷ୍ଟ ଦିଆଯାଉଛି କାହିଁକି ?'

ସଙ୍ଗେ ସଙ୍ଗେ ତୀକ୍ଷ୍ଣ ସ୍ୱରରେ ଉତ୍ତର ମିଳିଲା, 'କାମ କରିବେ ନାହିଁ ତ, ଖାଇବେ କାହିଁକି ? ରଜାରାଜୁଡ଼ା ଘରର ପିଲା ନୁହନ୍ତି ଯେ ଏଇଦିନୁ ଅଏସରେ ବଢ଼ି, କୁସଙ୍ଗରେ ପଡ଼ି, ମଦ ମାଇକିନିଆରେ ବୁଡ଼ି ଜୀବନ କଟାଇବେ ? ତାଗଦା କରିଦେଇଛି, କାମ ବନ୍ଦ ତ ଖାଇବା ବନ୍ଦ।"

ଏ ସଂପର୍କରେ ଅଧିକ ବିବରଣୀ ଦେଇ ଉଦୟନାଥ ଷଡ଼ଙ୍ଗୀ ଲେଖିଛନ୍ତି, "ଚୁପ୍ ହୋଇ ମୁହଁ ତଳକୁ କରି ବସି ରହିଲି। ଭାବୁଥାଏ, କି ନିଷ୍ଠୁର ହୃଦୟ !

ଅପେକ୍ଷାକୃତ ନରମଗଳାରେ ସେ ପୁଣି କହିଲେ- ଜାଣିଶୁଣି ତାଙ୍କୁ ଏ କାମ ଦେଇଚି ମୁଁ। କାମ କଲେ ଖାଇବେ। ଏଠାରେ ବସି ଗତିବିଧି ନିରୀକ୍ଷଣ କରୁଛି। ଏହି ସମୟରୁ ଶୃଙ୍ଖଳା ନଶିଖିଲେ, ଶାରୀରିକ ଶ୍ରମ ନକଲେ, ଭବିଷ୍ୟତ ଜୀବନ ମାଟି ହୋଇଯିବ ସିନା ! ସେ କ'ଣ ଆଉ ମଣିଷ ହେବେ ?"

Digitized by srujanika@gmail.com

ଲକ୍ଷ୍ମୀନାରାୟଣଙ୍କର ସେଦିନର ସେଇ ଦୁଇ ବାଘ-ପୁତ୍ରଙ୍କ ମଧ୍ୟରୁ ଜଣେ ପୂର୍ବତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ। 'ଆନନ୍ଦ ଭବନ' ସହିତ ଜଡ଼ିତ ରହିଛି ସେହି ପିତା-ପୁତ୍ରଙ୍କର ଅତୀତର ଅନେକ କଥା। ବିଜୟାନନ୍ଦ 'ବିଜୁ' ହୋଇ ଗଢ଼ିଉଠିବାର ଅନେକ ଗାଥା। ଏ ଦୃଷ୍ଟିରୁ 'ଆନନ୍ଦ ଭବନ'ରେ ବିଜୁ ପଟ୍ଟନାୟକଙ୍କ ସ୍ମୃତି-ସଂଗ୍ରହାଳୟ ଓ ଜ୍ଞାନକେନ୍ଦ୍ର ପ୍ରତିଷ୍ଠା ହେବା ନିଶ୍ଚିତ ଭାବରେ ତାତ୍ପର୍ଯ୍ୟପୂର୍ଣ୍ଣ।"

## ଜ୍ଞାନକୋଷର ସ୍ୱପ୍ନ ଓ ଆନନ୍ଦ ଭବନ ଜ୍ଞାନକେନ୍ଦ୍ର

"ଗତ (୨୦୧୮) ମାର୍ଚ୍ଚ ୧୭ ତାରିଖ ଦିନ ଭାରତର ମହାମହିମ ରାଷ୍ଟ୍ରପତି ଶ୍ରୀ ରାମନାଥ କୋବିନ୍ଦ କଟକ, ତୁଳସୀପୁରସ୍ଥିତ 'ଆନନ୍ଦଭବନ'କୁ ଏହି ସ୍ମୃତି-ସଂଗ୍ରହାଳୟ ଓ ଜ୍ଞାନକେନ୍ଦ୍ର ଭାବରେ ଜାତି ଉଦ୍ଦେଶ୍ୟରେ ସମର୍ପଣ କରିଛନ୍ତି। 'ଆନନ୍ଦଭବନ' ହେଉଛି ସେହିଘର, ଯେଉଁଠି ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କର ପିଲାଦିନ ବିତିଥିଲା। ତାହା ମଧ୍ୟ ତାଙ୍କ ଆଦ୍ୟ ଅଭିଳାଷୀ ଜୀବନର ବହୁ ଗୁରୁତ୍ୱପୂର୍ଣ୍ଣ ସଂଗ୍ରାମ ଓ ସ୍ୱପ୍ନର ସ୍ମାରକୀ। ସେ ଦୃଷ୍ଟିରୁ ଆନନ୍ଦଭବନକୁ ଏକ 'ସଂଗ୍ରହାଳୟ'ରେ ପରିବର୍ତ୍ତିତ କରି ସେଠାରେ ତାଙ୍କର ସ୍ମୃତି ଓ ସନ୍ତକଗୁଡ଼ିକୁ ସାଇତି ରଖିବା ଏକ ଅଭିନନ୍ଦନୀୟ ଉଦ୍ୟମ ନିଶ୍ଚୟ।

କିନ୍ତୁ ସଂଗ୍ରହାଳୟ ସହିତ ତାହାକୁ ଏକ 'ଜ୍ଞାନକେନ୍ଦ୍ର' (ଲର୍ଣ୍ଣିଂସେଣ୍ଟର) ଭାବରେ ପରିବର୍ତ୍ତିତ କରାଯିବାର କାରଣ କ'ଣ?

କାରଣ କ'ଣ ଏହା ଯେ ବିଜୁବାବୁଙ୍କ ପତ୍ନୀଙ୍କ ନାମ ଜ୍ଞାନଦେବୀ?

ନା। ଏହା ଜ୍ଞାନ ବା ଅଧ୍ୟୟନ କେନ୍ଦ୍ର ଏଇଥିପାଇଁ ବି ନୁହେ, ଯେ ବିଜୁବାବୁ ଥିଲେ ପୁସ୍ତକପ୍ରିୟ। ସେ ଓଡ଼ିଆ ବହି କେତେ ପଢୁଥିଲେ କି ନା, ସେ ତଥ୍ୟ ଆମର ଅଜ୍ଞାତ। କିନ୍ତୁ ଅନେକ ଇଂରାଜୀ ବହି ସେ ପଢୁଥିବାର ଦୃଷ୍ଟାନ୍ତ ଅଛି। ପ୍ରଥମ ପର୍ଯ୍ୟାୟରେ ଆନନ୍ଦଭବନର ଯେଉଁ ଚାରିଟି ବଖରାକୁ ସର୍ବସାଧାରଣଙ୍କର ପରିଦର୍ଶନ ନିମନ୍ତେ ପ୍ରସ୍ତୁତ କରାଯାଇଛି, ସେଥିମଧ୍ୟରୁ ଉପର ମହଲାର ଦୁଇଟି ବଖରାରେ ରହିଛି ଏହି ଜ୍ଞାନ ଓ ଅଧ୍ୟୟନ କେନ୍ଦ୍ର। ବିଜୁବାବୁଙ୍କ ବ୍ୟକ୍ତିଗତ ସଂଗ୍ରହର ପୁସ୍ତକଗୁଡ଼ିକ ଏଠାରେ ପ୍ରଦର୍ଶିତ ବା ଉପଲବ୍ଧ ହେବ କି ନା ତାହା ଏଯାଏ ଜଣାଯାଇନାହିଁ। କିନ୍ତୁ ତାଙ୍କର ଜୀବନୀ ସମ୍ବଳିତ ପୁସ୍ତକଗୁଡ଼ିକ ସହିତ ଅନ୍ୟାନ୍ୟ ପୁସ୍ତକ ଏହି ଜ୍ଞାନ ବା ଅଧ୍ୟୟନ କେନ୍ଦ୍ରର ଏକ ଆକର୍ଷଣ ହେବ ବୋଲି ସୂଚିତ ହୋଇଛି।

Digitized by srujanika@gmail.com

ଏହି ପରିପ୍ରେକ୍ଷୀରେ ଆମେ ପୁନଶ୍ଚ ସ୍ମରଣ କରିପାରିବା ଆନନ୍ଦଭବନର ଆଦିନାୟକ ତଥା ବିଜୁବାବୁଙ୍କର ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କୁ। ପ୍ରାଚୀନ ଗଞ୍ଜାମର ବରପୁତ୍ରମାନଙ୍କ ମଧ୍ୟରୁ ସେ ଜଣେ। ଖଲ୍ଲିକୋଟ, ଗଞ୍ଜାମରୁ ପ୍ରକାଶ ପାଉଥିବା 'ମର୍ଦ୍ଦରାଜ' ପତ୍ରିକାର ଏକ ବିଶେଷାଙ୍କରେ ସମ୍ଭବତଃ ପ୍ରଥମ ଥରପାଇଁ ତାଙ୍କ ଜୀବନର କିଛି ପ୍ରମୁଖ ଘଟଣା ଲିପିବଦ୍ଧ କରିଛନ୍ତି ବିଶିଷ୍ଟ କବି ତଥା ସାହିତ୍ୟାନୁରାଗୀ ବ୍ରଜନାଥ ରଥ। ସେହି ଲେଖାର ଆରମ୍ଭରେ ସେ କହିଛନ୍ତି, "ଲକ୍ଷ୍ମୀନାରାୟଣ ପଟ୍ଟନାୟକ ନାମରେ ଯେଉଁ ଜାତିପ୍ରାଣ ଉଦ୍‌ଯୋଗୀ ପୁରୁଷ ଊନବିଂଶ ଶତାବ୍ଦୀର ଅଷ୍ଟମ ଦଶକରେ ଓଡ଼ିଶାରେ ଜନ୍ମଗ୍ରହଣ କରି ଆମ ଭାଷା, ସାହିତ୍ୟ ଓ ଜାତୀୟତାକୁ ବହୁ ଭାବରେ ସମୃଦ୍ଧ ଓ ଉଦ୍‌ବୁଦ୍ଧ କରିଥିଲେ, ଆଜି ତାଙ୍କ ନାମ ଏକପ୍ରକାର ବିସ୍ମୃତ ଓ ଅନାଲୋଚିତ। ଅଥଚ ତାଙ୍କ ସୁଯୋଗ୍ୟ ପୁତ୍ର, କଳିଙ୍ଗଶ୍ରେଷ୍ଠ ସ୍ୱର୍ଗତ ବିଜୁ ପଟ୍ଟନାୟକ ଓ ପୌତ୍ର ନବୀନ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବରେ ସାରା ଦେଶରେ ସୁପରିଚିତ। x x x ଏପରିସ୍ଥଳେ ବିଜୁବାବୁଙ୍କ ପିତା ତଥା ନବୀନବାବୁଙ୍କ ପିତାମହ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଆଜି ଏକାନ୍ତ ଅପାଙ୍‌କ୍ତେୟ ଓ ବିସ୍ମୃତ। ଅଥଚ ଏକଦା ଥିଲେ ସେ ସ୍ୱପ୍ରତିଭାରେ ଭାସ୍ୱର ଓ ସ୍ୱକର୍ମରେ ଦୀପ୍ତିମନ୍ତ। ଓଡ଼ିଆ ଜାତିର ଉତ୍‌ଥାନ ଏବଂ ଓଡ଼ିଆ ସାହିତ୍ୟର ପ୍ରଚାର ତଥା ପ୍ରସାରରେ ତାଙ୍କର ନିଃସ୍ୱାର୍ଥପର, ଆପ୍ରାଣ ଉଦ୍ୟମ ଅବିସ୍ମରଣୀୟ। ଏହାକୁ ବିସ୍ମୃତ ହେବାର ଅର୍ଥ, ଆମକୁ କୃତଘ୍ନତାର ଦୋଷରେ ଦୋଷୀ ହେବାକୁ ପଡ଼ିବ।"

ଏହି ପରିପ୍ରେକ୍ଷୀରେ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଆଲୋଚ୍ୟ। ମହାମହିମ ରାଷ୍ଟ୍ରପତିଙ୍କଦ୍ୱାରା ଆନନ୍ଦଭବନ ସଂଗ୍ରହାଳୟ ଓ ଜ୍ଞାନକେନ୍ଦ୍ର ଲୋକାର୍ପିତ ହେବା ଅବସରରେ ଯେଉଁସବୁ ଲେଖା ବିଭିନ୍ନ ସମ୍ବାଦପତ୍ରର ସ୍ୱତନ୍ତ୍ର ପୃଷ୍ଠାରେ ପ୍ରକାଶପାଇଛି, ସେଥିରୁ ଗୋଟିଏ ଲେଖାରେ ଜଣେ ସ୍ତମ୍ଭକାର ଲେଖିଛନ୍ତି, "ପାଖ ବାରବାଟୀ ଦୁର୍ଗର ଉଚ୍ଚତା ଓ ମହାନଦୀର ବିଶାଳତାଠାରୁ ବିଜୁବାବୁ ବେଶ୍ କିଛି ଶିଖିଥିଲେ।" ଏଥିରୁ ମନେହୁଏ, ସତେଯେମିତି ବିଜୁବାବୁଙ୍କ ପିଲାଦିନ ଓ ପରବର୍ତ୍ତୀ ଜୀବନ ଉପରେ ମୁଖ୍ୟତଃ ଏହି ଦୁର୍ଗ ଓ ନଦୀର ହିଁ ପ୍ରେରଣା ଥିଲା। ଅର୍ଥାତ୍, ଏସବୁକୁ ଦେଖି ଓ ଶିଖି, ଅନ୍ତଃପ୍ରେରଣା ବଳରେ ହିଁ ବିଜୁବାବୁ ବଡ଼ ହୋଇଥିଲେ। କିନ୍ତୁ ପ୍ରକୃତରେ ବିଜୁବାବୁଙ୍କ ଉପରେ ସବୁଠୁ ବେଶି ଯାହାଙ୍କର ପ୍ରଭାବ ଥିଲା ଏବଂ ଯାହାଙ୍କର କର୍ତ୍ତୃତ୍ୱ ଓ କଠୋର

Digitized by srujanika@gmail.com

ଅନୁଶାସନ ବିଜୁବାବୁଙ୍କ ସମେତ ସେହି ଚାରି ପୁତ୍ର-କନ୍ୟାଙ୍କୁ ଗଢ଼ିଥିଲା, ସେ ହେଉଛନ୍ତି ଲକ୍ଷ୍ମୀନାରାୟଣ। ବିଜୁବାବୁଙ୍କ ଭିତରର ଜାତିପ୍ରାଣତା, କଳିଙ୍ଗ (ବା ଓଡ଼ିଶା)ପ୍ରୀତି, ଶିଳ୍ପାଭିଳାଷ, କର୍ମନିଷ୍ଠା ଓ ପୌତ୍ତଳିକତା-ବିରୋଧୀ ମନୋଭାବ ଆଦି କିପରି ପିତା ଲକ୍ଷ୍ମୀନାରାୟଣଙ୍କଦ୍ୱାରା ଅନୁପ୍ରେରିତ ହୋଇଥିଲା- ତାହା ଏହି ଲେଖାର ପ୍ରଥମ ଭାଗରେ ଦର୍ଶାଯାଇଛି।

'ଆନନ୍ଦ ଭବନର ସ୍ମୃତି' ଶୀର୍ଷକ ଆଉ ଗୋଟିଏ ଲେଖାରେ ପାବକ କାନୁନ୍‌ଗୋ ବିଜୁବାବୁଙ୍କର ଏକ ଉକ୍ତି ଉଦ୍ଧାର କରିଛନ୍ତି। ସେଥିରେ ବିଜୁବାବୁ କହିଛନ୍ତି, "୧୯୪୫ରେ ଜେଲ୍‌ରୁ ଖଲାସ ହେବା ପରେ କଟକରେ ଥିବା ବାପାଙ୍କ ଘରେ ରହିଲି। ସେତେବେଳେ ପିଲାଙ୍କପାଇଁ କ୍ଷୀର ଟିକିଏ କିଣିବାକୁ ମୋ ପାଖରେ ଦୁଇ ଟଙ୍କା ମଧ୍ୟ ନଥିଲା। ସିଗାରେଟ ଖାଇବା ବି ଛାଡ଼ିଦେଲି।"

୧୯୧୬ ମସିହା ମାର୍ଚ୍ଚ ମାସ ପାଞ୍ଚ ତାରିଖରେ ବିଜୁବାବୁଙ୍କର ଜନ୍ମ। ଏଣୁ ଏହା ସୂଚାଏ ଯେ ୨୯ ବର୍ଷ ବୟସ ପର୍ଯ୍ୟନ୍ତ ତାଙ୍କର ଜୀବନ ଥିଲା ସଂଘର୍ଷ ସଂକୁଳ। ସେତେବେଳକୁ 'ଆନନ୍ଦଭବନ' ନାମକ 'ବାପାଙ୍କ ଘର'ଟି ବ୍ୟତୀତ ତାଙ୍କର ସେମିତି କିଛି ସମ୍ବଳ ନଥିଲା।

ତାହାର ପ୍ରାୟ ଚାରିବର୍ଷ ପୂର୍ବେ, ୧୯୪୧ ମସିହା ଫେବୃଆରୀ ମାସ ୧୭ ତାରିଖରେ ବିୟୋଗ ଘଟିଥିଲା ତାଙ୍କ ପିତା ଲକ୍ଷ୍ମୀନାରାୟଣଙ୍କର। କିନ୍ତୁ ୧୯୩୦ରେ 'ମୁନସିଫ୍' ପରି ସରକାରୀ ପଦରୁ ଅବସରଗ୍ରହଣ କରିବା ସତ୍ତ୍ୱେ ଏବଂ ପାରଳାଖେମଣ୍ଡି ଓ ମଞ୍ଜୁଷାରେ ଦେୱାନ୍ ଭାବେ କାମ କରିବା ସତ୍ତ୍ୱେ, ଲକ୍ଷ୍ମୀ ନାରାୟଣଙ୍କ ମୃତ୍ୟୁ ବେଳକୁ ତାଙ୍କ ପରିବାର କାହିଁକି ସଂପନ୍ନ ନଥିଲା, ତାହା ଏକ ଭିନ୍ନ ପ୍ରସଙ୍ଗ। ସୂଚନା ଅନୁସାରେ, ଶେଷ ଜୀବନରେ କଲିକତାର 'ବେଙ୍ଗଲ କେମିକାଲ୍‌ସ' ପରି, ଓଡ଼ିଶାରେ 'ଓଡ଼ିଶା କେମିକାଲ୍‌ସ' ନାମରେ ଏକ ଶିଳ୍ପସଂସ୍ଥା ପ୍ରତିଷ୍ଠା କରି ସେ ସମସ୍ତ ସଂଚିତ ଅର୍ଥ ଖଟାଇ ଶେଷରେ ସର୍ବସ୍ୱାନ୍ତ ହୋଇଯାଇଥିଲେ।

କିନ୍ତୁ ନିଜ ଜୀବନରେ କେବଳ ଶିଳ୍ପପାଇଁ ନୁହେଁ, ଓଡ଼ିଆ ଭାଷା-ସାହିତ୍ୟପାଇଁ ମଧ୍ୟ ବେଶ୍ କିଛି ମହତ୍ତ୍ୱପୂର୍ଣ୍ଣ ସ୍ୱପ୍ନ ଦେଖିଥିଲେ ଲକ୍ଷ୍ମୀନାରାୟଣ। ସରକାରୀ ଚାକିରି ସତ୍ତ୍ୱେ, ୧୯୨୦ ପରେ ସେ ସକ୍ରିୟ ଭାବରେ ଯୋଗ ଦେଇଥିଲେ 'ଉତ୍କଳ ସମ୍ମିଳନୀ'ର

Digitized by srujanika@gmail.com

ଆନ୍ଦୋଳନରେ। ସୂଚନା ଅନୁସାରେ, 'ସହକାର' ପତ୍ରିକାର ପଞ୍ଚଦଶ ବର୍ଷ, ଅଷ୍ଟମ ସଂଖ୍ୟାରେ ପ୍ରକାଶିତ 'ଓଡ଼ିଶାର ଦାବି ଓ ଦେଶ ମିଶ୍ରଣ ଆନ୍ଦୋଳନର ଇତିହାସ' ଲେଖାରେ ତାଙ୍କର ନାମ ଓ ଫଟୋଚିତ୍ର ସ୍ଥାନ ପାଇଥିଲା। ସେ ମଧ୍ୟ ଥିଲେ 'ସହକାର' ପତ୍ରିକା ଓ ଦୈନିକ 'ଆଶା'ର ପୃଷ୍ଠପୋଷକ। ସେତେବେଳେ 'ଆଶା'ରେ ମଧ୍ୟ ତାଙ୍କର କେତେକ କ୍ଷୁଦ୍ରରଚନା ପ୍ରକାଶ ପାଇଥିଲା।

କିନ୍ତୁ ଓଡ଼ିଆ ଭାଷା-ସାହିତ୍ୟର ଜଣେ ପ୍ରଚାରକ ଭାବେ ତାଙ୍କର ସଚେତନ ଓ ସର୍ଜନଶୀଳ ପଦକ୍ଷେପ ବିଶେଷ ମହତ୍ତ୍ୱପୂର୍ଣ୍ଣ। ସେ ଆବାଲ୍ୟ ଥିଲେ ମାତୃଭାଷା ଓଡ଼ିଆର ଅନୁରାଗୀ। ଇଂରାଜୀ ଭାଷାରେ ଦକ୍ଷତା ସତ୍ତ୍ୱେ, ଜନ୍ମସୂତ୍ରରେ ଭଞ୍ଜଭୂମି ସହିତ ଯୋଡ଼ିହୋଇଥିଲେ ସେ ଏବଂ 'ଉତ୍କଳ ସମ୍ମିଳନୀ'ର କାର୍ଯ୍ୟକଳାପ ମୁଖ୍ୟତଃ ଭଞ୍ଜଭୂମି-କେନ୍ଦ୍ରିତ ହେବା ପରେ, ସେ ସକ୍ରିୟ ଭାବେ ସେଥିରେ ସଂପୃକ୍ତ ଥିଲେ। ଏହା ଫଳରେ, ଅବସର ଗ୍ରହଣ କରିବା ପୂର୍ବରୁ ୧୯୨୮ରେ ସେ ପ୍ରତିଷ୍ଠା କରିଥିଲେ 'ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ' ନାମରେ ଏକ ସ୍ୱତନ୍ତ୍ର ଅନୁଷ୍ଠାନ। ସେ ନିଜେ ଥିଲେ ତାହାର ସଂପାଦକ। ତାହାର କାର୍ଯ୍ୟକ୍ଷେତ୍ର ଥିଲା 'ଆନନ୍ଦ ଭବନ'। ରେଭେନ୍‌ସା କଲେଜର ବହୁ ଅଧ୍ୟାପକଙ୍କୁ ସାମିଲ କରି ସ୍ୱଳ୍ପକାଳ ମଧ୍ୟରେ ସେ ସେଠାରୁ ପ୍ରକାଶ କରିଥିଲେ ଅନେକ ଉପାଦେୟ ଓଡ଼ିଆ ପୁସ୍ତକ।

ସେତେବେଳେ ସେହି ସାହିତ୍ୟାନୁଷ୍ଠାନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସଂପର୍କରେ ସେ ଯାହା ପ୍ରକାଶ କରିଥିଲେ, ତାହା ହେଉଛି- (କ) ପ୍ରକାଶଯୋଗ୍ୟ ନୂତନ ଓ ପୁରାତନ ଓଡ଼ିଆ ପୁସ୍ତକର ସଂଗ୍ରହ ଓ ମୁଦ୍ରଣ, (ଖ) ଅନ୍ୟାନ୍ୟ ଭାଷାର ଉପଯୋଗୀ ଗ୍ରନ୍ଥମାନଙ୍କର ଅନୁବାଦ, (ଗ) ପ୍ରାଚୀନ କୀର୍ତ୍ତିମାନଙ୍କର ତଥ୍ୟ ଅନ୍ୱେଷଣ, (ଘ) ଇତିହାସ ସଂଗ୍ରହ, (ଙ) ବୀରଜୀବନୀ ପ୍ରଚାର ଏବଂ (ଚ) ବିଜ୍ଞାନ, ନୀତି ଓ ଧର୍ମ ସମ୍ବନ୍ଧୀୟ ପୁସ୍ତକର ପ୍ରଚାର । ଏହି ଯୋଜନାର ସଫଳତା ନିମନ୍ତେ ସେ ଯେଉଁ ଉପାୟ ଅବଲମ୍ବନ କରିଥିଲେ, ତାହା ହେଉଛି- ଏଥିରେ ସାହିତ୍ୟାନୁରାଗୀ ବ୍ୟକ୍ତିମାନେ ଚାନ୍ଦା ଦେଇ ସଭ୍ୟହେବେ, ଏବଂ ନିଜେ ଚାନ୍ଦା ଦେବାରେ ଅସମର୍ଥ ହେଲେ ଅନ୍ୟଦ୍ୱାରା ଚାନ୍ଦା ଦିଆଇବେ। ସେମାନେ ନିଜେ ନୂତନ ପୁସ୍ତକ ଲେଖିବେ କିମ୍ବା ଅନ୍ୟ ଭାଷାର ଭଲ ପୁସ୍ତକ ଅନୁବାଦ କରିବେ। ଅପ୍ରକାଶିତ ପୁରାତନ ପୁସ୍ତକ ସଂଗ୍ରହ କରି, ସଂଘକୁ ସେହି ପାଣ୍ଡୁଲିପି ପ୍ରଦାନ କରିବେ। ସଂଘ ପ୍ରକାଶ କରୁଥିବା ପୁସ୍ତକ ଏବଂ ଅନ୍ୟ ଲେଖକ,

Digitized by srujanika@gmail.com

ଲେଖିକାଙ୍କ ଉପାଦେୟ ପୁସ୍ତକର ପ୍ରଚାର ଓ ବିକ୍ରୟ କରିବେ। ଲୋକଙ୍କ ମଧ୍ୟରେ ପଠନ ଇଚ୍ଛା ବୃଦ୍ଧି କରିବା ସହିତ ସଂପନ୍ନ ବ୍ୟକ୍ତିମାନଙ୍କ ଗୃହରେ ଏବଂ ଉନ୍ନତ ଗ୍ରାମରେ ପୁସ୍ତକାଗାର ମାନ ସ୍ଥାପନ କରାଇବେ। ଏସବୁ ବ୍ୟତୀତ ଅନ୍ୟ ଯେକୌଣସି ସତ୍ ଉପାୟଦ୍ୱାରା ଓଡ଼ିଆ ସାହିତ୍ୟର ପ୍ରଚାରପ୍ରସାର କରିବେ।

ଏହି ଦୃଷ୍ଟିରୁ ବିଚାର କଲେ, 'ଆନନ୍ଦଭବନ'ଠାରେ ଲକ୍ଷ୍ମୀନାରାୟଣଙ୍କ ଚର୍ଚ୍ଚିତ ପୁତ୍ର ତଥା ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ସ୍ମୃତିରେ ସଂଗ୍ରହାଳୟ ପ୍ରତିଷ୍ଠା ସହିତ ଏକ 'ଜ୍ଞାନକେନ୍ଦ୍ର' ପ୍ରତିଷ୍ଠା କରାଯିବାର ଗୁରୁତ୍ୱପୂର୍ଣ୍ଣ ତାତ୍ପର୍ଯ୍ୟ ରହିଛି। ଅନ୍ୟ ଏକ ଅଧିକ ଗୁରୁତ୍ୱପୂର୍ଣ୍ଣ ସ୍ମୃତି ମଧ୍ୟ ଏହି 'ଜ୍ଞାନକେନ୍ଦ୍ର' ସହିତ ଜଡ଼ିତ ଅଛି। ସେଇଟି ହେଉଛି- 'ଓଡ଼ିଆ ଜ୍ଞାନକୋଷ'। ସ୍ୱଳ୍ପଜୀବୀ 'ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ'ର ଇତିହାସ ଅନୁଧ୍ୟାନ କଲେ ଜଣାଯାଏ ଯେ ସେତେବେଳେ ଓଡ଼ିଶାରେ ଅଣବ୍ୟବସାୟିକ ସାହିତ୍ୟାନୁଷ୍ଠାନ ଖୁବ୍ କମ୍ ଥିଲା। ଆର୍ତ୍ତବଲ୍ଲଭ ମହାନ୍ତିଙ୍କ 'ପ୍ରାଚୀ ସମିତି' (୧୯୨୪) ସେସବୁ ମଧ୍ୟରେ ପ୍ରମୁଖ ଥିଲା ଏବଂ ତାହା ମୁଖ୍ୟତଃ ପ୍ରାଚୀନ ସାହିତ୍ୟକୈନ୍ଦ୍ରିକ କାର୍ଯ୍ୟ କରୁଥିଲା। ତେଣୁ ସେତେବେଳେ ଲକ୍ଷ୍ମୀନାରାୟଣଙ୍କ ଅନୁଷ୍ଠାନ ହିଁ ଓଡ଼ିଆ ଭାଷାରେ ଜୀବନୀ, ଅନୁବାଦ ଓ ବିଜ୍ଞାନ ବିଷୟକ ପୁସ୍ତକ ରଚନାକୁ ପ୍ରୋତ୍ସାହିତ କରିଥିଲା। ବାଳ ଗଙ୍ଗାଧର ତିଳକଙ୍କ 'ଶ୍ରୀମଦ୍ ଭଗବଦ୍ ଗୀତା ରହସ୍ୟ', ମହର୍ଷି ଦୟାନନ୍ଦ ସରସ୍ୱତୀଙ୍କ 'ସତ୍ୟାର୍ଥ ପ୍ରକାଶ' ଓ 'ସାଇନ୍ ଅଫ୍ କ୍ରସ୍'ର ଅନୁବାଦ 'ନୈବେଦ୍ୟ' ଆଦି ସେଥିମଧ୍ୟରୁ କେତୋଟି। ସେତେବେଳେ 'ଗୀତା ରହସ୍ୟ'ର ଅନୁବାଦ କରିଥିଲେ 'ପ୍ରାଚୀନ ଉତ୍କଳ'ର କୃତୀ ପ୍ରଣେତା ଜଗବନ୍ଧୁ ସିଂହ। କିନ୍ତୁ 'ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ'ର ପ୍ରକାଶନ ମଧ୍ୟରେ ପ୍ରମୁଖତା ପାଇଥିଲା ଜୀବନୀ ପୁସ୍ତକ। ବ୍ୟାସକବି ଫକୀରମୋହନ ସେନାପତି, ଭକ୍ତକବି ମଧୁସୂଦନ ରାଓ, ମହାରାଜା ଶ୍ରୀରାମଚନ୍ଦ୍ରଦେବ, ସ୍ୱାମୀ ବିବେକାନନ୍ଦ, ମହର୍ଷି ଦୟାନନ୍ଦ, ବୀରକେଶରୀ ଶିବାଜୀ, ମହାଦେବ ଗୋବିନ୍ଦ ରାଣାଡ଼େ, ମାର୍ଟିନ୍ ଲୁଥର କିଙ୍ଗ୍, ମହାପୁରୁଷ ମହମ୍ମଦ, ମହାପୁରୁଷ ପିଟର ଇତ୍ୟାଦି ପୁସ୍ତକ ସେସବୁ ମଧ୍ୟରେ ପ୍ରମୁଖ।

ଆମ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବା ପରେ ଏବେ ଏହାକୁ 'ଜ୍ଞାନର ଭାଷା' କରିବାପାଇଁ ଅନେକେ ନିଜର ଉଚ୍ଚାରଣରେ କହୁଛନ୍ତି। କିନ୍ତୁ ଜଣେ ଦୂରଦ୍ରଷ୍ଟା ଭାବରେ ଲକ୍ଷ୍ମୀନାରାୟଣ ଓଡ଼ିଆକୁ ଜ୍ଞାନର ଭାଷା କରିବାପାଇଁ ସେ ସମୟରେ ଗଠନମୂଳକ

Digitized by srujanika@gmail.com

ପ୍ରୟାସ ନିଜ ଆଚରଣରେ କରିଥିଲେ। ରେଭେନ୍‌ସା କଲେଜର ବିଦ୍ୱାନ ଅଧ୍ୟାପକମାନଙ୍କୁ ନେଇ ଏକ 'ଓଡ଼ିଆ ଜ୍ଞାନକୋଷ' ସଂକଳନ ନିମନ୍ତେ ଉଦ୍ୟମ ଆରମ୍ଭ କରିଥିଲେ। ତାହାର କାର୍ଯ୍ୟକେନ୍ଦ୍ର ରେଭେନ୍‌ସା କଲେଜର କନିକା ଲାଇବ୍ରେରୀ ଥିଲା ବୋଲି ତାଙ୍କର ଏକଦା ସହଯୋଗୀ ଅଲେଖ ପ୍ରସାଦ ଦାସ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି। କିନ୍ତୁ ୬୬ ବର୍ଷ ବୟସରେ ତାଙ୍କର ବିୟୋଗ ଫଳରେ ସେହି ସ୍ୱପ୍ନ ଓ ଉଦ୍ୟମ ସଫଳ ହୋଇପାରିନଥିଲା।

ଏବେ ତାଙ୍କ ପୁତ୍ର ବିଜୁ ପଟ୍ଟନାୟକଙ୍କ ସ୍ମୃତିରେ ତୁଳସୀପୁର ହୁଏତ 'ଆନନ୍ଦ ଭବନ'କୁ ଏକ ସ୍ମୃତିସଂଗ୍ରହାଳୟ ଓ ଜ୍ଞାନକେନ୍ଦ୍ର ଭାବରେ ବିକଶିତ କରାଯାଉଛି। ଏଣୁ ଆଶା, ଅନ୍ତତଃ ବିଜୁ-ପିତାଙ୍କ ସ୍ମୃତିରେ, ଆଗାମୀ ଦିନରେ, ଓଡ଼ିଶା ସରକାର ଓଡ଼ିଆ ଭାଷାକୁ ଜ୍ଞାନର ଭାଷା କରିବା ପାଇଁ ଉଦ୍ୟମ କରିବେ। ତାହାହେଲେ ଲକ୍ଷ୍ମୀନାରାୟଣଙ୍କ ସେଦିନର ସେହି ଅସମାପ୍ତ ସ୍ୱପ୍ନ ଚରିତାର୍ଥ ହେବ।"

- ୦ -

Digitized by srujanika@gmail.com

# ବିଜୁବାବୁଙ୍କ ଯୋଗ୍ୟ ଦାୟାଦ ନବୀନ ପଟ୍ଟନାୟକ

୫ ମାର୍ଚ୍ଚ ୨୦୦୦ ମସିହାରେ ନବୀନ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିଥିଲେ । ଓଡ଼ିଶାକୁ ଭାରତର ସର୍ବଶ୍ରେଷ୍ଠ ରାଜ୍ୟରେ ପରିଣତ କରିବା ତାଙ୍କର ଲକ୍ଷ୍ୟ ରହିଥିଲା । ତାଙ୍କ ପିତା ବିଜୁ ପଟ୍ଟନାୟକ ସାରାଜୀବନ ଓଡ଼ିଶାର ଉନ୍ନତି ପାଇଁ ମନପ୍ରାଣ ଦେଇ ଚେଷ୍ଟା କରିଥିଲେ । କିନ୍ତୁ ତାଙ୍କର ସ୍ୱପ୍ନ ସାକାର ହୋଇପାରିନଥିଲା । ପିତାଙ୍କର ସେହି ଅଧୁରା ସ୍ୱପ୍ନକୁ ସମ୍ପୂର୍ଣ୍ଣ କରିବାକୁ ନବୀନ ପଟ୍ଟନାୟକ ବଦ୍ଧପରିକର । ଦେଶରେ ଏକ ନିଷ୍କଳଙ୍କ, ସରଳ ଓ ସ୍ୱଚ୍ଛ ଭାବମୂର୍ତ୍ତିସମ୍ପନ୍ନ ବ୍ୟକ୍ତି ଭାବରେ ସେ ପ୍ରତିଷ୍ଠା ଲାଭ କରିଛନ୍ତି । ସେ ୧୮ ବର୍ଷ ହେଲା ଲଗାତର ଭାବେ ଚାରିଥର ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କରିଛନ୍ତି । ଭାରତର ରାଜନୀତିରେ ପଶ୍ଚିମବଙ୍ଗର ଜ୍ୟୋତି ବସୁ ଓ ସିକିମର ପଓ୍ୱନ କୁମାର ଚାମଲିଙ୍ଗଙ୍କୁ ବାଦ୍ ଦେଲେ ନବୀନ ପଟ୍ଟନାୟକ ହେଉଛନ୍ତି ତୃତୀୟ ବ୍ୟକ୍ତି ଯିଏ ନିରନ୍ତର ଭାବେ ଚାରିଥର ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇପାରିଛନ୍ତି ।

'ଆଉଟ୍ ଲୁକ୍' ପତ୍ରିକାର ଅନ୍ ଲାଇନ୍ ସର୍ଭେରେ ୧୭ ଅଗଷ୍ଟ ୨୦୧୭ରେ ନବୀନ ପଟ୍ଟନାୟକଙ୍କୁ ଦେଶର ସର୍ବଶ୍ରେଷ୍ଠ ପ୍ରଶାସକ ଭାବେ ମନୋନୀତ କରାଯାଇଥିଲା । ପୂର୍ବବର୍ଷମାନଙ୍କରେ ମହାରାଷ୍ଟ୍ରର ମୁଖ୍ୟମନ୍ତ୍ରୀ ଦେବେନ୍ଦ୍ର ଫଡ଼ନାବିଶ, ପଶ୍ଚିମବଙ୍ଗ ମୁଖ୍ୟମନ୍ତ୍ରୀ ମମତା ବାନାର୍ଜ୍ଜୀ, ତ୍ରିପୁରା ମୁଖ୍ୟମନ୍ତ୍ରୀ ମାଣିକ ସରକାର, ବିହାର ମୁଖ୍ୟମନ୍ତ୍ରୀ ନିତିଶ କୁମାର ଓ କର୍ଣ୍ଣାଟକ ମୁଖମନ୍ତ୍ରୀ ସିଦ୍ଧରାମେୟା ଶ୍ରେଷ୍ଠ ପ୍ରଶାସକ ଭାବେ ମନୋନୀତ ହୋଇଥିଲେ । ମୁଖ୍ୟମନ୍ତ୍ରୀଙ୍କ ନିରବଚ୍ଛିନ୍ନ ଶାସନ ବ୍ୟବସ୍ଥାକୁ ଦୃଷ୍ଟିରେ ରଖି 'ଆଉଟ୍ ଲୁକ୍' ପତ୍ରିକା ତାଙ୍କୁ ସମ୍ମାନିତ କରିଥିଲା । ୧୬ ଅକ୍ଟୋବର ୧୯୪୬ରେ ଜନ୍ମିତ ୭୧ ବର୍ଷୀୟ ନବୀନ ବାବୁଙ୍କ ଶାସନ ବ୍ୟବସ୍ଥାକୁ ତର୍ଜମା କଲେ ତାଙ୍କ ଲୋକପ୍ରିୟତା ଓ କାର୍ଯ୍ୟଶୈଳୀ ପ୍ରଶଂସନୀୟ ହୋଇଛି । ତାଙ୍କ ଶାସନ କାଳରେ ଏକାଧିକ ବାତ୍ୟା ରାଜ୍ୟର ଅର୍ଥନୀତି ଓ ବିକାଶରେ ବାଧା ସୃଷ୍ଟି କରିଥିଲେ ମଧ୍ୟ ତାଙ୍କ

Digitized by srujanika@gmail.com

ପ୍ରଶାସନିକ ଦକ୍ଷତା ରାଜ୍ୟକୁ ପୁନଶ୍ଚ ମଜବୁତ ଭାବେ ଛିଡ଼ା କରିବାରେ ସଫଳ ହୋଇଛି। ଫାଇଲିନ୍ ଓ ହୁଡ଼ହୁଡ଼ ବାତ୍ୟା ସମୟରେ ତାଙ୍କ ଦୂରଦୃଷ୍ଟି ପ୍ରଶଂସା କରାଯିବା ସହ ଓଡ଼ିଶାର ବିପର୍ଯ୍ୟୟ ପରିଚାଳନା ବ୍ୟବସ୍ଥାକୁ ଏକାଧିକ ରାଜ୍ୟ ଏବେ ଅନୁକରଣ କରୁଥିବା 'ଆଉଟ୍ ଲୁକ୍' ପତ୍ରିକା ପ୍ରକାଶ କରିଛି।

ପୂର୍ବତନ ରାଷ୍ଟ୍ରପତି ପ୍ରଣବ ମୁଖାର୍ଜୀଙ୍କଠାରୁ ନବୀନ ପଟ୍ଟନାୟକ ୧୮ ଅଗଷ୍ଟ ୨୦୧୭ ମସିହାରେ 'ଆଉଟ୍ ଲୁକ୍' ଦ୍ୱାରା ଦେଶର 'ଶ୍ରେଷ୍ଠ ପ୍ରଶାସକ ସମ୍ମାନ' ଗ୍ରହଣ କରିବା ଅବସରରେ କହିଥିଲେ, "ଆପଣମାନଙ୍କ ସଦିଚ୍ଛା ଓ ବିଶ୍ୱାସ ପାଇଁ ମୁଁ ଋଣୀ। ଏ ସଫଳତା ଓ ସ୍ୱୀକୃତିର ଶ୍ରେୟ ମୋର ପ୍ରିୟ ଓଡ଼ିଶାବାସୀଙ୍କର। ଓଡ଼ିଶାକୁ ଦେଶର ଏକ ନମ୍ବର ରାଜ୍ୟରେ ପରିଣତ କରିବା ମୋର ସ୍ୱପ୍ନ। ଓଡ଼ିଶା ମା'ର ଗୌରବ ବୃଦ୍ଧି ପାଇଁ ମୁଁ ନିରନ୍ତର ଉଦ୍ୟମ ଜାରି ରଖିବି"। ଏଠାରେ ମନେ ପକାଇଦେବା ଉଚିତ ହେବ ଯେ ୧୭ ଅକ୍ଟୋବର ୨୦୧୫ ମସିହାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଓଡ଼ିଶାକୁ ଦେଶର ତିନୋଟି ଶୀର୍ଷ ରାଜ୍ୟମାନଙ୍କ ମଧ୍ୟରେ ସ୍ଥାନିତ କରିବାକୁ ଉଦ୍ୟମ ଜାରି ରଖିବେ ବୋଲି କହିଥିଲେ।

'ଆଉଟ୍ ଲୁକ୍' ପତ୍ରିକା ଦ୍ୱାରା ସମ୍ବର୍ଦ୍ଧିତ ହେବାପରେ ସାରାଦେଶରେ ଓଡ଼ିଆ ଲୋକମାନଙ୍କ ମଧ୍ୟରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ପ୍ରତି ସମ୍ମାନ ଓ ଶ୍ରଦ୍ଧା ଅହେତୁକ ବୃଦ୍ଧି ପାଇଥିବାର ଲକ୍ଷ୍ୟ କରାଯାଇଥିଲା। ୨୦ ଅଗଷ୍ଟ ୨୦୧୭ରେ ଦିଲ୍ଲୀଠାରେ ପ୍ରବାସୀ ଓଡ଼ିଆମାନଙ୍କ ତରଫରୁ ଏକ ବିରାଟ ସମ୍ବର୍ଦ୍ଧନା ସଭା ଅନୁଷ୍ଠିତ ହୋଇଥିଲା। ଏଥିରେ ଦିଲ୍ଲୀ ସମେତ ମୁମ୍ବାଇ, ଚେନ୍ନାଇ, ଚଣ୍ଡିଗଡ଼, ବାଙ୍ଗାଲୋରର ପାଖାପାଖି ପଚାଶଟି ଓଡ଼ିଆ ସଙ୍ଗଠନମାନେ ଏକତ୍ରିତ ହୋଇଥିଲେ। ପ୍ରବାସୀ ଓଡ଼ିଆମାନେ କହିଥିଲେ ଯେ ନବୀନ ପଟ୍ଟନାୟକଙ୍କ ନେତୃତ୍ୱ ଯୋଗୁ ବିଶ୍ୱ ବ୍ୟାଙ୍କ ଓଡ଼ିଶାକୁ ପୁଞ୍ଜି ନିବେଶ ପାଇଁ ଦେଶର ଏକ ପ୍ରକୃଷ୍ଟ କ୍ଷେତ୍ର ଭାବେ ଚିହ୍ନିତ କରିଛି। ପ୍ରବାସୀ ଓଡ଼ିଆମାନେ ମୁଖ୍ୟମନ୍ତ୍ରୀ ରାଜ୍ୟରେ ଦାରିଦ୍ର୍ୟତା କମାଇ ୮୦ ଲକ୍ଷ ଲୋକଙ୍କୁ ଦାରିଦ୍ର୍ୟ ସୀମାରେଖା ଉପରକୁ ନେଇଥିବାରୁ, ଶିଶୁ ମୃତ୍ୟୁହାର କମାଇ ପ୍ରତିବର୍ଷ ୫୦ ହଜାର ଶିଶୁଙ୍କ ଜୀବନ ରକ୍ଷା କରିପାରିଥିବାରୁ ତାଙ୍କୁ କୃତଜ୍ଞତା ଜ୍ଞାପନ କରିଥିଲେ।

Digitized by srujanika@gmail.com

ପ୍ରବାସୀ ଓଡ଼ିଆମାନେ ମୁଖ୍ୟମନ୍ତ୍ରୀ ଓଡ଼ିଶାକୁ ଏକ ଅନ୍ତର୍ଜାତୀୟ କ୍ରୀଡ଼ା କେନ୍ଦ୍ର ରୂପେ ପ୍ରତିଷ୍ଠିତ କରାଇପାରିଥିବାରୁ ତାଙ୍କୁ ଧନ୍ୟବାଦ ଜଣାଇଥିଲେ। ଏସିଆନ୍ ଆଥଲେଟିକ୍ ଚାମ୍ପିଅନସିପ୍ ଭୁବନେଶ୍ୱରର କଳିଙ୍ଗ ଷ୍ଟାଡିୟମଠାରେ ଅନୁଷ୍ଠିତ କରାଇବା ପାଇଁ ମାତ୍ର ୯୦ ଦିନ ମଧ୍ୟରେ ସମସ୍ତ ପ୍ରସ୍ତୁତି କରାଇବାକୁ ସକ୍ଷମ ହୋଇଥିବାରୁ ପ୍ରବାସୀ ଓଡ଼ିଆମାନେ ନବୀନ ପଟ୍ଟନାୟକଙ୍କ ଭୂୟସୀ ପ୍ରଶଂସା କରିଥିଲେ। ଏହି ପ୍ରତିଯୋଗିତା ୨୦୧୭ ମସିହା ଜୁଲାଇ ୫ରୁ ୯ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିଲା। ଏଥିରେ ଏସିଆ ମହାଦେଶର ୪୫ଟି ଦେଶରୁ ୮ ଶହ ପ୍ରତିଯୋଗୀ ଓ ୪ ଶହ ପଦାଧିକାରୀ ଯୋଗଦେଇଥିଲେ। ଏହି ପ୍ରତିଯୋଗିତା ଭାରତରେ ପୂର୍ବରୁ ପ୍ରଥମଥର ପାଇଁ ୧୯୮୯ରେ ଦିଲ୍ଲୀରେ ଓ ଦ୍ୱିତୀୟ ଥର ପାଇଁ ୨୦୧୩ରେ ପୁନେରେ ଏବଂ ତୃତୀୟ ଥର ପାଇଁ ୨୦୧୭ରେ ଭୁବନେଶ୍ୱରରେ ଅନୁଷ୍ଠିତ ହୋଇଯାଇଛି। କ୍ରୀଡ଼ା ବିଭାଗର ଶାସନ ସଚିବ ଶ୍ରୀ ବିଶାଲ କୁମାର ଦେବଙ୍କ ନେତୃତ୍ୱରେ କ୍ରୀଡ଼ା ନିର୍ଦ୍ଦେଶାଳୟର ସମସ୍ତ କର୍ମଚାରୀ ଦିବାନିଶି ପରିଶ୍ରମ କରି ଏହି ପ୍ରତିଯୋଗିତାକୁ ସୁଚାରୁରୂପେ ଅନୁଷ୍ଠିତ କରାଇଥିଲେ।

୨୧ ଜାନୁଆରୀ ୨୦୧୮ ମସିହାରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ପୁନେର କାଥରୁଡ଼ସ୍ଥିତ ମହାରାଷ୍ଟ୍ର ବୈଷୟିକ ପ୍ରତିଷ୍ଠାନ (ଏମ୍ଆଇଟି)- ବିଶ୍ୱ ଶାନ୍ତି ବିଶ୍ୱବିଦ୍ୟାଳୟ ପରିସରରେ ଭାରତୀୟ ଛାତ୍ର ସଂସଦ ଫାଉଣ୍ଡେସନ ପକ୍ଷରୁ ପୂର୍ବତନ ରାଷ୍ଟ୍ରପତି ପ୍ରତିଭା ଦେବୀସିଂ ପାଟିଲଙ୍କ ଠାରୁ 'ଆଦର୍ଶ ମୁଖ୍ୟମନ୍ତ୍ରୀ' ପୁରସ୍କାରରେ ସମ୍ମାନିତ ହୋଇଥିଲେ। ଏହି ସମ୍ବର୍ଦ୍ଧନା ଉତ୍ସବରେ ବିଜେପିର ବରିଷ୍ଠ ନେତା ମୁରଲୀ ମନୋହର ଯୋଶୀ ଉପସ୍ଥିତ ଥିଲେ। ଏହି ଅବସରରେ ନବୀନ ପଟ୍ଟନାୟକ କହିଥିଲେ, "ସମ୍ପତ୍ତି ଓ ପ୍ରତିପତ୍ତିଠାରୁ ଦୂରରେ ରହି ସେବାରେ ବ୍ରତୀ ହେବା ହିଁ ଗଣତନ୍ତ୍ରରେ ରାଜନେତାଙ୍କ ଆଭିମୁଖ୍ୟ ହେଉ। ରାଜନୀତି ନିର୍ବାଚନ ଜିଣିବା ସର୍ବସ୍ୱ ନ ହୋଇ ଲୋକଙ୍କର ହୃଦୟ ଜିଣିବା ଲକ୍ଷ୍ୟ ହେଉ। ଲୋକଙ୍କ ସହ ଯୋଡ଼ିହୋଇ ସାମାଜିକ ପରିବର୍ତ୍ତନ ଆଣିବା ପାଇଁ ଦେଶର ଯୁବପିଢ଼ି ଆଗଭର ହୁଅନ୍ତୁ। ଭଲ ପାଇବାର ମନ୍ତ୍ରରେ ଅଭିମନ୍ତ୍ରିତ ହୋଇ ସେମାନେ ରାଜନୀତିରେ ଯୋଗ ଦିଅନ୍ତୁ।"

Digitized by srujanika@gmail.com

ନିଜର ୨୦ ବର୍ଷର ରାଜନୈତିକ ଜୀବନର ଅଭିଜ୍ଞତାକୁ ପାଥେୟ କରି ସେ କହିଥିଲେ, "ମୁଁ ଏବେବି ରାଜନୀତିରେ ନବାଗତ, କିନ୍ତୁ ରାଜନୀତି ଏତେ ଜଟିଳ ନୁହେଁ, ଲୋକଙ୍କ ଜୀବନରେ ପରିବର୍ତ୍ତନ ଆଣିବା ପାଇଁ ଏକ ବଳିଷ୍ଠ ମାଧ୍ୟମ। ସକାରାତ୍ମକ ମନୋଭାବ, ନିଷ୍ପାପର ଉଦ୍ୟମ ନେଇ ଲୋକଙ୍କ ପାଇଁ କାର୍ଯ୍ୟ କଲେ ରାଜନୀତି ଦୁର୍ବୋଧ ନୁହେଁ। ମହାତ୍ମା ଗାନ୍ଧି ଓ ମାର୍ଟିନ ଲୁଥର କିଙ୍ଗଙ୍କ ଦର୍ଶନ ଓ ଆଦର୍ଶ ମୋ ରାଜନୀତି ଜୀବନର ପଥ ପ୍ରଦର୍ଶକ।"

ପୁରସ୍କାର ଗ୍ରହଣ କରିବା ଅବସରରେ ମୁଖ୍ୟମନ୍ତ୍ରୀ ତାଙ୍କ ଅଭିଭାଷଣରେ କହିଥିଲେ, "ଗତ ୧୭ ବର୍ଷ ଧରି ଆମ ଉପରେ ଅତୁଟ ଭରସା ରଖିଥିବା ଏବଂ କ୍ରମାଗତ ଭାବେ ଆଶୀର୍ବାଦ କରିଥିବା ଓଡ଼ିଶାର ସାଢ଼େ ଚାରି କୋଟି ଲୋକଙ୍କୁ ମୁଁ ଏହି ସମ୍ମାନ ସମର୍ପିତ କରୁଛି। ଗଣତନ୍ତ୍ରକୁ ସୁଦୃଢ଼ କରିବାରେ ସବୁଠାରୁ ଚମତ୍କାର ମାଧ୍ୟମ ଯୁବଶକ୍ତି। ତାଙ୍କ ସହିତ ଯୋଡ଼ି ହେବାର ସୁଯୋଗ ପାଇ ମୁଁ ଆନନ୍ଦିତ। ଜୀବବିଜ୍ଞାନ, ଗଣିତ, ଭେଷଜ, ସୂଚନା ପ୍ରଯୁକ୍ତି - ଏସବୁ କ୍ଷେତ୍ରରେ ଆମେ ଅପରିସୀମ ଅଗ୍ରଗତି କରିଛୁ। ବାସ୍ତବରେ ଗତ ୨୦୦ ବର୍ଷ ମଧ୍ୟରେ ମାନବ ବିବର୍ତ୍ତନରେ ଅଭୂତପୂର୍ବ ପରିବର୍ତ୍ତନ ଆସିଛି। ଉତ୍ତମ ପ୍ରଶାସନ ଓ ନିଃସ୍ୱାର୍ଥପର ଜନସେବା ଗଣତନ୍ତ୍ରର ଦୃଢ଼ ସ୍ତମ୍ଭ। ଆମର ପ୍ରଶାସନ ଓ ଜନସେବାକୁ ସୁଦୃଢ଼ କରିବା ହିଁ ଆମ ପାଇଁ ବଡ଼ ଆହ୍ୱାନ। ୨୦ ବର୍ଷ ତଳେ ରାଜନୀତିରେ ମୁଁ ଥିଲି ନବାଗତ। କେବେ ଭାବି ନଥିଲି ଯେ ମୁଁ ଓଡ଼ିଶାର ସବୁଠାରୁ ଦୀର୍ଘ ସମୟ ଧରି ମୁଖ୍ୟମନ୍ତ୍ରୀ ଭାବେ କାର୍ଯ୍ୟ କରିବି।"

ରାଜ୍ୟ ବିକାଶର କଥାକୁ ନେଇ ସେ କହିଥିଲେ, "ଲୋକଙ୍କୁ ଭଲ ପାଉଥିଲେ କେହି ଖୋଲା ଆକାଶ ତଳେ ରହୁ ବୋଲି ତୁମେ ଚାହିଁବ ନାହିଁ। ରାଜ୍ୟ ଗୃହ ନିର୍ମାଣରେ ଦେଶରେ ଅଗ୍ରଣୀ ହୋଇପାରିବ। ରାଜ୍ୟ ବିକାଶରେ ସବୁଠୁ ଦୁର୍ବଳ ଓ ଅସୁରକ୍ଷିତ ଲୋକଙ୍କୁ ଭାଗୀଦାର କରିବା ପାଇଁ ଚାହିଁଲେ ଜନଜାତି ବିକାଶ ପରିଷଦ ଗଠିତ ହୋଇପାରିବ। ଲୋକଙ୍କୁ ଭଲ ପାଉଥିଲେ ତୁମେ କେବେ ଚାହିଁବ ନାହିଁ ଲୋକେ ରାତିରେ ଭୋକିଲା ପେଟରେ ଶୁହନ୍ତୁ। ଏ ଦିଗରେ କାମ କଲେ ଦେଶରେ ଗରିବୀ ହଟାଇବାରେ ସବୁଠାରୁ ଭଲ ରାଜ୍ୟ ହୋଇପାରିବ। ଜୀବନର ପ୍ରତି ମୁହୂର୍ତ୍ତ ଲୋକଙ୍କ ସେବା କରିଚାଲିଲେ ଶେଷ ନିଃଶ୍ୱାସ ତ୍ୟାଗ ପରେ ବି ତମେ ମହାତ୍ମା ଗାନ୍ଧି

Digitized by srujanika@gmail.com

ଓ ବିଜୁବାବୁଙ୍କ ପରି ଲୋକଙ୍କ ହୃଦୟରେ ବଞ୍ଚି ରହିବ। ମୁଁ ଆଜି ସାଢ଼େ ଚାରି କୋଟି ଓଡ଼ିଆଙ୍କ ସ୍ନେହ ଆଦରରେ ପରିପୁଷ୍ଟ ଏକ ପରିବାରର ଜଣେ ସଦସ୍ୟ ହୋଇ ରହିଛି। ଅଧିକରୁ ଅଧିକ ଭଲ ଲୋକ ରାଜନୀତିରେ ଯୋଗଦେବା ଉଚିତ ଏବଂ ନିଜେ ଚାହୁଁଥିବା ପରିବର୍ତ୍ତନର ଅଂଶ ହେବା ଉଚିତ। ଯଦି ତୁମେ ଲୋକଙ୍କୁ ସବୁଠାରୁ ଆଗରେ ରଖିବ ତେବେ ଏହା ଏକ ରାଜନୈତିକ ଯାତ୍ରା ନୁହେଁ ଏକ ଆଧାତ୍ମିକ ଅନୁଭୂତି ହେବ।"

ବସ୍ତିବାସିନ୍ଦଙ୍କ ପାଇଁ ଏକ ନୂଆ ଯୋଜନା 'ଜାଗା'ର ଶୁଭାରମ୍ଭ ୭-ମେ' ୨୦୧୮ରେ ନବୀନ ପଟ୍ଟନାୟକ ଛତ୍ରପୁରଠାରେ କରିଛନ୍ତି। ଏହି ଯୋଜନା ଦ୍ୱାରା ବର୍ଷକ ମଧ୍ୟରେ ୧୦ ଲକ୍ଷ ବସ୍ତି ବାସିନ୍ଦା ଉପକୃତ ହେବେ। ସେମାନଙ୍କୁ ଉଚ୍ଛେଦ ନୁହେଁ, ସଶକ୍ତିକରଣ ପାଇଁ ଏହି ଯୋଜନା କାର୍ଯ୍ୟକାରୀ କରି ଓଡ଼ିଶା ଦେଶରେ ଉଦାହରଣ ସୃଷ୍ଟି କରିଛି। ଏହି ଯୁଗାନ୍ତକାରୀ ପଦକ୍ଷେପ କାର୍ଯ୍ୟକାରୀ ହୋଇପାରିଥିବାରୁ ସେ ଅତ୍ୟନ୍ତ ଖୁସି। ଏହି ମିଶନ ମାଧ୍ୟମରେ ଆସନ୍ତା ୧ ବର୍ଷ ମଧ୍ୟରେ ରାଜ୍ୟରେ ୨୫ ଶହ ସହରାଞ୍ଚଳ ବସ୍ତିରେ ୧୦ ଲକ୍ଷ ଲୋକ ଉପକୃତ ହେବେ ଏବଂ ଏହି ମିଶନ୍ ସମ୍ଭବତଃ ସାରା ବିଶ୍ୱରେ ସର୍ବବୃହତ ପ୍ରକଳ୍ପ ଭାବରେ ପରିଗଣିତ ହେବ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ। 'ଜାଗା' ଯୋଜନାର ସଫଳତା ପାଇଁ ଓଡ଼ିଶା ସରକାରଙ୍କ ସହିତ ଚୁକ୍ତି କରିଥିବା ଟାଟା ଟ୍ରଷ୍ଟର ଅଧ୍ୟକ୍ଷ ରତନ ଟାଟାଙ୍କୁ ସେ ସ୍ୱାଗତ କରିଥିଲେ।

ରତନ ଟାଟା ନିଜ ବକ୍ତବ୍ୟରେ କହିଥିଲେ ଯେ, ବସ୍ତିବାସିନ୍ଦାଙ୍କ ନିମନ୍ତେ ମୁଖ୍ୟମନ୍ତ୍ରୀ ଏକ ଐତିହାସିକ ପଦକ୍ଷେପ ନେଇଛନ୍ତି। ଏହାଦ୍ୱାରା ଲକ୍ଷାଧିକ ବସ୍ତିବାସିନ୍ଦାଙ୍କୁ ଜମି ଅଧିକାର ମିଳିବ। ବସ୍ତିବାସିନ୍ଦାଙ୍କ ପାଇଁ ଏକ ସ୍ୱତନ୍ତ୍ର ଡିଜାଇନ୍‌ର ଘର ସହ ଅନ୍ୟାନ୍ୟ ଭିତ୍ତିଭୂମିର ଉନ୍ନତି ପାଇଁ ନର୍ମାନ ଫୋଷ୍ଟର ଫାଉଣ୍ଡେସନ୍ ଦାୟିତ୍ୱ ନେଇଛି। ଏହି ଯୋଜନା କାର୍ଯ୍ୟକାରୀ ହୋଇଥିବାରୁ ମୁଖ୍ୟମନ୍ତ୍ରୀ କହିଥିଲେ, "ଗରିବ ଲୋକଙ୍କ ଖୁସିରେ ମୁଁ ଖୁସି। ସାଧାରଣ ଲୋକମାନେ ସମ୍ମାନର ସହ ବଞ୍ଚନ୍ତୁ ଏହା ମୋର ଲକ୍ଷ୍ୟ। ସେମାନଙ୍କ ପାଇଁ କାମ କରି ଚାଲିବି।"

Digitized by srujanika@gmail.com

ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ତାଙ୍କ ପିତା ବିଜୁ ପଟ୍ଟନାୟକଙ୍କ ଦ୍ୱାରା ପ୍ରଦର୍ଶିତ ପଥକୁ ଅନୁସରଣ କରି ରାଜ୍ୟର ଉନ୍ନତି ପାଇଁ କାର୍ଯ୍ୟ କରୁଥିବାରୁ ସେ ଆଜି ଓଡ଼ିଶାବାସୀଙ୍କ ହୃଦୟକୁ ଜିଣିପାରିଛନ୍ତି ।

- ୦ -

Digitized by srujanika@gmail.com



ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ନିର୍ମାତା ଉତ୍କଳଗୌରବ ମଧୁସୂଦନ ଦାସ
ଥିଲେ ବିଜୁବାବୁଙ୍କର ପ୍ରେରଣାର ଉତ୍ସ

Digitized by srujanika@gmail.com



ଓଡ଼ିଶାର ବିକାଶ ପାଇଁ ଦିବାନିଶି ଚିନ୍ତାମଗ୍ନ ବିଜୁ ପଟ୍ଟନାୟକ

Digitized by srujanika@gmail.com



ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ସହିତ ବିଜୁ ପଟ୍ଟନାୟକ

Digitized by srujanika@gmail.com



୧୯୩୮ ମସିହାରେ ଜ୍ଞାନଦେବୀଙ୍କ ସହିତ ବିବାହ ବନ୍ଧନରେ ଆବଦ୍ଧ

Digitized by srujanika@gmail.com




୩ ଜାନୁଆରୀ ୧୯୬୨ରେ ପାରାଦ୍ୱୀପ ବନ୍ଦରର ଶିଳାନ୍ୟାସ ଉତ୍ସବରେ
ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁଙ୍କ ସହିତ ବିଜୁ ପଟ୍ଟନାୟକ



ରାଜ୍ୟପାଳ ଯଶବନ୍ତ ନାରାୟଣ ସୁକଥଙ୍କର ୨୩ ଜୁନ ୧୯୬୧ରେ ବିଜୁ ପଟ୍ଟନାୟକଙ୍କୁ
ମୁଖ୍ୟମନ୍ତ୍ରୀ ଭାବରେ ଶପଥ ଗ୍ରହଣ କରାଉଛନ୍ତି

Digitized by srujanika@gmail.com



ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁ, ରାଜ୍ୟପାଳ ଅଯୋଧ୍ୟା ନାଥ ଖୋସଲାଙ୍କ ସହିତ
ବିଜୁ ପଟ୍ଟନାୟକ ଓ ନୀଳମଣି ରାଉତରାୟ



ଇଷ୍ଟର୍ଣ୍ଣମିଡିଆ ଲିମିଟେଡ୍‌ର ଚେୟାରମ୍ୟାନ ସୌମ୍ୟରଂଜନ ପଟ୍ଟନାୟକଙ୍କୁ
ନିଜ ଅନୁଭୂତି ସଂପର୍କରେ କହୁଛନ୍ତି ବିଜୁବାବୁ

Digitized by srujanika@gmail.com



୦୪/୧୦/୧୯୯୪ ଦିନ ବିରିଡ଼ି ବ୍ଲକ ବାଇଶି ମୌଜା ଋଷୀଖଣ୍ଡ ଗ୍ରାମର
ଝାନ୍‌ସୀରାଣୀ ମହିଳା ମଙ୍ଗଳ ସମିତି ଉଦ୍‌ଘାଟନ ଉତ୍ସବକୁ
ବିଜୁ ପଟ୍ଟନାୟକଙ୍କୁ ରିକ୍ସାରେ ବସାଇ ନେଉଛନ୍ତି ଶ୍ରୀଯୁକ୍ତ ବିଷ୍ଣୁ ଦାସ

Digitized by srujanika@gmail.com



ବିଜୁ ପଟ୍ଟନାୟକଙ୍କ ସହ ବର୍ତ୍ତମାନର କୃଷି ମନ୍ତ୍ରୀ ଦାମୋଦର ରାଉତ



ରଥ ଦଉଡ଼ି ଭିଡୁଛନ୍ତି ବିଜୁ ପଟ୍ଟନାୟକ ଏବଂ ବର୍ତ୍ତମାନର ରାଜସ୍ୱ ମନ୍ତ୍ରୀ ମହେଶ୍ୱର ମହାନ୍ତି ଓ ଦୁଇଜଣଙ୍କ ମଝିରେ ଅଛନ୍ତି କ୍ରୀଡ଼ା ବିଭାଗର କୋଚ ଲକ୍ଷ୍ମୀଧର (ଝାଡୁ) ଖୁଣ୍ଟିଆ

Digitized by srujanika@gmail.com



ବିଜୁ ପଟ୍ଟନାୟକଙ୍କ ସହିତ ଏନ୍.ଟି. ରାମାରାଓ ଓ ଏଚ.ଡି. ଦେବେଗୌଡ଼ା




ଡକ୍ଟର ହରି ପଟ୍ଟନାୟକ (କାଟ) ଓଡ଼ିଶାର ଶ୍ରେଷ୍ଠ କରାଟେକା ଭାବରେ ମୁଖ୍ୟମନ୍ତ୍ରୀଙ୍କଠାରୁ ପୁରସ୍କାର ଗ୍ରହଣ କରୁଛନ୍ତି, ବିଜୁ ପଟ୍ଟନାୟକଙ୍କ ବାମ ପାର୍ଶ୍ୱରେ ଓଡ଼ିଶା କରାଟେ ଆସୋସିଏସନ୍‌ର ସଭାପତି ବରେନ୍ଦ୍ର କୃଷ୍ଣ ଧଳ ଏବଂ ଡାହାଣ ପାର୍ଶ୍ୱରେ ଡ. ବିମଳେନ୍ଦୁ ମହାନ୍ତି ।

Digitized by srujanika@gmail.com



୧୯୬୪ ମସିହାରେ ରାଜ୍ୟଯୋଜନା ବୋର୍ଡର ଅଧ୍ୟକ୍ଷ ବିଜୁ ପଟ୍ଟନାୟକ, ମୁଖ୍ୟମନ୍ତ୍ରୀ ବିରେନ ମିତ୍ର କେନ୍ଦ୍ର ସୂଚନା ଓ ପ୍ରସାରଣ ମନ୍ତ୍ରୀ ଇନ୍ଦିରାଗାନ୍ଧିଙ୍କୁ ସ୍ୱାଗତ କରୁଛନ୍ତି



ମୁଖ୍ୟମନ୍ତ୍ରୀ ବିଜୁପଟ୍ଟନାୟକ, କ୍ରୀଡା ନିର୍ଦ୍ଦେଶକ ଡକ୍ଟର ବିମଳେନ୍ଦୁ ମହାନ୍ତିଙ୍କ ସହିତ କଳିଙ୍ଗ କପ୍ ଫୁଟବଲ ଟୁର୍ଣ୍ଣାମେଣ୍ଟର ଫାଇନାଲ ମ୍ୟାଚରେ ଖେଳାଳୀମାନଙ୍କୁ ଉତ୍ସାହିତ କରୁଛନ୍ତି

Digitized by srujanika@gmail.com



୧୯୯୧ ମସିହାରେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ସହିତ
ପୂର୍ବତନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥି




ଚିନ୍ତା ଓ ଚେତନାର ବୈଶାଖୀ ମହୋତ୍ସବରେ ଅଧ୍ୟକ୍ଷ ବିଜୁବାବୁଙ୍କ ସହ
ସାଂସଦ ଡଃ. ପ୍ରସନ୍ନ ପାଟଶାଣୀ ଓ ସୁରେନ୍ଦ୍ର ଦାସ

Digitized by srujanika@gmail.com



ଜାନୁଆରୀ ୧୯୯୧ରେ ମାନ୍ୟବର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଯୋଜନା ଓ ସମନ୍ୱୟ ବିଭାଗର ମାନ୍ୟବର ମନ୍ତ୍ରୀ ଶ୍ରୀ ପ୍ରଫୁଲ ଘଡେଇଙ୍କ ସହିତ ଆଦିବାସୀ ମହିଳାଙ୍କୁ ଜମି ପଟ୍ଟା ପ୍ରଦାନ



ବିଜୁବାବୁ, ନୀଳମଣି ବାବୁ, ମହତାବ ବାବୁଙ୍କ ସହିତ ଦଣ୍ଡାୟମାନ ଅଛନ୍ତି ପୂର୍ବତନ ବିଧାୟକ ଜୟକୃଷ୍ଣ ମହାନ୍ତି । ପଦ୍ମଶ୍ରୀ ଭବାନୀ ପଟ୍ଟନାୟକ

Digitized by srujanika@gmail.com



ବିଜୁବାବୁ ଓ ତାଙ୍କ କନିଷ୍ଠ ପୁତ୍ର ନବୀନ ପଟ୍ଟନାୟକ

Digitized by srujanika@gmail.com




ଜାତୀୟ ସଂହତି ଶିବିରରେ କ୍ରୀଡାମନ୍ତ୍ରୀ ଶରତ କୁମାର କର ଓ
ସ୍ୱାସ୍ଥ୍ୟ ମନ୍ତ୍ରୀ ମୁସ୍ତାଫିଜ୍ ଅହମ୍ମଦଙ୍କ ସହିତ ବିଜୁ ପଟ୍ଟନାୟକ




ରାଜ୍ୟ କ୍ରୀଡ଼ା ଉତ୍ସବ ଉଦ୍‌ଘାଟନ କରୁଛନ୍ତି ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ, ବାମପାର୍ଶ୍ୱରେ କ୍ରୀଡ଼ା ନିର୍ଦ୍ଦେଶକ
ଡ. ବିମଳେନ୍ଦୁ ମହାନ୍ତି, ମଂଚ ପାର୍ଶ୍ୱରେ କ୍ରୀଡ଼ା ବିଭାଗର ଉପନିର୍ଦ୍ଦେଶକ ଡ. ହରିପଦ ଶତପଥୀ

Digitized by srujanika@gmail.com




ରାଜ୍ୟ ମହିଳା କ୍ରୀଡ଼ା ପ୍ରତିଯୋଗିତା ଅବସରରେ କ୍ରୀଡ଼ା ନିର୍ଦ୍ଦେଶକ (ଲେଖକ)ଙ୍କ ସହିତ ବିଜୁ ପଟ୍ଟନାୟକ । ପଛରେ ଅଛନ୍ତି ଓଡ଼ିଶା କ୍ରିକେଟ୍ ଆସୋସିଏସନ୍‌ର ସମ୍ପାଦକ ପି.ଭି.ଆର୍ ମୂର୍ତ୍ତି ।

Digitized by srujanika@gmail.com




ଜଗତପୁରଠାରେ ଜଳ କ୍ରୀଡ଼ା ପ୍ରକଳ୍ପ ଉଦ୍‌ଘାଟନ ଉତ୍ସବରେ ଜଳସେଚନ ବିଭାଗ ମନ୍ତ୍ରୀ ବିଜୟ ମହାପାତ୍ର ଓ କ୍ରୀଡା ମନ୍ତ୍ରୀ ଏ.ୟୁ. ସିଂହଦେଓଙ୍କ ସହିତ ବିଜୁ ପଟ୍ଟନାୟକ




ଜଗତସିଂହପୁର ଜିଲ୍ଲାକୁ ମାନ୍ୟବର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି, ପାର୍ଶ୍ୱରେ ଅଛନ୍ତି ଶ୍ରୀଯୁକ୍ତ ବିଷ୍ଣୁ ଦାସ

Digitized by srujanika@gmail.com




ଗୋପାଳପୁର ମତ୍ସ୍ୟଧରା ବନ୍ଦରର ଶୁଭ ଉଦ୍‌ଘାଟନ କରୁଛନ୍ତି ବିଜୁ ପଟ୍ଟନାୟକ ଓ
ପାଖରେ ଅଛନ୍ତି ବର୍ତ୍ତମାନର ସମବାୟ ମନ୍ତ୍ରୀ ସୂର୍ଯ୍ୟନାରାୟଣ ପାତ୍ର



ଏକ ସଭାରେ ବିଜୁ ପଟ୍ଟନାୟକଙ୍କ ସହ ପୂର୍ବତନ ମନ୍ତ୍ରୀ ବିଜୟ ମହାପାତ୍ର

Digitized by srujanika@gmail.com



ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ସାଇକେଲରେ ସଚିବାଳୟକୁ ଯାଉଛନ୍ତି




ଭୁବନେଶ୍ୱର ପୁସ୍ତକ ମେଳା ଅବସରରେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ, ତାଙ୍କ ଡାହାଣପାର୍ଶ୍ୱରେ ସାତକଡ଼ି ହୋତା, ଖଗେଶ୍ୱର ମହାପାତ୍ର, ବାମପାର୍ଶ୍ୱରେ ଚୈତନ୍ୟ ପ୍ରସାଦ ମାଝି, ବରେନ୍ଦ୍ର କୃଷ୍ଣ ଧଳ ଓ ଡକ୍ଟର ବିଭୁତି ପଟ୍ଟନାୟକ

Digitized by srujanika@gmail.com



ମୋରାରଜୀ ଦେଶାଇ ଓ ଅଟଳ ବିହାରୀ ବାଜପେୟୀଙ୍କ ସହିତ ବିଜୁ ପଟ୍ଟନାୟକ



ଜଣେ ମହିଳା ବିଜୁ ପଟ୍ଟନାୟକଙ୍କୁ ଶ୍ରଦ୍ଧାରେ ଖୁଆଇ ଦେଉଛନ୍ତି

Digitized by srujanika@gmail.com



ବରିଷ୍ଠ ସାମ୍ବାଦିକ ପ୍ରଶାନ୍ତ ପଟ୍ଟନାୟକ ବିଜୁ ପଟ୍ଟନାୟକଙ୍କୁ
ସ୍କୁଟରରେ ବସାଇ ସଚିବାଳୟକୁ ନେଉଛନ୍ତି



ବିଜୁବାବୁଙ୍କ ମରଶରୀରରେ ପୁଷ୍ପାଞ୍ଜଳି ଅର୍ପଣ କରୁଛନ୍ତି ତାଙ୍କ ସୁପୁତ୍ର ନବୀନ
ପଟ୍ଟନାୟକ, ପାଖରେ ଉପସ୍ଥିତ ଅଛନ୍ତି ସାଂସଦ ପ୍ରସନ୍ନ ପାଟ୍ଟଶାଣି

Digitized by srujanika@gmail.com

ବିଜୁ ପଟ୍ଟନାୟକଙ୍କ ଆଦର୍ଶରେ ଉଦ୍‌ବୁଦ୍ଧ
କିଟ୍ ଓ କିସ୍‌ର ପ୍ରତିଷ୍ଠାତା **ଡକ୍ଟର ଅଚ୍ୟୁତ ସାମନ୍ତ**
ନିଜର ଦୂରଦୃଷ୍ଟି ବଳରେ
ଶିକ୍ଷା ଓ ସମାଜ ସେବାରେ କୀର୍ତ୍ତିମାନ ପ୍ରତିଷ୍ଠା କରି
ବିଶ୍ୱବନ୍ଦିତ ହୋଇଛନ୍ତି ।
ବିନା ଶିକ୍ଷାରେ ପ୍ରଗତି ଓ ସମୃଦ୍ଧି ସମ୍ଭବ ନୁହେଁ ବୋଲି ହୃଦୟଙ୍ଗମ କରି
ଦରିଦ୍ରତମ ଅବସ୍ଥାରେ ଥିବା ୨୫,୦୦୦ ଜନଜାତି ଛାତ୍ରଛାତ୍ରୀଙ୍କୁ
କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ ଅଫ୍ ସୋସିଆଲ ସାଇନ୍‌ସେସ୍‌ରେ
ନିଃଶୁଳ୍କ ଶିକ୍ଷାଲାଭର ସୁବିଧା ଯୋଗାଇଦେଇ
ଆଜି ବିଶ୍ୱରେ ଅଦ୍ୱିତୀୟ ବ୍ୟକ୍ତି ରୂପେ ଆଦୃତ ହେଉଛନ୍ତି ।



Digitized by srujanika@gmail.com

ଡକ୍ଟର ବିମଳେନ୍ଦୁ ମହାନ୍ତିଙ୍କର ଓଡ଼ିଆ ଓ ଇଂରାଜୀରେ ରଚିତ ୨୩ଗୋଟି ପୁସ୍ତକ ମଧ୍ୟରୁ 'ଆମେ ଓଡ଼ିଆ ଏବଂ ଅନ୍ୟାନ୍ୟ', 'ବ୍ୟକ୍ତି, ସଂସ୍କୃତି ଓ ସାଂପ୍ରତିକୀ', 'ସମୟର ସ୍ୱରଲିପି', 'ଜାତିପ୍ରାଣ ମଧୁସୂଦନ', 'ଶ୍ୱେତ ପ୍ରସାଦର କୃଷ୍ଣାଙ୍ଗ ରାଷ୍ଟ୍ରପତି', 'ଆମ ସୁଭାଷ', 'ଓଡ଼ିଶାରେ ବୌଦ୍ଧଧର୍ମ ଓ ବୌଦ୍ଧକୀର୍ତ୍ତି', 'ଅନଗାରିକ ଧର୍ମପାଳ', 'କଣ ଶିଖାଇଲେ ବୁଦ୍ଧ', 'ସିଦ୍ଧାର୍ଥଙ୍କ ଜୀବନଚରିତ', 'Orissa Yesterday, Today and Tomorrow', 'Glimpses of Buddhist Legacy in Odisha', 'Buddhist Heritage of Orissa (From Kalinga to Sri Lanka)' ଇତ୍ୟାଦି ଉଲ୍ଲେଖନୀୟ। ତାଙ୍କ ସଂପାଦିତ 'Padmasambhava of Uddiyana - Odisha' ଏକ ଅନବଦ୍ୟ କୃତି।

Digitized by srujanika@gmail.com

ଇସ୍ପାତ ଷ୍ଟାଡିୟମ୍ ରାଉରକେଲାରେ ଜାତୀୟ ସ୍ତରୀୟ ଆଥ୍ଲେଟିକ୍ ଟୁର୍ଣ୍ଣାମେଣ୍ଟକୁ ଉଦ୍‌ଘାଟନ ଅବସରରେ
ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ସହିତ କ୍ରୀଡ଼ା ନିର୍ଦ୍ଦେଶକ ଡ. ବିମଳେନ୍ଦୁ ମହାନ୍ତି




ତଥାଗତ ପବ୍ଲିଶର୍ସ
୪୭, ମଧୁସୂଦନ ନଗର, ଭୁବନେଶ୍ୱର - ୭୫୧୦୦୧
E-mail : imcoindia@yahoo.com

Digitized by srujanika@gmail.com